Vol. XLII No. 3 UTKAL PRASANGA Regd. No. O-05/85-8
Licence No. C. R. N. P. 5—Licensed to post without Pre-Payment



ହରିଜନ ପାଣି ପାଇଁ ଚନ୍ଦା ସଂଗ୍ରହ,

PRINTED AT ORISSA GOVERNMENT PRESS, CUTTACK-10

# ଉତ୍କଳ ପ୍ରସଙ୍ଗ

କାର୍ତ୍ତିକ/ମାର୍ଗଶିର ୧୯୦୭ ଶକାବ୍ଦ ୪୨ ଶ ବର୍ଷ ୪ର୍ଥ/୫ମ ସଂଖ୍ୟା ନଭେମ୍ବର/ଡିସେମ୍ବର ୧୯୮୫



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ୧୦.୦୦

ପ୍ରତି ଖଣ୍ଡ : ୧.୦୦

ମୁଦ୍ରଣ :
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

# ଉତ୍କଳ ପ୍ରସଙ୍ଗ

## ସୂଚୀପତ୍ର



# ବିନମ୍ର ଶ୍ରଦ୍ଧାଞ୍ଜଳି

୧୯୮୫ ଅକ୍ଟୋବର ୩୧ ତାରିଖର ଶାରଦୀୟ ସନ୍ଧ୍ୟାରେ ଭାରତର ରତ୍ନ ତଥା ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପ୍ରଥମ ମୃତ୍ୟୁ ବାର୍ଷିକୀ ମହୋତ୍ସବ ରାଜ୍ୟ ସୂଚନା ଭବନ ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ଏହି ଅବସରରେ ଏକ ସର୍ବଧର୍ମ ସଭାର ଆୟୋଜନ କରାଯାଇଥିଲା । ଏଥିରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ବିଭିନ୍ନ ରାଜନୈତିକ ଦଳର କର୍ମୀ, ରାଜଧାନୀର ବହୁ ବୁଦ୍ଧିଜୀବୀ, ଶ୍ରମିକ, ଶିକ୍ଷକ, ଛାତ୍ରଛାତ୍ରୀ ଯୋଗ ଦେଇଥିଲେ । ଉତ୍ସବର ପ୍ରାରମ୍ଭରେ ବେଦ, ଗୀତା, କୋରାନ୍, ବାଇବେଲ ପାଠ କରାଯାଇଥିଲା । ସ୍ୱର୍ଗତାଃ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ରାଜ୍ୟର ବରିଷ୍ଠ କଂଗ୍ରେସ ନେତା, ଭୂତପୂର୍ବ କେନ୍ଦ୍ରମନ୍ତ୍ରୀ ଓ ରାଜ୍ୟପାଳ ଏବଂ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ, ପୂର୍ବତନ ମହିଳା ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ, ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ, ଅଖିଳ ଭାରତ କମ୍ୟୁନିଷ୍ଟ ଦଳର ରାଜ୍ୟଶାଖା ସଂପାଦକ ଶ୍ରୀ ସଦାନନ୍ଦ ମହାନ୍ତି ଓ ପୂର୍ବତନ କେନ୍ଦ୍ରମନ୍ତ୍ରୀ ଶ୍ରୀ ବିଭୁଧେନ୍ଦୁ ମିଶ୍ର ଶ୍ରୀମତୀ ଗାନ୍ଧୀଙ୍କ ଗୁଣାବଳୀର ବିଭିନ୍ନ ଦିଗରୁ ପର୍ଯ୍ୟାଲୋଚନା କରିଥିଲେ ଏବଂ ସେମାନଙ୍କର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ଏହାପରେ ଇନ୍ଦିରା ଗାନ୍ଧୀଙ୍କ ପ୍ରିୟ ସଙ୍ଗୀତ ଏନ୍.ସି.ସି. କ୍ୟାଡେଟ୍‌ମାନଙ୍କ ଦ୍ୱାରା ଆବୃତ୍ତି କରାଯାଇଥିଲା ଓ ଶ୍ରୀମତୀ ଗାନ୍ଧୀଙ୍କ ସଂପର୍କରେ ଏକ ଆଲୋକଚିତ୍ର ପ୍ରଦର୍ଶନୀ,ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିଥିଲେ ।

## ପ୍ରେରଣା ଓ ଆଦର୍ଶର ଧ୍ରୁବତାରା

### ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଠିକ୍ ବର୍ଷକ ତଳେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କ ଜୀବନର ଶେଷ
ୟା ଭୁବନେଶ୍ୱରରେ ଯାପନ କରିଥିଲେ । ଏହିଠାରେ ତାଙ୍କ ଶେଷ
ରେ ସେ କହିଥିଲେ, ମୁଁ ଆଜି ଅଛି, କାଲିକି ରହିବି ନାହିଁ; କିନ୍ତୁ ମୋର ପ୍ରତି ରକ୍ତ ବିନ୍ଦୁରେ ଏ ଦେଶ ମଜବୁତ ହେବ ; ଏ ଦେଶର ଶକ୍ତି, ସଂହତି, ସ୍ୱାଧୀନତା ଓ ସ୍ୱାଭିମାନ ଦୃଢ଼ୀଭୂତ ହେବ ।

ଇନ୍ଦିରା ଗାନ୍ଧୀଙ୍କର ଜୀବନ ଥିଲା ଏକ ଆଦର୍ଶ ଓ ପ୍ରେରଣାର ଜୀବନ । ଭାରତବର୍ଷକୁ ମହାନ୍ କରିବାପାଇଁ ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହରୁ ଯେଉଁ ସ୍ୱପ୍ନ ଦେଖିଥିଲେ, ସେ ସ୍ୱପ୍ନକୁ କାର୍ଯ୍ୟକାରୀ କରାଇବାପାଇଁ ଇନ୍ଦିରା ଗାନ୍ଧୀ ତାଙ୍କ ଜୀବଦ୍ଦଶାରେ ନାନା ଭାବରେ ଉଦ୍ୟମ କରିଥିଲେ ।



ସେ ଥିଲେ ଆମର ମହାନ୍ ପରମ୍ପରାର ଜଣେ ଅଗ୍ରଣୀ ଯୋଦ୍ଧା ଓ ଦୂରଦର୍ଶୀ ନେତ୍ରୀ । ଭାରତର ଇତିହାସକୁ ତାଙ୍କ ପରି କୃତିତ୍ ନେତା ଆସିଛନ୍ତି ।

ଭାରତବର୍ଷର ଗରିବ ଲୋକଙ୍କ ମୁକ୍ତିପାଇଁ ସେ ଏକ ବିଶାଳ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ଏ ଦେଶ ଏକ ମହାନ୍ ଓ ବିଶାଳ ଦେଶ । ଏହାର ମହାନ୍ ଗୌରବ ଓ ସଂସ୍କୃତି ଅଛି । ଭାରତ ଗରିବ ଦେଶ ହୋଇ ପାରେ କିନ୍ତୁ ତା'ର ନିଜର ସ୍ୱାଭିମାନ ଦୃଷ୍ଟିରୁ ସେ କାହାର ଗୋଡ଼ାଣିଆ ହେବ ନାହିଁ ବୋଲି ସେ ଦୃଢ଼ ଭାବରେ ଘୋଷଣା କରିଥିଲେ । ତେଣୁ ଭାରତର ସ୍ୱାଧୀନତା ଓ ଅଖଣ୍ଡତାକୁ ରକ୍ଷା କରିବାପାଇଁ ତାଙ୍କୁ ଅହରହ ସଂଗ୍ରାମ କରିବାକୁ ପଡ଼ିଛି । ଦେଶର ସ୍ୱାଧୀନତା ଓ ଅଖଣ୍ଡତାକୁ କ୍ଷୁଣ୍ଣ କରିବାପାଇଁ ଯେତେବେଳେ ଯେଉଁ ଚକ୍ରାନ୍ତ ହୋଇଛି, ସେ ତାହାକୁ ଦୃଢ଼ ହସ୍ତରେ ବ୍ୟର୍ଥ କରିଛନ୍ତି । ଆମେରିକା ଓ ଚୀନଦ୍ୱାରା ଉତ୍ସାହିତ ହୋଇ ପାକିସ୍ତାନ ୧୯୭୧ରେ ଭାରତ ଆକ୍ରମଣ କରିଛି । ଇନ୍ଦିରା ଗାନ୍ଧୀ ଏ ଆକ୍ରମଣର ମୁକାବିଲା କରିଛନ୍ତି । ସମଗ୍ର ବିଶ୍ୱର ଜନମତକୁ ସଂଗଠିତ କରି ପାକିସ୍ତାନର ଆକ୍ରମଣକୁ ସଂପୂର୍ଣ୍ଣ ଭାବରେ ପ୍ରତିହତ କରିଛନ୍ତି । ଭାରତ ବିଜୟୀ ହୋଇଛି । ୧୯୬୨ ମସିହାରେ ଚୀନ ଯୁଦ୍ଧରେ ପରାଜୟ ସ୍ୱୀକାର କରିବା ପରେ ଭାରତର ଯେଉଁ ହତାଶା ଓ ଗ୍ଳାନି ଦେଖା ଦେଇଥିଲା, ଇନ୍ଦିରା ଗାନ୍ଧୀ ତାହା ଦୂର କରି ଦେଲେ ।

କେବଳ ସ୍ୱାଧୀନତା କୌଣସି ଦେଶର ସ୍ୱାଭିମାନକୁ ବଜାୟ ରଖି ପାରିବ ନାହିଁ । ତେଣୁ ଦେଶକୁ ସବୁ ଦିଗରୁ ସ୍ୱାବଲମ୍ବୀ ହେବାକୁ ପଡ଼ିବ । ଇନ୍ଦିରା ଗାନ୍ଧୀ ଭାରତବର୍ଷକୁ ସମଗ୍ର ବିଶ୍ୱରେ ମହାନ୍ କରିବାପାଇଁ ଓ ତା'ର ଆଦର୍ଶକୁ ପୃଥିବୀରେ ଅକ୍ଷୁଣ୍ଣ ରଖିବାପାଇଁ ପ୍ରତିଜ୍ଞା କରିଥିଲେ । ତେଣୁ ସେ କୃଷି କ୍ଷେତ୍ରରେ, ଶିଳ୍ପ କ୍ଷେତ୍ରରେ, ବିଜ୍ଞାନ ଓ କାରିଗରୀ ଜ୍ଞାନ କ୍ଷେତ୍ରରେ, ସାମରିକ କ୍ଷେତ୍ରରେ ଏ ଦେଶକୁ ସ୍ୱାବଲମ୍ବୀ କରାଇଲେ । ପଣ୍ଡିତ ଜବାହରଲାଲ ନେହରୁଙ୍କ ସମୟରୁ ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା, ସେ ଉଦ୍ୟମକୁ ଇନ୍ଦିରା ଗାନ୍ଧୀ ଅକ୍ଷୁଣ୍ଣ ରଖିଥିଲେ । ଯୁଗ ଯୁଗ ଧରି ଅଜ୍ଞତା ଓ ଅଶିକ୍ଷା ମଧ୍ୟରେ ବୁଡ଼ି ରହି ଏ ଦେଶ ନିଜ ଗୋଡରେ ଛିଡ଼ା ହୋଇ ପାରୁ ନଥିଲା । ଯେଉଁ ଦେଶ ସ୍ୱାଧୀନତା ଲାଭ କଲା ପରେ ଅନ୍ନାଭାବ ମେଣ୍ଟାଇବାପାଇଁ 'ଭିକ୍ଷା' ଦେହି' କହି ପୃଥିବୀର ବିଭିନ୍ନ ରାଜ୍ୟ ପାଖରେ ହାତ ପତାଉଥିଲା, ସେ ଦେଶ ୧୯୭୬ ମସିହା ବେଳକୁ ସଂପୂର୍ଣ୍ଣ ଆତ୍ମ ନିର୍ଭରଶୀଳ ହୋଇ ପାରିଲା । କେବଳ ସେତିକି ନୁହେଁ, ଆଜି ପୃଥିବୀର ବହୁ ରାଜ୍ୟକୁ ଭାରତ ଖାଦ୍ୟଶସ୍ୟ ରପ୍ତାନୀ କରି ପାରୁଛି ।

ସେପରି ଶିଳ୍ପ କ୍ଷେତ୍ରରେ ଯେଉଁ ଦେଶ ବହୁ ପଛରେ ପଡ଼ିଥିଲା, ପଣ୍ଡିତ ନେହରୁ ଓ ଇନ୍ଦିରା ଗାନ୍ଧୀଙ୍କ କାର୍ଯ୍ୟକ୍ରମ ଫଳରେ ସେ ଦେଶ ପୃଥିବୀରେ ଏକ ଶକ୍ତି ରୂପେ ଦେଖାଦେଲା । ପୃଥିବୀର ଦଶ ବାରଟି ଶିଳ୍ପ ପ୍ରଧାନ ଦେଶ ଭିତରେ ଭାରତ ଅନ୍ୟତମ ବୋଲି ପରିଗଣିତ ହେଲା । ଖାଉଟି ଜିନିଷର ଉତ୍ପାଦନଠାରୁ ଆରମ୍ଭ କରି ଭାରି ଶିଳ୍ପ ପର୍ଯ୍ୟନ୍ତ ଓ ଛୁଞ୍ଚିଠାରୁ ଆରମ୍ଭ କରି ଉଡାଜାହାଜ ପର୍ଯ୍ୟନ୍ତ ଦେଶର ସବୁ ଆବଶ୍ୟକତାକୁ ପୂରଣ କରିବା ଦିଗରେ ଭାରତବର୍ଷ ଆଜି ସମର୍ଥ ହୋଇ ପାରିଛି । ସେହିପରି ବିଜ୍ଞାନ ଓ କାରିଗରୀ ଜ୍ଞାନ ପ୍ରତି ଇନ୍ଦିରା ଗାନ୍ଧୀଙ୍କ ଦାନ ଅବିସ୍ମରଣୀୟ ।





ଭାରତର ପ୍ରାଚୀନ ପରମ୍ପରା ଓ ସଂସ୍କୃତିରେ ତାଙ୍କର ଅଗାଧ ବିଶ୍ୱାସ ଥାଇ ମଧ୍ୟ ଆଧୁନିକ ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଭାରତକୁ ସ୍ୱାବଲମ୍ବୀ କରିବାକୁ ସେ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲେ । ଯାହା ଫଳରେ ବିଜ୍ଞାନ ବଳରେ ଆମେ କୃଷି ଓ ଶିଳ୍ପରେ ଅଚିରେ ସ୍ୱାବଲମ୍ବୀ ହୋଇ ପାରିଲେ । ମହାକାଶ ଗବେଷଣାରେ ଭାରତବର୍ଷ ଅନ୍ୟ କାହାରି ସାହାଯ୍ୟ ନ ନେଇ ନିଜର ବୈଜ୍ଞାନିକମାନଙ୍କ ସାହାଯ୍ୟରେ ପୃଥିବୀକୁ ଦେଖାଇ ଦେଲେ ଯେ ଆଣବିକ ଶକ୍ତିର ଶାନ୍ତିପୂର୍ଣ୍ଣ ପ୍ରୟୋଗ କରି ମାନବ ଜାତିର କଲ୍ୟାଣ କରାଯାଇ ପାରେ । ଆଜି ପୃଥିବୀର ପାଞ୍ଚ ଛଅଟି ଦେଶ ମଧ୍ୟରେ ଆଣବିକ ଗବେଷଣା କ୍ଷେତ୍ରରେ ଭାରତ ପରିଚିତ ହୋଇ ପାରିଛି । ଦୀର୍ଘ ୧୦୦ରୁ ୨୦୦ ବର୍ଷ ଧରି ପୃଥିବୀର ଅନ୍ୟାନ୍ୟ ଦେଶମାନେ ଶିଳ୍ପର ପ୍ରଗତି କ୍ଷେତ୍ରରେ ଯାହା କରି ପାରିଛନ୍ତି; ମାତ୍ର ଅଳ୍ପକାଳ ମଧ୍ୟରେ ଭାରତବର୍ଷରେ ତାହା ସମ୍ଭବ ହୋଇଛି ।

ଆମ ସମ୍ବିଧାନରେ ଘୋଷିତ ସମାଜବାଦ ନୀତିକୁ ବାସ୍ତବ ରୂପରେଖ ଦେବା ନିମନ୍ତେ ସେ 'ବିଂଶସୂତ୍ରୀ କାର୍ଯ୍ୟକ୍ରମ' ଶୀର୍ଷକ ଏକ ନୂତନ ଉପାହାର ପ୍ରସ୍ତୁତ କରିଥିଲେ । ଏହା ଫଳରେ ସମାଜର ସବୁଠାରୁ ଗରିବ ଲୋକ, ହରିଜନ, ଆଦିବାସୀ ଓ ଖଟିଖିଆମାନଙ୍କର ପ୍ରଭୂତ କଲ୍ୟାଣ ସାଧନ କରାଯାଇ ପାରିଲା । ୧୯୬୯ରେ ସେ ଭାରତବାସୀ ବିଶେଷ କରି ଶ୍ରମିକ ଗୋଷ୍ଠୀଙ୍କ ଆଶାଭାଜନ ଓ ବିଶ୍ୱାସ ନିମନ୍ତେ ବ୍ୟାଙ୍କ ଜାତୀୟକରଣ, ରାଜା ମହାରାଜାଙ୍କ ହାତପାଣ୍ଠି ଉଚ୍ଛେଦ କରିଥିଲେ । ଏଭଳି ପଦକ୍ଷେପ ନେବା ଲାଗି ସେ ଉଚ୍ଚକୋଟୀର ସାହସିକତା ପ୍ରଦର୍ଶନ କରିଥିଲେ ଏବଂ ତଦ୍‌ଜନିତ ଦଳ ବିଭେଦକୁ ଭ୍ରୂକ୍ଷେପ କରି ନଥିଲେ । ଏହାଫଳରେ ଦେଶର କୋଟି କୋଟି ଲୋକଙ୍କ ମଧ୍ୟରେ ଏକ ଆଶାର ଝଲକ ସୃଷ୍ଟି କରିଥିଲା ।

ଓଡ଼ିଶା ପ୍ରତି ତାଙ୍କର ଶ୍ରଦ୍ଧା ଓ ସଦିଚ୍ଛା ଥିଲା ଅତି ନିବିଡ଼ । ସେ ଯେତେବେଳେ ଓଡ଼ିଶା ଆସିଛନ୍ତି, ସେତେବେଳେ ବିଶେଷ ଭାବରେ ଆଦିବାସୀ ଅଞ୍ଚଳ ପରିଦର୍ଶନ କରିବାପାଇଁ ଇଚ୍ଛା ପ୍ରକାଶ କରିଛନ୍ତି ; ଆଦିବାସୀ ଅଞ୍ଚଳର ଲକ୍ଷ ଲକ୍ଷ ଲୋକଙ୍କୁ ଆଶ୍ୱାସନାବାଣୀ ଶୁଣାଇ ସେମାନଙ୍କ ଅଭାବ ଅସୁବିଧା ବୁଝୁଥିଲେ । ପ୍ରସଙ୍ଗକ୍ରମେ ସେ ପୂର୍ବ ଜନ୍ମରେ ଜଣେ ଆଦିବାସୀ ଘରେ ଜନ୍ମ ହୋଇଥିଲେ ବୋଲି କହୁଥିଲେ । ସେ ଯେ କେବଳ ତାଙ୍କ ଜୀବନର ଶେଷ ଦୁଇ ଦିନ ଓଡ଼ିଶାରେ କଟାଇ ଥିଲେ ତା' ନୁହେଁ, ଯେତେବେଳେ ଓଡ଼ିଶାରେ ପ୍ରାକୃତିକ ବିପର୍ଯ୍ୟୟ ଆସିଛି, ତହିଁର ମୁକାବିଲାପାଇଁ ସେ ମୁକ୍ତ ହସ୍ତରେ ସାହାଯ୍ୟ କରିଛନ୍ତି । ଓଡ଼ିଶାର ସଂସ୍କୃତି ଓ ପରମ୍ପରାକୁ ସେ ସମ୍ମାନ କରୁଥିଲେ । ସେ ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ଯୋଗ ଦେଇ ତହିଁର ଭିନ୍ନ ଭିନ୍ନ ବିଭାଗକୁ ତନ ତନ ଭାବେ ବୁଲି ଦେଖିଥିଲେ ଏବଂ ଓଡ଼ିଶାର ଶିଳ୍ପ, କଳା, ଭାସ୍କର୍ଯ୍ୟ ଦେଖି ସେ ଅଭିଭୂତ ହୋଇ ପଡ଼ିଥିଲେ ଓ ଓଡ଼ିଶାକୁ ଦିନେ ପର୍ଯ୍ୟଟକ ଭାବେ ଆସିବାକୁ ଇଚ୍ଛା ପ୍ରକାଶ କରିଥିଲେ । ସେ ଓଡ଼ିଶାର ମହାନ୍ ସଂସ୍କୃତି ଓ ପରମ୍ପରାକୁ ବହୁବାର ପ୍ରଶଂସା କରିଛନ୍ତି । ଇତିହାସର ଘଟଣାଚକ୍ରରେ ଓଡ଼ିଶା ଗରିବ ହୋଇଯାଇଛି ବୋଲି ସେ ବାରମ୍ବାର ଉଲ୍ଲେଖ କରିଛନ୍ତି । ଓଡ଼ିଶାର ଦାରିଦ୍ର୍ୟ ମୋଚନ ନିମନ୍ତେ ତାଙ୍କର ପ୍ରଧାନମନ୍ତ୍ରିତ୍ୱ କାଳରେ ବହୁ ଯୋଜନା ଓ କାର୍ଯ୍ୟକ୍ରମ ଓଡ଼ିଶାରେ କାର୍ଯ୍ୟକାରୀ କରାଯାଇଛି । ବିଭିନ୍ନ ନଦୀବନ୍ଧ ଯୋଜନା, ଯଖପୁରା—ବାଁଶପାଣି, ହୀରାକୁଦ—ରାୟଗଡ଼ା, ତାଳଚେର—ସମ୍ବଲପୁର ରେଳପଥ ଯୋଜନା, ନାଲ୍‌କୋ ପ୍ରକଳ୍ପ, ପାରାଦୀପ ସାର କାରଖାନା ଭଳି ବହୁ ଯୋଜନା କାର୍ଯ୍ୟକାରୀ କରାଯାଇଛି ।

ବିଶ୍ୱଶାନ୍ତିପାଇଁ ତାଙ୍କର ଅବଦାନ ବିଶେଷ ଭାବରେ ସ୍ମରଣୀୟ । ନିରପେକ୍ଷ ଗୋଷ୍ଠୀ ରାଷ୍ଟ୍ରର ନେତୃତ୍ୱ ଗ୍ରହଣ କରି ସେ ଭାରତର ସ୍ୱରକୁ ବିଶ୍ୱରେ ପ୍ରତିଧ୍ୱନିତ କରାଇ ପାରିଛନ୍ତି । ସେ ବିଶ୍ୱର ଦୁଇ ବିବାଦମାନ ଶକ୍ତିକୁ 'ବିଶ୍ୱ' ଶାନ୍ତି ସ୍ଥାପନ୍ତେ, ବୋଲି ସ୍ପଷ୍ଟ ସୂଚନା ଦେଇଛନ୍ତି । ବର୍ଣ୍ଣ ବୈଷମ୍ୟ, ଉପନିବେଶବାଦ ବିରୁଦ୍ଧରେ ଚାଲିଥିବା ସଂଗ୍ରାମ ଏବଂ ମୁକ୍ତି ସଂଗ୍ରାମ ଲାଗି ନିରପେକ୍ଷ ଗୋଷ୍ଠୀ ରାଷ୍ଟ୍ର ସଂଗ୍ରାମ କରି ଚାଲିବ ବୋଲି ସେ ଦୃଢ଼ କଣ୍ଠରେ ଜାତି-ସଂଘରେ ଘୋଷଣା କରିଥିଲେ । ପୃଥିବୀର ଦ୍ୱିତୀୟ

ଜବାହରଲାଲ ପଣ୍ଡିତ ନେହରୁ ଯେଉଁ ସ୍ୱପ୍ନ ଦେଖିଥିଲେ, ଶ୍ରୀମତୀ ଗାନ୍ଧୀ ପୃଥିବୀର ଶତାଧିକ ରାଷ୍ଟ୍ରକୁ ଗୋଟିଏ ସୂତ୍ରରେ ଆବଦ୍ଧ କରି ସେହି ମହାନ୍ ଶକ୍ତି ପୃଥିବୀରେ ସୃଷ୍ଟି କରି ତାଙ୍କର ସ୍ୱପ୍ନକୁ ବାସ୍ତବ ରୂପରେଖ ଦେଇଥିଲେ ।

ଦେଶ ବୋଲି ପ୍ରମାଣିତ ହୋଇ ଯାଇଥିଲା ।

ଭାରତର ଗଣତନ୍ତ୍ରରେ ଶ୍ରୀମତୀ ଗାନ୍ଧୀଙ୍କର ସ୍ଥାନ ଅଦ୍ୱିତୀୟ । କଂଗ୍ରେସର ବିଭାଜନ ପରେ ସେ ଯେ କେବଳ କଂଗ୍ରେସ ଅନୁଷ୍ଠାନକୁ ସୁଦୃଢ଼ କରି ପାରିଛନ୍ତି ତାହା ନୁହେଁ, ବହୁ ବାଧାବିଘ୍ନ ସତ୍ତ୍ୱେ ସେ କଂଗ୍ରେସ



ରାଜନୈତିକ ସ୍ତରରେ ସେ ଥିଲେ ପ୍ରେରଣା ଓ ଆଦର୍ଶର ଧ୍ରୁବତାରା । ଭାରତର ନେତୃତ୍ୱ କ୍ଷେତ୍ରରେ ସେ ୧୭ ବର୍ଷ ରହିଥିଲେ ଓ ସେଥିମଧ୍ୟରୁ ୧୫ ବର୍ଷ ପ୍ରଧାନମନ୍ତ୍ରୀ ରୂପେ ଥିଲେ । ଭାରତକୁ ଏକ ମହାନ୍ ଦେଶରେ ପରିଣତ କରିବା ଲାଗି ସେ ଯେଉଁ ଉଦ୍ୟମ କରିଥିଲେ ତାହା ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଦେଶର ସଂହତି, ଶକ୍ତି ଓ ସ୍ୱାଧୀନତାକୁ ରକ୍ଷା କରିବା ଲାଗି ସେ ସାରା ଜୀବନ ନିୟୋଜିତ କରି ଶେଷରେ ନିଜର ଜୀବନ ଉତ୍ସର୍ଗ କରିଗଲେ । ତାଙ୍କର ଅମର ଆତ୍ମା ପ୍ରତି ଆଜି ସମଗ୍ର ଦେଶ ଓ ଜାତି ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛି ।

## ଦୃଢ଼ତା ଓ ସାହସିକତାର ପ୍ରତୀକ : ଶ୍ରୀମତୀ ଗାନ୍ଧୀ

ଡକ୍ଟର ହରେକୃଷ୍ଣ ମହତାବ

ଶାସନ କ୍ଷେତ୍ରରେ ହେଉ ବା ରାଜନୀତି କ୍ଷେତ୍ରରେ ହେଉ ଯେଉଁମାନଙ୍କର ମହନୀୟ ବ୍ୟକ୍ତିତ୍ୱ ବିକଶିତ ହୋଇଛି ସେମାନଙ୍କର ଦାୟିତ୍ୱ ପାଳନ ଓ କାର୍ଯ୍ୟକଳାପ ଆଲୋଚନା କରାଯିବା ଉଚିତ । ଶ୍ରୀମତୀ ଗାନ୍ଧୀ ରାଜ ଶିକ୍ଷିତା ଓ ରାଜନୀତି କ୍ଷେତ୍ରରେ ପ୍ରବୀଣା ନହୋଇଥିଲେ ମଧ୍ୟ ସେ ଯେପରି ଦୃଢ଼ତା ଓ ସାହସିକତା ସହ ନିଜର କର୍ତ୍ତବ୍ୟ ସଂପାଦନ କରୁଥିଲେ ତାହା ବିରଳ । ତାଙ୍କର ଉପସ୍ଥିତ ବୁଦ୍ଧି ଓ ସାହସଯୋଗୁଁ ବଙ୍ଗଳା ଦେଶ ଏକ ସ୍ୱାଧୀନ ରାଷ୍ଟ୍ର ରୂପେ ସ୍ୱୀକୃତି ଲାଭ କରିଥିଲା । ତାଙ୍କ ଯୋଗୁଁ ଦକ୍ଷିଣ ପୂର୍ବ ଏସିଆରେ ଭାରତ ଗୋଟିଏ ଶକ୍ତି ବୋଲି ପ୍ରମାଣିତ ହୋଇ ପାରିଲା । ତା' ପୂର୍ବରୁ ଚୀନ-ଭାରତ ଯୁଦ୍ଧରେ ଭାରତ ଏକ ଶକ୍ତିହୀନ

କରିଆରେ ଭାରତରେ ଗଣତନ୍ତ୍ରର ଭିତ୍ତିଭୂମିକୁ ସୁଦୃଢ଼ କରି ପାରିଛନ୍ତି । ପ୍ରତ୍ୟେକ କ୍ଷେତ୍ରରେ ସେ ସଂଯମତା ଓ ଆତ୍ମ ସମ୍ମାନ ରକ୍ଷା କରି କାର୍ଯ୍ୟ ସଂପାଦନ କରିଛନ୍ତି । ରାଜନୀତି କ୍ଷେତ୍ରରେ ସେ କେବେହେଲେ ହିଂସା, ଦ୍ୱେଷ ଓ ପ୍ରତିହିଂସା ପରାୟଣା ହୋଇ ନାହାନ୍ତି । ନମ୍ରତା ଓ ସଂଯମତା ସହକାରେ ସେ ପରିସ୍ଥିତିର ମୁକାବିଲା କରିଛନ୍ତି । ଜୟପ୍ରକାଶଜୀଙ୍କର ପ୍ରତି



ରକ୍ଷା ଦିଗରେ ତାଙ୍କର ଅବଦାନ, ତାଙ୍କ ମହାନୁଭବତାର ପରିଚୟ ଦିଏ । ଅମୃତସହରର ସ୍ୱର୍ଣ୍ଣ ମନ୍ଦିର ପୁରୀର ଜଗନ୍ନାଥ ମନ୍ଦିର ଭଳି ଏକ ଧର୍ମପୀଠ । ସେହି ପୀଠରେ ସନ୍ତ୍ରାସବାଦୀମାନେ ଆତ୍ମଗୋପନ କରି ଯେଉଁ ଜଘନ୍ୟ କାର୍ଯ୍ୟମାନ କରି ଚାଲିଥିଲେ ସେଠାକୁ ସୈନ୍ୟ ବାହିନୀ ପଠାଇ ତାହା ଦମନ କରିବା କମ୍ ସାହାସିକତାର କାର୍ଯ୍ୟ ନୁହେଁ । ବସ୍ତୁତଃ କୌଣସି ପ୍ରଧାନମନ୍ତ୍ରୀ ଏଭଳି ସାହସ ପ୍ରଦର୍ଶନ କରି ପାରି ନଥାନ୍ତେ । ସେଠାରେ ଯେଉଁ ସାହସ, ଧୈର୍ଯ୍ୟ, ଦୃଢ଼ତା ଓ ନିଷ୍ଠାପରତା ପରିଲକ୍ଷିତ ହୋଇଥିଲା ତାହାହିଁ ଯଥାର୍ଥ ଭାବେ ଏ ଦେଶର ଯୁବ ସମାଜର ଶିକ୍ଷଣୀୟ ।

ଇନ୍ଦିରା ଗାନ୍ଧୀଙ୍କ ନିଧନ ବାପୁଜୀଙ୍କ ନିଧନ ସହିତ ତୁଳନୀୟ । ହିନ୍ଦୁସ୍ଥାନର ଅଖଣ୍ଡତାପାଇଁ ବାପୁ ପ୍ରାଣ ବିସର୍ଜନ କରିଥିଲେ । ସେହିଭଳି ଦେଶର ସଂହତି, ଐକ୍ୟ ବଜାୟ ରଖିବା ନିମନ୍ତେ ଇନ୍ଦିରା ଗାନ୍ଧୀ ନିଧନ ହୋଇଥିଲେ । ଉଭୟଙ୍କର ନିଧନରେ ସମଗ୍ର ବିଶ୍ୱ ନିସ୍ତବ୍ଧ ଓ ନିର୍ବାକ ହୋଇଯାଇଥିଲା ଓ ପୃଥିବୀପୃଷ୍ଠରେ ଶୋକଶ୍ୱାସ ଖେଳି ଯାଇଥିଲା ।



## ମର୍ଯ୍ୟାଦାବନ୍ତ ମହିଳା; ଶ୍ରୀମତୀ ଗାନ୍ଧୀ

**ଶ୍ରୀମତୀ ନନ୍ଦିନୀ ଶତପଥୀ**

ଶ୍ରୀମତୀ ଗାନ୍ଧୀ ଏକାଧାରରେ ଜଣେ ସାହସୀ, ନିର୍ଭୀକ, ସୁରୁଚି ସଂପନ୍ନା, ସଂସ୍କୃତି ସଂପନ୍ନା ଓ ମର୍ଯ୍ୟାଦାବନ୍ତ ମହିଳା ଥିଲେ । ସେ ତାଙ୍କର ଜୀବଦଶାରେ କିଭଳି ପରସ୍ପର ବିରୋଧୀ କାର୍ଯ୍ୟ ମଧ୍ୟରେ ସମନ୍ୱୟ ରକ୍ଷା କରି ପାରୁଥିଲେ ତାହା ତାଙ୍କୁ ଅତି ନିକଟରୁ ନ ଦେଖିଲେ କିମ୍ବା ତାଙ୍କ ସହିତ ନମିଶିଲେ ଠିକ୍ ଭାବେ ବୁଝିବା ସମ୍ଭବ ହେବ ନାହିଁ ।

ସେ ତାଙ୍କ ରାଜନୈତିକ ଜୀବନକାଳ ମଧ୍ୟରେ ଯେତେ ବିରୋଧର ସମ୍ମୁଖୀନ ହୋଇଛନ୍ତି, ତାଙ୍କ ପୂର୍ବରୁ ଅନ୍ୟ କୌଣସି ନେତା ସେଭଳି ପରିସ୍ଥିତିର ସମ୍ମୁଖୀନ ହୋଇ ନାହାନ୍ତି । ପ୍ରଧାନମନ୍ତ୍ରୀ ପଦପାଇଁ ତାଙ୍କୁ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତାଙ୍କ ପୂର୍ବରୁ ଏହି ପଦପାଇଁ ପ୍ରତିଦ୍ୱନ୍ଦ୍ୱିତା ହୋଇନଥିଲା ଓ ପରେ ମଧ୍ୟ ଏପର୍ଯ୍ୟନ୍ତ ପ୍ରତିଦ୍ୱନ୍ଦ୍ୱିତା ହୋଇନାହିଁ । ଏହି ତୀବ୍ର ପ୍ରତିଦ୍ୱନ୍ଦ୍ୱିତାରେ ନିର୍ବାଚିତା ହୋଇ ଆସିବା ପରେ କିଭଳି ବହୁ ପାର୍ଲାମେଣ୍ଟ ସଦସ୍ୟ ଯେ ଅସହିଷ୍ଣୁ ହୋଇପଡ଼ିଥିଲେ, ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ମୁଖ୍ୟତଃ ୨ଟି କାରଣପାଇଁ ଅନ୍ୟମାନେ ତାଙ୍କ ପ୍ରତି ଅସହିଷ୍ଣୁ ଥିଲେ । ପ୍ରଥମତଃ ସେ ସମୁଦାୟ ବ୍ୟବସ୍ଥା ଭିତରେ ଏକ ପରିବର୍ତ୍ତନ ଆଣିବାପାଇଁ ଚେଷ୍ଟା କରୁଥିଲେ ଯାହାକି ପୁରୁଣାପନ୍ଥୀମାନଙ୍କୁ ସ୍ୱାଦୁ ଲାଗୁନଥିଲା । ଦ୍ୱିତୀୟତଃ ସେ ଜଣେ ମହିଳା ଥିବାରୁ ଆମର ଏହି ପୁରୁଷ ପ୍ରଧାନ ସମାଜରେ ତାଙ୍କ ପ୍ରତି ଅସହିଷ୍ଣୁତା ରହିବା ସ୍ୱାଭାବିକ । ରାଜନୈତିକ ଜୀବନକାଳ ମଧ୍ୟରେ ସେ ପ୍ରଧାନମନ୍ତ୍ରୀ ଭଳି ଗୁରୁଦାୟିତ୍ୱ ବହନ କରି ଯେଉଁଭଳି ନିର୍ଭିକତା, ସାହସିକତା ଓ କର୍ମତତ୍ପରତା ପ୍ରଦର୍ଶନ କରିଛନ୍ତି, ତାହା ସଚରାଚର ଦେଖିବାକୁ ମିଳେ ନାହିଁ । ପ୍ରଧାନମନ୍ତ୍ରୀ ଭାବେ ତାଙ୍କୁ ଭାରତର ସାଧାରଣ ନିର୍ବାଚନ ପରିଚାଳନା କରିବାକୁ ପଡ଼ିଥିଲା । ଏହି ପରିପ୍ରେକ୍ଷୀରେ ସେ ଓଡ଼ିଶା ଗସ୍ତରେ ଆସିଥିଲେ, ନିର୍ବାଚନ ଗସ୍ତରେ ସେ ଭୁବନେଶ୍ୱରର ପ୍ୟାରେଡ୍ ପଡ଼ିଆରେ ଆହତ ହୋଇ ମଧ୍ୟ ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେବାରୁ ବିରତ ହେବାକୁ ଇଚ୍ଛିତା ହୋଇନଥିଲେ ଓ ଡାକ୍ତରମାନେ ତାଙ୍କୁ ଆଗାମୀ କାର୍ଯ୍ୟକ୍ରମଗୁଡ଼ିକ ବାତିଲ କରିଦେବାପାଇଁ ଦେଇଥିବା ପରାମର୍ଶକୁ ଭ୍ରୁକ୍ଷେପ ନକରି କର୍ତ୍ତବ୍ୟର ଆହ୍ୱାନରେ ମଧ୍ୟପ୍ରଦେଶ ଯାଇ ଓ ନିର୍ବାଚନ ଗସ୍ତ କାର୍ଯ୍ୟ ଶେଷ କରିଥିଲେ । ତାଙ୍କର ଏହି ସାହସିକତା ବିରଳ । ନିର୍ବାଚନ ସଭା ପରିଚାଳନା କରିବା ସମୟରେ ତାଙ୍କର ବହୁ ବିରୋଧୀ ଲୋକ ତାଙ୍କ ପ୍ରତି ଯେଉଁ ରୁଚିହୀନ ଓ ଅଶୋଭନୀୟ ଭାଷା ପ୍ରୟୋଗ କରୁଥାନ୍ତି, ସେ କେଉଁଠାରେ ଅନୁରୂପ ଅଶୋଭନୀୟତା ପ୍ରଦର୍ଶନ କରିନାହାନ୍ତି । ଅପର ପକ୍ଷରେ ଗୋଟିଏ ସୁରୁଚିପୂର୍ଣ୍ଣ ଓ ମର୍ଯ୍ୟାଦାବନ୍ତ ବାତାବରଣ ମଧ୍ୟରେ ନିଜର କାର୍ଯ୍ୟକ୍ରମକୁ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନ କରୁଥାନ୍ତି । ଅନେକ ସହକର୍ମୀ ତାଙ୍କ ସହିତ ସହମତ ହୋଇନପାରି ତାଙ୍କଠାରୁ ଦୂରେଇ ଚାଲିଗଲେ ସେ ମନ ମଧ୍ୟରେ ଗୁରୁଦେବଙ୍କ ଅମରବାଣୀ ''ଯଦି ତୋର ଡାକ୍ କେହି ନା ଶୁନେ ଓ ନା ଆସେ, ତବେ ଏକ୍‌ଲା ଚଲୋରେ'' ମନ୍ତ୍ରରେ ଦୀକ୍ଷିତ ହୋଇ ସେ ପରବର୍ତ୍ତୀ କାର୍ଯ୍ୟପନ୍ଥା ଅନୁସରଣ କରନ୍ତି । ଦେଶର ପ୍ରଧାନମନ୍ତ୍ରୀ ହିସାବରେ ସେ ଦୃଢ଼ତା ଓ ଦକ୍ଷତାର ସହ ନିଷ୍ପତ୍ତିମାନ ନେଉଥିଲେହେଁ, ବ୍ୟକ୍ତିଗତ ଜୀବନରେ ସେ ଥିଲେ କୋମଳ ଓ ସୁରୁଚି ସଂପନ୍ନା ।

ଶ୍ରୀମତୀ ଗାନ୍ଧୀ ଭାରତବର୍ଷର ରାଜନୀତିରେ କେନ୍ଦ୍ରବିନ୍ଦୁ ହୋଇ ରହିଗଲେ । ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିଲେ, କ୍ଷମତାଚ୍ୟୁତ ହୋଇଥିଲେ ଓ ପୁନଶ୍ଚ କ୍ଷମତାରେ ରହିଥିଲେ । ଏହି ତିନି ଅବସ୍ଥାରେ ସେ କୌଣସି ସମୟରେ ନିଜ ମନର ଭାରସାମ୍ୟ ହରାଇ ନାହାନ୍ତି । କୌଣସି କ୍ଷେତ୍ରରେ ଉତ୍ତେଜିତ ହୋଇନାହାନ୍ତି, ଦୁଃଖରେ ଭାଙ୍ଗି ପଡ଼ି ନାହାନ୍ତି ଓ ହତାଶ୍ ହୋଇ ନାହାନ୍ତି । ସେ ତାଙ୍କ ଜୀବଦଶାରେ କୌଣସି ବ୍ୟକ୍ତିଙ୍କ ପ୍ରତି ଅସମ୍ମାନଜନକ ଭାଷା ପ୍ରୟୋଗ କରିଥିବା ଜଣାଯାଏ ନାହିଁ । ଏହାହିଁ ତାଙ୍କ ସଂସ୍କୃତିର ପରିଚୟ ଦିଏ ।



## ମହିୟସୀ ମହିଳା, ଶ୍ରୀମତୀ ଗାନ୍ଧୀ

**ଶ୍ରୀ ନୀଳମଣି ରାଉତରାୟ**

ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ହିସାବରେ ଯେତେ କାର୍ଯ୍ୟ ସଂପାଦନ କରି ଯାଇଛନ୍ତି ତାହା କଳ୍ପନାତୀତ । ସେ ଦେଶର ଅରାଜକତା, ବିଶୃଙ୍ଖଳା ଓ ଅଶାନ୍ତିକୁ ଦମନ କରି ଶାନ୍ତି ପ୍ରତିଷ୍ଠା କରିବା ଦିଗରେ ଯେଉଁ ନିରବଚ୍ଛିନ୍ନ



ଉଦ୍ୟମ ଚଳାଇଥିଲେ ସେଥିପାଇଁ ତାଙ୍କୁ ଆତ୍ମବଳି ଦେବାକୁ ପଡ଼ିଥିଲା । ସମାଜରେ ସଦ୍‌ଭାବ ପ୍ରତିଷ୍ଠା କରି ଭାରତବର୍ଷର ସମୃଦ୍ଧି ଘଟାଇବା ଥିଲା ତାଙ୍କର ଆଦର୍ଶ । ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ଖ୍ୟାତି ଓ ସମ୍ମାନ ଲାଭ କେବଳ ଇନ୍ଦିରା ଗାନ୍ଧୀଙ୍କ ଯୋଗୁଁ ହିଁ ସମ୍ଭବ ହୋଇଛି । ଭାରତବର୍ଷର ଜଣେ ମହିୟସୀ ମହିଳା ଯେ ସମଗ୍ର ବିଶ୍ୱରେ ଖ୍ୟାତି ଅର୍ଜନ କରିପାରିଛନ୍ତି ଏହା ଭାରତବାସୀଙ୍କ ପାଇଁ ଗୌରବର ବିଷୟ । ସେ ଥିଲେ



ଜଣେ ଶ୍ରେଷ୍ଠ ନେତ୍ରୀ ଓ ଭାରତକୁ ତାଙ୍କର ନେତୃତ୍ୱ ଚିରସ୍ମରଣୀୟ ହୋଇ ରହିବ ।

## ବିଶ୍ୱଶାନ୍ତି ପାଇଁ ଶ୍ରୀମତୀ ଗାନ୍ଧୀ

**ଶ୍ରୀ ସଦାନନ୍ଦ ମହାନ୍ତି**

ଇନ୍ଦିରା ଗାନ୍ଧୀ ବାଲ୍ୟାବସ୍ଥାରୁ ଯେଉଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କରି ଆସିଥିଲେ, ସେଇଥିପାଇଁ ତାଙ୍କୁ ଆତ୍ମବଳି ଦେବାକୁ ପଡ଼ିଥିଲା । ସେ ତାଙ୍କ ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଭାରତ ତଥା ପୃଥିବୀରୁ ସାମ୍ରାଜ୍ୟବାଦ ବିଲୋପପାଇଁ ସଂଗ୍ରାମ ଚଳାଇଥିଲେ । ଇନ୍ଦିରା ଗାନ୍ଧୀ ଯେ କେବଳ ଭାରତର ଶ୍ରେଷ୍ଠ ମହିଳା ଥିଲେ ତା ନୁହେଁ ସେ ଥିଲେ ବିଶ୍ୱର ଶ୍ରେଷ୍ଠ ମହିଳା ଓ ସେଥିପାଇଁ ତାଙ୍କୁ ବହୁ ସମ୍ମାନ ମିଳିଥିଲା । ତାଙ୍କର ଶ୍ରେଷ୍ଠ ଅବଦାନ ଥିଲା ବିଶ୍ୱଶାନ୍ତି । ସମଗ୍ର ମାନବ ଜାତିକୁ କିପରି ଯୁଦ୍ଧର ଭୟାବହତାରୁ ଓ ବିଭୀଷିକାରୁ ରକ୍ଷା କରାଯାଇ ପାରିବ, ସେଥିନିମନ୍ତେ ସେ ସଂଗ୍ରାମ ଚଳାଇ ଆସିଥିଲେ । ତାଙ୍କ ଅନ୍ତେ ତାଙ୍କର ସୁଯୋଗ୍ୟ ପୁତ୍ର ଓ ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଅନୁରୂପ ମନୋଭାବ ଘେନି ବିଶ୍ୱଶାନ୍ତି ନିମନ୍ତେ ନିଜକୁ ନିୟୋଜିତ କରିଅଛନ୍ତି । ସମଗ୍ର ବିଶ୍ୱ ଆଜି ଆଣବିକ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା ଓ ତାରକା ଯୁଦ୍ଧର ବିଭୀଷିକାରେ ଭୟଭୀତ । ଶ୍ରୀମତୀ ଗାନ୍ଧୀ ଏହି ଯୁଦ୍ଧ ବିରୁଦ୍ଧରେ ନିରବଚ୍ଛିନ୍ନ ସଂଗ୍ରାମ କରି ଚାଲିଥିଲେ । ଦେଶର ସଂହତି ଓ ଐକ୍ୟ ପ୍ରତିଷ୍ଠା କରିବା, ଦେଶର ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବା ଏବଂ ସର୍ବୋପରି ବିଶ୍ୱଶାନ୍ତି ଉଦ୍ଦେଶ୍ୟରେ ଆମେ ଯଦି ସଂକଳ୍ପବଦ୍ଧ ହେବା, ତେବେ ଯଥାର୍ଥରେ ଶ୍ରୀମତୀ ଗାନ୍ଧୀଙ୍କ ପ୍ରତି ପ୍ରକୃତ ସମ୍ମାନ ଓ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ପାରିବା ।

## ମମତାମୟୀ ନେତ୍ରୀ ଶ୍ରୀମତୀ ଗାନ୍ଧୀ

**ଶ୍ରୀ ବିଳୁଧେନ୍ଦୁ ମିଶ୍ର**

କୌଣସି ବ୍ୟକ୍ତି ଦେଶର ଶାସନ ଦାୟିତ୍ୱ ଗ୍ରହଣ କରିବା ପରେ ସେ କେବେହେଲେ ସମସ୍ତଙ୍କୁ ସନ୍ତୁଷ୍ଟ କରି ପାରେ ନାହିଁ । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ ହେବାର ବହୁ ପୂର୍ବରୁ ପଣ୍ଡିତ ନେହରୁଙ୍କ କନ୍ୟା ରୂପେ ଦେଶ ବିଦେଶରେ ସୁପରିଚିତ ହୋଇ ସାରିଥିଲେ । ସେ ପଣ୍ଡିତ ନେହରୁଙ୍କ ଯତ୍ନ ନେବାପାଇଁ ନିଜକୁ ନିୟୋଜିତ କରିଥିବାରୁ ତାଙ୍କର ମନ୍ତ୍ରୀ ହେବାର ସମସ୍ତ ଯୋଗ୍ୟତା ଥିବା ସତ୍ତ୍ୱେ ସେ ରାଜନୀତିରୁ ଦୂରେଇ ରହିଥିଲେ । ଅନ୍ତର୍ନିହିତ ଶକ୍ତି ବହୁଦିନ ଲୁଚି ରହେ ନାହିଁ । ଇନ୍ଦିରା ଗାନ୍ଧୀଙ୍କୁ ପଣ୍ଡିତ ନେହରୁଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ଯୁବ କଂଗ୍ରେସକୁ ସଂଗଠିତ କରିବାର ଦାୟିତ୍ୱ ଦିଆଯାଇଥିଲା । ଶ୍ରୀମତୀ ଗାନ୍ଧୀ କଂଗ୍ରେସ ସଭାପତି ଓ ପ୍ରଧାନମନ୍ତ୍ରୀ ଭାବେ ପାର୍ଲାମେଣ୍ଟର ସବୁ ସଭ୍ୟଙ୍କୁ ବ୍ୟକ୍ତିଗତ ଭାବେ ଜାଣିଥିଲେ ଓ ସମସ୍ତଙ୍କ ଖବର ଅନ୍ତର ରଖୁଥିଲେ । ବହୁ ଲୋକଙ୍କ ମତରେ ଶ୍ରୀମତୀ ଗାନ୍ଧୀ ଥିଲେ ବଡ଼ ରୁକ୍ଷ ଓ ପ୍ରତିହିଂସା ପରାୟଣା, କିନ୍ତୁ ବାସ୍ତବରେ ସେ ଥିଲେ ମମତାମୟୀ । ସେ ଯାହାଙ୍କୁ ଚିହ୍ନିଥିଲେ ତାଙ୍କ ସମ୍ପର୍କରେ ଖବର ରଖୁଥିଲେ ଓ ସମସ୍ତଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲେ । ରାଜନୀତି କ୍ଷେତ୍ରରେ ଭୁଲ୍‌ଭ୍ରାନ୍ତି ରହିବା ସ୍ୱାଭାବିକ । ସେ କିନ୍ତୁ ଦେଶରେ ଏକତା ଓ ଅଖଣ୍ଡତା ରକ୍ଷା କରିବା ନିମନ୍ତେ ସମୟ ଓ ପରିସ୍ଥିତିରେ ଯେଉଁ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ତାହାର ମୁକାବିଲା କରିବା ଲାଗି ଯାହା ଉଚିତ ମନେ କରିଛନ୍ତି ସେ ସଂଛାତରେ ନିଷ୍ପତ୍ତି ନେଇଛନ୍ତି ।

ଦେଶର ସଂହତି ରକ୍ଷା ଓ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବାପାଇଁ ସେ ଅନ୍ତିମ କାଳ ପର୍ଯ୍ୟନ୍ତ ସଂଗ୍ରାମ କରି ଆସିଥିଲେ । ଶାନ୍ତିବିନା ପ୍ରଗତି ଅସମ୍ଭବ । ଦେଶର ଏକତା ଓ ଅଖଣ୍ଡତା ବଜାୟ ରଖିବା ଏବଂ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବା ଦିଗରେ ଆଜିର ଯୁବ ସମାଜକୁ ସଂକଳ୍ପବଦ୍ଧ ହେବାପାଇଁ ସେ ଆହ୍ୱାନ ଜଣାଇଥିଲେ ।

(୧୯୮୪ ଅକ୍ଟୋବର ୩୧ ତାରିଖରେ ପ୍ରଦତ୍ତ ଅଭିଭାଷଣରୁ ସଂଗୃହୀତ)



# ଏକବିଂଶ ଶତାବ୍ଦୀର ଭାରତ ଗଠନ

ଶ୍ରୀ ତାରକାନ୍ତ ମହାନ୍ତ

ବର୍ତ୍ତମାନ ଆମେ ଏହି ଶତାବ୍ଦୀର ନବମ ଦଶନ୍ଧିରେ ପଦାର୍ପଣ କରି ସାରିଲୁଣି । ଆଉ କେବଳ ପନ୍ଦର ବର୍ଷ ବାକୀ ରହିଛି ଶେଷ ଦଶନ୍ଧିରେ ପାଦ ଥାପିବାକୁ । ଏକବିଂଶ ଶତାବ୍ଦୀରେ ପଦାର୍ପଣ କରିବାକୁ ଆଉ ତିନିଗୋଟି ପଞ୍ଚବାର୍ଷିକ ଯୋଜନା । ଏହି ସମୟ ଭାରତ ପାଇଁ ସନ୍ଧି ସନ୍ଧି ବା ଯୁଗ ସନ୍ଧି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ସମୟ (୧୯୮୫—୨୦୦୦) ଏକବିଂଶ ଶତାବ୍ଦୀର ଭାରତ ଗଠନ ପାଇଁ ପ୍ରସ୍ତୁତ ସମୟ । ତେଣୁ ୧୯୮୫—୧୯୯୦ ହେଉଛି ଏକବିଂଶ ଶତାବ୍ଦୀର ଭାରତ ଗଠନର ପ୍ରଥମ ପ୍ରସ୍ତୁତି ପର୍ବ ।

ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ ଭାରତ ଇତିହାସରେ ୧୮୮୫ରୁ ୧୯୦୦ ଖ୍ରୀଷ୍ଟାବ୍ଦ ସନ୍ଧିସନ୍ଧି ସମୟ ଥିଲା । ଏହି ସମୟ ମଧ୍ୟରେ ଭାରତର ଜାତୀୟ କଂଗ୍ରେସ (ଆଇ. ଏନ୍. ସି.) ଜନ୍ମ ଲାଭ କରିଥିଲା ଏବଂ "ସ୍ୱରାଜ" ମୋର ଜନ୍ମଗତ ଅଧିକାର ଏବଂ ଏହି ଅଧିକାରକୁ ସାବ୍ୟସ୍ତ କରିବା ଲାଗି ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଲୋକମାନ୍ୟ ବାଳ ଗଙ୍ଗାଧର ତିଳକ ଯେଉଁ ଆହ୍ୱାନ ଦେଇଥିଲେ, ତାହା ନୂତନ ମୋଡ଼ ନେଇଥିଲା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ । ବିଶ୍ୱ ଇତିହାସ ଏବଂ ସର୍ବୋପରି ୟୁରୋପର ଇତିହାସରେ ୧୮୮୫ରୁ ୧୯୧୪ ଖ୍ରୀ. ଅ. ନର୍ମାନ୍ ଆନଜେଲସ୍ (Norman Angeles)ଙ୍କ ଭାଷାରେ ଥିଲା 'The era of great illusion' ଅର୍ଥାତ୍ ପ୍ରହେଳିକାର ଯୁଗ । ବିଭିନ୍ନ ରାଷ୍ଟ୍ରର ସାମରିକ ପ୍ରସ୍ତୁତି ଓ ଯୁଦ୍ଧର ଆତଙ୍କ ଏହି ସମୟ ମଧ୍ୟରେ ଦେଖା ଦେଇଥିଲା । ସଂପ୍ରତି ତ୍ରୈପାକ୍ଷିକ ରାଜନୀତିରେ (Tripolarisation of politics)ରେ ଯେପରି ଶୀତଳ ଯୁଦ୍ଧର (Cold War) ଆତଙ୍କ ଦେଖା ଦେଉଛି, ବିଶ୍ୱ ଇତିହାସରେ ସେହି ସମୟ ଥିଲା ୧୮୮୫ରୁ ୧୯୧୪ ଖ୍ରୀ . ଅ. । ଏହାପରେ ପ୍ରଥମ ବିଶ୍ୱଯୁଦ୍ଧ ୧୯୧୪ରୁ ୧୯୧୮ ମଧ୍ୟରେ ଘଟିଥିଲା । ପ୍ରଥମ ବିଶ୍ୱ ଯୁଦ୍ଧପରେ ୧୯୧୯ରୁ ୧୯୫୦ ମଧ୍ୟରେ ଯେତେବେଳେ ୟୁରୋପ, ଆମେରିକା ଓ ମଧ୍ୟପ୍ରାଚ୍ୟରେ ଏହି ସମୟରେ ସେମାନଙ୍କ ପାଇଁ ଦେଶ ଗଠନ ବା ନିର୍ମାଣର ଯୁଗ (Era of Re-construction) ଥିଲା, ସେହି ସମୟ ଭାରତ ପାଇଁ ଥିଲା ସଂକଟମୟ ଯୁଗ । ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ, ସର୍ଦ୍ଦାର ପଟେଲ, ଜୟପ୍ରକାଶ ନାରାୟଣ, ଜବାହରଲାଲ ନେହରୁ, ଆଚାର୍ଯ୍ୟ କୃପାଳିନୀ ଓ ଲାଲବାହାଦୁର ଶାସ୍ତ୍ରୀ ପ୍ରମୁଖଙ୍କ ନେତୃତ୍ୱରେ ସ୍ୱାଧୀନତା ପାଇଁ ସଂଗ୍ରାମ, ସର୍ବଶେଷରେ ସ୍ୱାଧୀନତା ପ୍ରାପ୍ତି, ସ୍ୱାଧୀନୋତ୍ତର ଭାରତରେ ସାଂପ୍ରଦାୟିକ ଦଙ୍ଗା, ନେତାଜୀ ସୁବାଷଙ୍କ ଅନ୍ତର୍ଦ୍ଧାନ, ମହାତ୍ମା ଗାନ୍ଧୀଙ୍କ ମହାପ୍ରୟାଣ ଓ ସ୍ୱାଧୀନ ଭାରତର ନୂତନ ସଂବିଧାନ ପ୍ରଣୟନ ଲାଗି ପ୍ରସ୍ତୁତି ସେହି ସମୟ ମଧ୍ୟରେ ଘଟିଥିଲା । ୧୯୨୦ରୁ ୧୯୫୦ ମଧ୍ୟରେ ସୋଭିଏତ୍ ଋଷରେ ଲେନିନ୍‌ଙ୍କ ନେତୃତ୍ୱରେ ଋଷର ଜନସାଧାରଣଙ୍କ ଅର୍ଥନୈତିକ ବିକାଶ, କାମାଲ୍ ପାଶାଙ୍କ ନେତୃତ୍ୱରେ ତୁର୍କୀର ଆଧୁନିକୀକରଣ, ସନାୟତ ସେନଙ୍କ ନେତୃତ୍ୱରେ ଚୀନର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇ ପାରିଥିଲା ।

ଜାତିର ନମସ୍ୟ ବାପୁଜୀ



ଭାରତ ଇତିହାସରେ ୧୯୦୯ରୁ ୧୯୪୮, ୧୯୪୮ରୁ ୧୯୬୪ ଏବଂ ୧୯୬୪ରୁ ୧୯୮୪ ଯଥାକ୍ରମେ 'ଗାନ୍ଧୀଯୁଗ' (Gandhian Era) 'ନେହରୁ ଯୁଗ' (Era of Nehru) ଓ 'ଇନ୍ଦିରାଯୁଗ' ('Indira Era') ନାମରେ ଅଭିହିତ। ୧୯୮୫ରୁ ୧୯୯୯କୁ କେଉଁ ଯୁଗରୂପେ ଆଖ୍ୟା ଦିଆଯିବ, ତାହା ଇତିହାସର ରାୟ ଉପରେ ନିର୍ଭର କରେ ।



ଶାନ୍ତି ଓ ପ୍ରଗତିର ପ୍ରତୀକ

ଆମ ଦେଶରେ ଯେଉଁ ଛଅଗୋଟି ପଞ୍ଚବାର୍ଷିକ ଯୋଜନା ଯଥା ପ୍ରଥମ (୧୯୫୧-୫୨ରୁ ୧୯୫୫-୫୬ ମଧ୍ୟରେ), ଦ୍ୱିତୀୟ (୧୯୫୬–୬୧), ତୃତୀୟ (୧୯୬୧-୬୨ରୁ ୧୯୬୫-୬୬), ଚତୁର୍ଥ (୧୯୬୯–୭୪), ପଞ୍ଚମ (୧୯୭୪-୭୫ରୁ ୧୯୮୦) ଓ ଷଷ୍ଠ (୧୯୮୦ରୁ ୧୯୮୫) କାର୍ଯ୍ୟକାରୀ କରାଯାଇଛି ଏଥି ମଧ୍ୟରୁ ପ୍ରଥମ ତିନି ଗୋଟି ଯୋଜନା ନେହରୁ ଯୁଗରେ ଓ ଶେଷ ତିନି ଗୋଟି ଯୋଜନା ଇନ୍ଦିରା ଯୁଗରେ କାର୍ଯ୍ୟକାରୀ କରାଯାଇଛି । ସଂପ୍ରତି ଆରମ୍ଭ ହୋଇଛି ସପ୍ତମ ପଞ୍ଚବାର୍ଷିକ ଯୋଜନା (୧୯୮୫ ରୁ ୧୯୯୦) ଏବଂ ଏହାପରେ ଅଷ୍ଟମ ଓ ନବମ (୧୯୯୦ ରୁ ୧୯୯୫ ଏବଂ ୧୯୯୫ ରୁ ୨୦୦୦ ମଧ୍ୟରେ ସମାପ୍ତ ହେବା ସ୍ୱାଭାବିକ । ଆଉ ଦୁଇଗୋଟି ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହେବାକୁ ରହିଛି, ଯାହା ହେବ ଏକ ବିଂଶ ଶତାବ୍ଦୀର ଭାରତ ଗଠନ ପାଇଁ ପ୍ରସ୍ତୁତି ସମୟ । ସପ୍ତମ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହୋଇଛି ଭାରତର ଯୁବ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ କ୍ଷମତା କାଳରେ; ୧୯୮୫ ମସିହାରେ ଯେଉଁ ମସିହାକୁ ସମଗ୍ର ବିଶ୍ୱରେ ଆନ୍ତର୍ଜାତିକ ଯୁବସମ୍ବତ୍ସର ରୂପେ ପାଳନ କରାଯାଉଛି । ୧୯୮୪ ଅକ୍ଟୋବର ୩୧ ତାରିଖ ଦିନ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦେହାନ୍ତ ପରେ ନଭେମ୍ବର ମାସରେ ୪୦ ବର୍ଷର ତରୁଣ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ ହେଲେ । ଠିକ୍ ତା'ର ପର ମାସରେ ଅର୍ଥାତ୍ ଡିସେମ୍ବର ମାସରେ ଲୋକସଭା ନିର୍ବାଚନ ମାଧ୍ୟମରେ ୧୯୮୫ ଜାନୁଆରୀ ୫ ତାରିଖରେ ପ୍ରଧାନମନ୍ତ୍ରୀ ଆସନରେ ପୁଣି ପ୍ରତିଷ୍ଠିତ ହେଲେ । ୧୯୮୪ ନଭେମ୍ବର ୧୨ ତାରିଖରେ ଜାତି ଉଦ୍ଦେଶ୍ୟରେ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଯେଉଁ ଭାଷଣ ପ୍ରଦାନ କରିଥିଲେ ସେ ଭାଷଣର ସାର ମର୍ମ ଏବଂ ଦେଶବାସୀଙ୍କ ପ୍ରତି ତାଙ୍କର ସବୁଠାରୁ ବଡ଼ ଆହ୍ୱାନ ଥିଲା, 'ଏକବିଂଶ ଶତାବ୍ଦୀର ଭାରତ ଗଠନ ଲାଗି' ଆମେ ସମସ୍ତେ ମିଳିମିଶି କାମ କରିବା । ପ୍ରଦତ୍ତ ଭାଷଣର ଶେଷ ଅନୁଚ୍ଛେଦ ନିମ୍ନ ମତେ ଉଦ୍ଧାର କରାଗଲା ।

"ବର୍ତ୍ତମାନ ଆମେ ଯେଉଁପରି ଭାବରେ ଗଠନ କରିବା ଆସନ୍ତା କାଲି ତାହା ସେହିପରି ହେବ । ଆମେ ମିଳିମିଶି ଏକବିଂଶ ଶତାବ୍ଦୀର ଭାରତ ଗଠନ କରିବା, ପରିବର୍ତ୍ତନ ଆବଶ୍ୟକ ହେଉଥିବା ସ୍ଥଳେ ଆମେ ମିଳିମିଶି ପରିବର୍ତ୍ତନ ଆଣିବା, ପ୍ରଗତି ପଥରେ ଦେଖା ଦେଉଥିବା ସମସ୍ତ ବାଧା ଓ ପ୍ରତିବନ୍ଧକର ଆମେ ମିଳିତ ଭାବେ ସମ୍ମୁଖୀନ ହେବା । ଆମେ ଏକତ୍ର ହୋଇ ଏପରି ଭାରତ ଗଠନ କରିବା, ଯାହାକି ହେବ ବଳିଷ୍ଠ, ବିଜ୍ଞ ଓ ମହାନ୍ ଏବଂ ଶାନ୍ତି ତଥା ସହନଶୀଳତାର ଆଲୋକ ସ୍ତମ୍ଭ ।"

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦେହାନ୍ତ ପୂର୍ବରୁ କୌଣସି ଏକ ପ୍ରସଙ୍ଗରେ ସେ ଦେଶବାସୀଙ୍କୁ ମଧ୍ୟ ଅନୁରୂପ ଆହ୍ୱାନ ଜଣାଇଥିଲେ । ଯାହା, ଇଂରାଜୀରେ ନିମ୍ନମତେ ଉଦ୍ଧାର କରାଗଲା :—

" Actions to-day mould our tomorrows, we can turn our backs to the sun and cast long shadows on the lives of generations to come, or we can let light penetrate, illumine the dark patches of the human mind, the choice is ours.

ଜାତୀୟ ସଂହତି ପାଇଁ....



କୌଣସି ଏକ ପ୍ରସଙ୍ଗରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କହିଛନ୍ତି, "ଦେଶରୁ ବ୍ରିଟିଶ୍ ସରକାରଙ୍କୁ ହଟାଇ ଦିଆଯିବା ଦ୍ୱାରା ସ୍ୱାଧୀନତା ଆନ୍ଦୋଳନ ସଂପୂର୍ଣ୍ଣ ହୋଇ ନାହିଁ । ବର୍ତ୍ତମାନ ଦେଶରେ ପ୍ରକୃତ ସମାଜବାଦ ପ୍ରତିଷ୍ଠା କରିବା ଓ ବିଂଶ ଶତାବ୍ଦୀ ଶେଷ ସୁଦ୍ଧା ଦାରିଦ୍ର୍ୟ ଲୋପ କରିବା ପାଇଁ କେନ୍ଦ୍ର ଓ ରାଜ୍ୟ ସ୍ତରରେ ଯେଉଁ ପଦକ୍ଷେପ ନିଆଯାଉଛି ତାହା ହେଉଛି ସ୍ୱାଧୀନତା ଆନ୍ଦୋଳନର ଶେଷ ଅଧ୍ୟାୟ ।"

ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ଭାଷାରେ ଭାରତର ବଡ଼ ସଂପଦ ହେଉଛି ଜନ ସଂପଦ (Our greatest wealth is our People) ତେଣୁ ସେ କହିଛନ୍ତି "We must enable individuals and families to realise their potential to the full, for this we shall stress programmes on family planning, nutrition, welfare of women and children control of diseases, Elementary and adult education, sports and better communications', ଅର୍ଥାତ୍ "ଆମର ସବୁଠାରୁ ବଳି ବଡ଼ ସଂପଦ ହେଲା ଜନଶକ୍ତି । ବ୍ୟକ୍ତି ଓ ପରିବାର ଯେପରି ସେମାନଙ୍କ ଅନ୍ତର୍ନିହିତ ଶକ୍ତିର ପୂର୍ଣ୍ଣ ଉପଲବ୍ଧି କରିପାରିବେ ସେଥିପାଇଁ ଆମକୁ କାର୍ଯ୍ୟ କରିବାକୁ ହେବ । ଏଥିଲାଗି ପରିବାର ନିୟୋଜନ, ପୁଷ୍ଟିକାର୍ଯ୍ୟକ୍ରମ, ମହିଳା ଓ ଶିଶୁ କଲ୍ୟାଣ, ରୋଗ ନିୟନ୍ତ୍ରଣ, ପ୍ରାଥମିକ ଓ ପ୍ରୌଢ଼ ଶିକ୍ଷାର ପ୍ରସାର, କ୍ରୀଡ଼ା ଓ ଉତ୍ତମ ଯୋଗାଯୋଗ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦେବୁ ।"



ଏକବିଂଶ ଶତାବ୍ଦୀର କର୍ଣ୍ଣଧାର ରାଜୀବ

ଏକ ବିଂଶ ଶତାବ୍ଦୀର ଭାରତ ଗଠନ ଲାଗି ସପ୍ତମ, ଅଷ୍ଟମ ଓ ନବମ ପଞ୍ଚବାର୍ଷିକ ଯୋଜନା କାଳ ଅତୀବ ଗୁରୁତ୍ୱପୂର୍ଣ୍ଣ । ବିକାଶଶୀଳ ଭାରତ ପରମୁଖାପେକ୍ଷୀ ନହୋଇ ବର୍ତ୍ତମାନ ଆତ୍ମନିର୍ଭରଶୀଳ ହେବାକୁ ସବୁ ଦିଗରୁ ଦେଶ'ର ଉଦ୍ୟମକୁ ଅବ୍ୟାହତ ରଖିଛି ।

ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ଦ୍ୱାରା ଉଦ୍‌ଘୋଷିତ ଦ୍ୱାଦଶ ସୂତ୍ରୀ କାର୍ଯ୍ୟକ୍ରମ ( Twelve Point Programme) ମଧ୍ୟରେ ପ୍ରଗତିର ସ୍ତମ୍ଭ ରୂପେ ପରିଗଣିତ ହୋଇଥିବା (Four Fillars of Development) କୃଷି, ସ୍ୱାସ୍ଥ୍ୟ, ଶିକ୍ଷା ଓ ଶିଳ୍ପ ଉପରେ ଯଥେଷ୍ଟ ପ୍ରାଧାନ୍ୟ ଦେବାକୁ ସେ କହିଛନ୍ତି ।

ବିଗତ ପଞ୍ଚବାର୍ଷିକ ଯୋଜନାଗୁଡ଼ିକରେ (ପ୍ରଥମରୁ ଷଷ୍ଠ) ଯାହାର ସମୟ ପରିସର ମୋଟେ ୩୩ ବର୍ଷ, ଉକ୍ତ ସମୟ ମଧ୍ୟରେ ଆଲ୍ଲାଦିନଙ୍କ କୁହୁକବତୀ (Alladin's, Magic Lamp) ଭଳି 'ଗରିବୀ'କୁ ପୂରାପୂରି ମୂଳପୋଛ କରି ହୋଇନାହିଁ । ଏହା କରିବା ମଧ୍ୟ ସମ୍ଭବପର ନୁହେଁ । ତେଣୁ ଏକବିଂଶ ଶତାବ୍ଦୀର ଭାରତ ଗଠନ ଲାଗି ବିଗତ ଯୋଜନାଗୁଡ଼ିକର ଯେଉଁ ସବୁ ତ୍ରୁଟି ବିଚ୍ୟୁତି ପରିଲକ୍ଷିତ ହୋଇଛି, ସେଗୁଡ଼ିକୁ ଆଖି ଆଗରେ ରଖି ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ସେଗୁଡ଼ିକୁ ସୁଧାରି ନେବାକୁ ନବଗଠିତ ଯୋଜନା କମିଶନ୍ ବୈଠକରେ ୧୯୮୫ ମସିହା ଫେବୃଆରୀ ମାସରେ ଯୋଜନାଧ୍ୟକ୍ଷ ଭାବେ ଯୋଜନା ବିଶାରଦମାନଙ୍କୁ (Planning Expert) ) ପରାମର୍ଶ ଦେବାକୁ ଯାଇ ସେ କହିଛନ୍ତି :—

People will co-operate with us as long as we give Evidence of moving fast and development remains the Key factor holding the country together, we should look into on instruments and see whether they are geared to meet the basic requirements of alleviating poverty, providing social Justice and giving an impuets to growth. We should deliver substantial growth to the people and bring about necessary charges in the administration while maintaning stability. It is also necessary to bring about changes in the thinking of the people, they must think big and think ahead. We must give up chasing the tail of a problem and intend try to jump ahead of it."

ଶ୍ରୀ ରାଜୀବ ଗାନ୍ଧୀଙ୍କ ମତରେ ଜନସାଧାରଣଙ୍କ ଆଶା ଓ ଆକାଂକ୍ଷାକୁ ପୂରା ମାତ୍ରାରେ ନ ହେଲେବି ଯଥାସମ୍ଭବ ପୂରଣ କରିପାରିଲେ ଯେ କୌଣସି ଯୋଜନା କାର୍ଯ୍ୟକାରୀ ଓ ଫଳପ୍ରସୂ ହେବାପାଇଁ, ଅକୁଣ୍ଠ ଜନ ସମର୍ଥନ ମିଳିବ । କୌଣସି ସରକାର ଜନମତକୁ ଉପେକ୍ଷାକରି ବେଶୀଦିନ ଟିକି ରହି ପାରିବ ନାହିଁ, ଇତିହାସରେ ତାହାର ପ୍ରମାଣ ଉଜ୍ଜ୍ୱଳ ରହିଛି ।

ସେ ଏହା ପୂର୍ବରୁ ମଧ୍ୟ କହିଥିଲେ "ସପ୍ତମ ଯୋଜନାର ମୂଳ ଲକ୍ଷ୍ୟ ହେଲା ନିର୍ଦ୍ଧାରିତ ସମୟ ମଧ୍ୟରେ ବିକାଶ କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇ ଜନସାଧାରଣ ଯୋଜନାର ସୁଫଳ ଓ ସାମାଜିକ ନ୍ୟାୟ ପାଇ ପାରିବେ" । ତାଙ୍କ ଭାଷାରେ : "Our basic objectives of growth with Justice are realised within the stipulated time table." ଅର୍ଥାତ୍ ସାମାଜିକ ଓ ଅର୍ଥନୈତିକ ଅଭ୍ୟୁତ୍ଥାନ ଜାତୀୟ ନୀତିର ମୂଳ ଲକ୍ଷ୍ୟ । ଏହି ଯୋଜନା କାଳରେ ଦେଶର ପୁରୁଣା ଶତ୍ରୁ ଦାରିଦ୍ର୍ୟ, ବେକାରୀ, ବ୍ୟାଧି ଏବଂ ଅଜ୍ଞତା ବିରୁଦ୍ଧରେ ସଂଗ୍ରାମ ଅବ୍ୟାହତ ରହିବ । ଆମେ ଆମର ପ୍ରଚଳିତ ନୀତି ନିୟମର ସମୀକ୍ଷା କରି ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଯୋଜନାର ମୂଳ ଲକ୍ଷ୍ୟ, ବିକାଶ ସହ ସାମାଜିକ ନ୍ୟାୟ ହାସଲ ଲାଗି ଉଦ୍ୟମ କରିବୁ ।

୧୯୮୫ ଫେବୃୟାରୀ ମାସରେ ଯୋଜନା କମିଶନ ଅଧ୍ୟକ୍ଷଭାବେ ଯୋଜନା ବିଶାରଦମାନଙ୍କୁ କୃଷି ଉପରେ ସର୍ବାଧିକ ଗୁରୁତ୍ୱ ପ୍ରଦାନ କରିବାକୁ ଓ ଶିଳ୍ପନୀତି ପ୍ରଣୟନ କଲାବେଳେ ନୂତନ ବୈଜ୍ଞାନିକଜ୍ଞାନ କୌଶଳକୁ ଆଖି ଆଗରେ

ରଖି ଯୋଜନା ପ୍ରସ୍ତୁତ କରିବାକୁ ହେବ । ଏହାଛଡ଼ା ସ୍ୱର୍ଗୀୟା ଇନ୍ଦିରା ଗାନ୍ଧୀ ଯେଉଁ ବିଂଶସୂତ୍ରୀ ସାମାଜିକ ଓ ଅର୍ଥନୈତିକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ତାହାକୁ ନିଷ୍ଠାର ସହ ଓ ଫଳପ୍ରଦ ଭାବେ କାର୍ଯ୍ୟକାରୀ କରାଯିବ; କାରଣ ଲୋକମାନଙ୍କର ସର୍ବନିମ୍ନ ମୌଳିକ ଚାହିଦା ତୁରନ୍ତ ପୂରଣ କରିବା ହେଉଛି ଏହି କାର୍ଯ୍ୟକ୍ରମର ଲକ୍ଷ୍ୟ । ସେହି ପ୍ରସଙ୍ଗରେ ସେ କହିଛନ୍ତି—

"The Government will remain un-wavering in its resolve to improve the living and working conditions of the Scheduled Castes, the Scheduled Tribes, Backward Classes, Artisans, Agricultural Labourers, Women and Urban Poor, the 20-Point Programme of Indira Gandhi, which aims to fulfil the immediate needs of the People, will be faithfully and effectively implemented."

ଅର୍ଥାତ୍ ଆଦିବାସୀ ଓ ହରିଜନ, ଅନୁନ୍ନତ, ଦୁର୍ବଳ ଓ ଅବହେଳିତ ଶ୍ରେଣୀର ଲୋକ, କାରିଗର, କୃଷି ଶ୍ରମିକ, ମହିଳା ଏବଂ ସହରାଞ୍ଚଳର ଦରିଦ୍ର ବସ୍ତି ବାସିନ୍ଦା ଏବଂ ସାଂପ୍ରତିକ ଜୀବନ ଧାରଣମାନକୁ ସମୁନ୍ନତ କରିବା ଏବଂ ସେମାନଙ୍କୁ କାମଧନ୍ଦା ଯୋଗାଇ ଦେବା ପାଇଁ ସରକାର ପୂର୍ବଭଳି ଉଦ୍ୟମ କରିବେ ଏବଂ ସେଥିପାଇଁ ବଦ୍ଧପରିକର ।

ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ଦ୍ୱାରା ଉଦ୍‌ଘୋଷିତ ଦ୍ୱାଦଶସୂତ୍ରୀ କାର୍ଯ୍ୟକ୍ରମ ହେଉଛି (୧) ପଞ୍ଜାବ ଓ ଆସାମ ସମସ୍ୟା ଶାନ୍ତିପୂର୍ଣ୍ଣଭାବେ ସମାଧାନ କରାଯିବ ଓ ଦେଶର ଏକତା ଓ ସଂହତି ବଜାୟ ରଖାଯିବ । (୨) ସାଂପ୍ରଦାୟିକ ପକ୍ଷପାତିତା ଓ ହିଂସାତ୍ମକ କାର୍ଯ୍ୟକଳାପକୁ ଦୃଢ଼ହସ୍ତରେ ଦମନ କରାଯିବ । (୩) ଆଧୁନିକ ବୈଷୟିକ କୌଶଳର ସଦୁପଯୋଗ କରି ଦେଶର ଉତ୍ପାଦନ କ୍ଷମତାର ଅଭିବୃଦ୍ଧିସାଧନ । (୪) ଜାତୀୟ ସ୍ତରରେ ଏକ ପତିତ ଜମି ଉନ୍ନୟନ ବୋର୍ଡ ଗଠନ କରାଯିବ । ଏହାଫଳରେ ପ୍ରତିବର୍ଷ ପାଞ୍ଚନିୟୁତ ହେକ୍ଟର ପତିତ ଜମିରେ ଜାଳେଣୀକାଠ, ଗୋଖାଦ୍ୟ ଓ ଅନ୍ୟାନ୍ୟ ବୃକ୍ଷରୋପଣ କରାଯାଇ ପାରିବ । (୫) ପବିତ୍ର ଗଙ୍ଗାନଦୀ ଓ ଏହାର ଉପନଦୀ ଗୁଡ଼ିକରେ ଦୂଷିତ ଜଳକୁ ପ୍ରତିରୋଧ କରାଯିବ । (୬) ଦେଶର ସବୁ ଅଞ୍ଚଳରେ ଜଳ ଓ ବାୟୁମଣ୍ଡଳକୁ ବିଶୁଦ୍ଧ କରାଯିବ ଓ ପରିବେଶର ସୁରକ୍ଷା କରାଯିବ ଏବଂ ଏହା ବିଷମୁକ୍ତ ହେବା ଉଚିତ, କାରଣ ଦେଶବାସୀଙ୍କ ଉତ୍ତମ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ଏହା ଏକାନ୍ତ ଆବଶ୍ୟକ । (୭) ନୂତନ ଶିକ୍ଷାନୀତି ଟିଏ ପ୍ରସ୍ତୁତ କରାଯିବ । (୮) ବିଦ୍ୟାଳୟର ଶିକ୍ଷା ପଦ୍ଧତିରେ ନୂତନ ଯୋଗାଯୋଗ ଓ ପ୍ରଯୁକ୍ତି ବିଦ୍ୟାକୁ ବ୍ୟାପକ ଆକାରରେ ବ୍ୟବହାର କରିବାପାଇଁ ବହୁବିଧ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯିବ (୯) ବୃତ୍ତିରି କ୍ଷେତ୍ରସ୍ଥ ଉପାଧିଗୁଡ଼ିକୁ ନ୍ୟୂନ କରାଯିବ । (୧୦) ସମସ୍ତଙ୍କପାଇଁ ଉଚ୍ଚଶିକ୍ଷା ବ୍ୟବସ୍ଥା ଏବଂ ଶିକ୍ଷାର ଦ୍ୱାର ଉନ୍ମୁକ୍ତ କରିବାପାଇଁ ଗୋଟିଏ ମୁକ୍ତ ବିଦ୍ୟାଳୟ ସ୍ଥାପନ । (୧୧) ସରକାରୀ କାର୍ଯ୍ୟାଳୟଗୁଡ଼ିକରେ ଜନସାଧାରଣଙ୍କୁ ତୁରନ୍ତ, ଭଦ୍ର ଉତ୍ପ୍ରେରିତ ଓ ସନ୍ତୋଷ ସେବା ପ୍ରଦର୍ଶନ କରିବା କ୍ଷେତ୍ରରେ ସର୍ବାଧିକ ଗୁରୁତ୍ୱ ଦିଆଯିବ । (୧୨) ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ ପୁନଃସଂଗଠିତ କରି ଦରିଦ୍ର ଜନସାଧାରଣ ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଯେପରି ଉପକୃତ ହୁଅନ୍ତି ତାହାକୁ ଫଳପ୍ରଦ କରି ଦେଶରୁ ଦାରିଦ୍ର୍ୟ ବିମୋଚନପାଇଁ ଗୁରୁତ୍ୱ ପ୍ରଦାନ କରାଯିବ ।

ଗତ ୧୨-୧୧-୮୪ ତାରିଖରେ ବେତାର ଓ ଦୂରଦର୍ଶନରେ ଜାତି ଉଦ୍ଦେଶ୍ୟରେ ଯେଉଁ ଭାଷଣ ଦେଇଥିଲେ, ତାହାର ସାରାଂଶ ଥିଲା:—

(୧) ସମାଜବାଦ ଓ ଯୋଜନାପ୍ରତି ତାଙ୍କ ସରକାର ପୂର୍ବଭଳି ଅନୁରକ୍ତ ରହିବେ ।

(୨) ଯୋଜନାରେ ଗ୍ରାମାଞ୍ଚଳର ବିକାଶ ପ୍ରତି ସର୍ବାଧିକ ଗୁରୁତ୍ୱ ଦିଆଯିବ ।

(୩) ମିଶ୍ର ଅର୍ଥନୀତି ଅବ୍ୟାହତ ରହିବ ।

ସୁତରାଂ, ରାଷ୍ଟ୍ରାୟତ୍ତ ସଂସ୍ଥାମାନେ ଅଧିକ ଦାୟିତ୍ୱ ବହନ କରିବେ ଏବଂ (୪) ଘରୋଇ ଉଦ୍ୟୋଗଗୁଡ଼ିକରୁ ଉତ୍ପାଦନ କ୍ଷମତା ବୃଦ୍ଧି ଲାଗି ଯଥେଷ୍ଟ ସୁଯୋଗ ଦିଆଯିବ ଏବଂ ହରିଜନ ଓ ଆଦିବାସୀ, କୃଷି ଶ୍ରମିକ, ସହରାଞ୍ଚଳର ଦରିଦ୍ର ଜନତା ତଥା ଅନ୍ୟାନ୍ୟ ଆର୍ଥିକ ଦୁର୍ବଳ ଶ୍ରେଣୀ ଏବଂ ମହିଳାମାନଙ୍କ ଜୀବନଧାରାର ବିକାଶପାଇଁ ସରକାର ପୂର୍ବଭଳି ତାଙ୍କ ଉଦ୍ୟମ ଅବ୍ୟାହତ ରଖିବେ ଓ (୬) ସ୍ୱର୍ଗୀୟା ଇନ୍ଦିରାଗାନ୍ଧୀଙ୍କ ବିଂଶସୂତ୍ରୀ ଅର୍ଥନୈତିକ କାର୍ଯ୍ୟକ୍ରମକୁ ଅଧିକ ନିଷ୍ଠା ଓ ସଫଳତାରସହ କାର୍ଯ୍ୟକାରୀ କରାଯିବ ।

ଏହା ବ୍ୟତୀତ ସେ ତାଙ୍କର ଉକ୍ତ ଭାଷଣରେ ମଧ୍ୟ ଉଲ୍ଲେଖ କରିଥିଲେ ଯେ, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତିକୁ ଅପରିବର୍ତ୍ତିତ ରଖାଯିବ । ଜନଶକ୍ତି ଓ ସରକାରଙ୍କ ମିଳିତ ଉଦ୍ୟମରେ ଆଭ୍ୟନ୍ତରୀଣ ଓ ବୈଦେଶିକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ଦ୍ୱାରା ସୃଷ୍ଟି ହେଉଥିବା ସାଂପ୍ରଦାୟିକ ଭେଦଭାବ ପ୍ରଚାର ଓ ହିଂସାକାଣ୍ଡକୁ ଦମନ କରାଯିବ ଓ ସାଂପ୍ରଦାୟିକ ସଦ୍‌ଭାବ ରକ୍ଷାକରିବା ଆବଶ୍ୟକ। କାରଣ ସାଂପ୍ରଦାୟିକତା ବ୍ୟାପକ ହେଲେ ବିଚ୍ଛିନ୍ନତାବାଦୀ ଶକ୍ତିମାନେ ଅଧିକା ସୁଯୋଗ ପାଇବା ସୁନିଶ୍ଚିତ । ଏ ସଂପର୍କରେ ସେ ସ୍ପଷ୍ଟଭାବରେ ଉଲ୍ଲେଖ କରିଥିଲେ ଯେ; ପ୍ରତ୍ୟେକ ବ୍ୟକ୍ତି ଇତିହାସର ଘଟଣାବଳୀରୁ ଶିକ୍ଷା ପାଇବା ଉଚିତ, ଯେତେବେଳେ ଦେଶ ଆଭ୍ୟନ୍ତରୀଣ ଗଣ୍ଡଗୋଳର ସମ୍ମୁଖୀନ ହୋଇଛି ସେତେବେଳେ ଏହାର ଏକତା କ୍ଷୁଣ୍ଣ ହେବା ସଙ୍ଗେ ସଙ୍ଗେ ଦେଶକୁ ସେଥିପାଇଁ ବହୁ ମୂଲ୍ୟ ଦେବାକୁ ପଡ଼ିଛି । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସର୍ବଦା ଦେଶର ଏକତାପ୍ରତି ବିପଦ ଦେଖା ଦେଉଥିବା କଥା ଲୋକଙ୍କୁ ଚେତାଇ ଦେଉଥିଲେ । ଦେଶ ସଂକଟଜନକ ମୂହୂର୍ତ୍ତ ଦେଇ ଗତି କରୁଛି ବୋଲି ଶ୍ରୀମତୀ ଇନ୍ଦିରାଗାନ୍ଧୀ ମଧ୍ୟ ବାରମ୍ବାର ଉଲ୍ଲେଖ କରିଆସୁଥିଲେ । (Eternal Vigilance is the price of liburty) ତେଣୁ ପ୍ରତ୍ୟେକ ବ୍ୟକ୍ତି ଏଥିପ୍ରତି ସଜାଗ ରହିବାକୁ ପଡ଼ିବ

ପ୍ରସିଦ୍ଧ ସୋଭିଏତ ଐତିହାସିକ ଭ୍ୟାନଲୋଭ (Vanlev) କହିଥିଲେ ଇତିହାସରୁ ଗୋଟିଏ ଶିକ୍ଷା ମିଳେ, ତାହା ହେଉଛି ( 'History teaches us to become vigiant'. ଅର୍ଥାତ

ଇତିହାସ ଅତୀତର ଦୋଷତ୍ରୁଟି ସମୀକ୍ଷା କରି ଭବିଷ୍ୟତ ପାଇଁ ସତର୍କ ହେବାକୁ ସମଗ୍ର ମାନବ ଜାତିକୁ ଚେତାବନୀ ହୋଇଥାଏ । ଆଉ ଜଣେ ପ୍ରସିଦ୍ଧ ଐତିହାସିକ ଇତିହାସର ସ୍ରୋତ ଏବଂ ପ୍ରକ୍ରିୟା (Flows end Proces) ସ୍ରୋତ ସଂପର୍କରେ କହିଛନ୍ତି ("History is both the process of drama and evolutions" ଅର୍ଥାତ୍ ଇତିହାସର ସ୍ରୋତ ହେଉଛି କ୍ରମବର୍ତ୍ତନ" "Deadline and fall of Roman Empire" ର ଲେଖକ ପ୍ରସିଦ୍ଧ ଐତିହାସିକ (Edwad gibbon) ଏଡ୍‌ଓ୍ୱାର୍ଡ ଗିବେ଼ାଁ ଲେଖିଥିଲେ" "History is the register of Crimes, falling mistortunes of mankind" ଏହ ମର୍ମରେ ବ୍ୟାଖ୍ୟା କଲେ ବିଂଶ ଶତାବ୍ଦୀ ସମଗ୍ର ମାନବ ଜାତିର ଇତିହାସ ଗିବେ଼ାଁଙ୍କ ମର୍ମରେ ଲେଖାଯାଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଇତିହାସରୁ ଶିକ୍ଷା ପାଇ ଆମେ H. W. Longfellw ଙ୍କ P. S. A. C. of life କବିତାରେ ଯେଉଁ ଉଦ୍ଦେଶ୍ୟ ଦିଆଯାଇଛି, ଉକ୍ତ ପ୍ରେରଣାରେ ଏକ ବିଂଶ ଶତାବ୍ଦୀର ଭାରତ ଗଠନ ଲାଗି ଆମେ ଆଜିଠାରୁ ପ୍ରସ୍ତୁତ ହେବା । ତାହା କ'ଣ ?

Trust no Future, however pleasant, let the dead past burigist dead, actaet in the living present and heart within God over hend,

ପବିତ୍ର ବାଇବେଲରେ ଆମପାଇଁ ଗୋଟିଏ ନୀତି ଉପଦେଶ ଦିଆଯାଇଛି । "Words are the daughters of earth and deeds are sons of heaven" ସେଥିପାଇଁ ଉତ୍କଳ ଦଧୀଚି ପୁଣ୍ୟ ଶ୍ଳୋକ ଉତ୍କଳମଣି ଗୋପବନ୍ଧୁ ଲେଖିଥିଲେ—

"ମନୁଷ୍ୟ ଜୀବନ ନୁହିଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜିଏ ନର କର୍ମ ଏକା ତା'ର
ଜୀବନର ମାନ ଦଣ୍ଡ"।

ଏକବିଂଶ ଶତାବ୍ଦୀର ଭାରତ ଗଠନ ଲାଗି ଏହା ଆମପାଇଁ ପ୍ରେରଣାର ବସ୍ତୁ ହେଉ । ଗୋଟିଏ ଦିନରେ ରୋମ ନଗରୀ ସୃଷ୍ଟି ହୋଇ ନଥିଲା । ଏକବିଂଶ ଶତାବ୍ଦୀର ଭାରତ ଗଠନ ଲାଗି ଭାରତବାସୀଙ୍କ ମଧ୍ୟରେ ସେତିକି ଧୈର୍ଯ୍ୟ, ସହିଷ୍ଣୁତା, ପ୍ରଚଣ୍ଡ କର୍ମ ପ୍ରବଣତା ଓ ସହନଶୀଳ ମନୋଭାବ ସୃଷ୍ଟିହେଉ । ତା' ହୋଇଲେ ସବୁକିଛି ସମ୍ଭବ, ଅସମ୍ଭବ କାହିଁକି ? ବିଶ୍ୱବିଜୟୀ ବୀର ନେପୋଲିୟନ କହିଥିଲେ—

Impossible is a word. found only in the dictionary of fools."

ରଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ




ମତ୍ସ୍ୟଜୀବୀ ସଂପ୍ରଦାୟର ବିକାଶ ପାଇଁ ଅନୁଷ୍ଠିତ ଜାତୀୟ ସମ୍ମିଳନୀରେ ପ୍ରଧାନମନ୍ତ୍ରୀଙ୍କ ଉଦ୍‌ବୋଧନ ....



# ସୁସ୍ମୃତିରେ

ଶ୍ରୀ ମୁରଲୀଧର ମିଶ୍ର



ଆଜି ନଭେମ୍ବର ୧୪ ତାରିଖ । ପ୍ରତ୍ୟେକ ଶିକ୍ଷାନୁଷ୍ଠାନ-ଗୁଡ଼ିକରେ ଏଇ ପବିତ୍ର ଦିବସଟିକୁ "ଶିଶୁ ଦିବସ" ରୂପେ ପାଳନ କରାଯାଉଅଛି । କାହିଁକି ପାଳନ କରାଯାଉଛି ଏବଂ ତାର ମହତ୍ କଣ? ଏ ସଂପର୍କରେ ଆମମାନଙ୍କ ମନରେ ଅନେକ ପ୍ରଶ୍ନ ଉଠିପାରେ ।

—"ଏ ସଂସାର ଅନିତ୍ୟ । ଜନ୍ମପରେ ମୃତ୍ୟୁ ମଧ୍ୟ ସୁନିଶ୍ଚିତ" ।



ଆନନ୍ଦ ଭବନରେ ନେହେରୁ ପରିବାର .......

ଶାନ୍ତି, ମୈତ୍ରୀ ଏବଂ ସଦ୍‌ଭାବ ପ୍ରତିଷ୍ଠା କରିବା ନିମନ୍ତେ ସେ ଲୋକମାନଙ୍କୁ ବାରମ୍ବାର ବୁଝାଉ ଥିଲେ ।

ଭାରତବାସୀ ସୁଖ ଶାନ୍ତିରେ ରୁହନ୍ତୁ, ଏହା ଥିଲା ତାଙ୍କର ମହତ୍ ଉଦ୍ଦେଶ୍ୟ । ତେଣୁ ଶାନ୍ତି ରକ୍ଷା ପାଇଁ ଏବଂ ଯୁଦ୍ଧ ଏଡ଼ିବା ପାଇଁ ସେ ୧୯୫୪ ମସିହା ସେପ୍‌ଟେମ୍ବର ୨୩ ତାରିଖରେ "ପଞ୍ଚଶୀଳ" ନୀତି ଘୋଷଣା କରିଥିଲେ । ତାହା ହେଉଛି, "ପ୍ରତ୍ୟେକ ଦେଶର ଅଖଣ୍ଡତା ଓ ସାର୍ବଭୌମତ୍ୱ ପ୍ରତି ସମ୍ମାନ, ପରସ୍ପର ମଧ୍ୟରେ ବୁଝାମଣା ଓ ଯୁଦ୍ଧର ଅବସାନ କୌଣସି ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନକରିବା ପ୍ରତ୍ୟେକ ଦେଶପ୍ରତି ସମ୍ମାନ ଓ ପାରସ୍ପରିକ ସହଯୋଗ ପାଇଁ ଉଦ୍ୟମ କରିବା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି "ଗ୍ରହଣ କରିବା" ପ୍ରକୃତରେ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଭାରତ ଆନ୍ତର୍ଜାତୀୟ କ୍ଷେତ୍ରରେ ବିଶେଷ ସମ୍ମାନ ଲାଭ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଦେଶମାନଙ୍କ ସହିତ ମଧ୍ୟ ସୁସଂପର୍କ ସ୍ଥାପନ କରି ପାରିଛି ଏବଂ ବିଶ୍ୱ ଦରବାରରେ ନିଜକୁ ପ୍ରତିଷ୍ଠା କରିବାର ଗୌରବ ହାସଲ କରିଛି ।

ଦିନରାତି ସବୁବେଳେ ସେ କର୍ମରତ ଥିଲେ । ତଥାପି ଦିନକ ପାଇଁ ସେ ଥକି ପଡି ନଥିଲେ । ଏହା ବାସ୍ତବିକ୍ ଠିକ୍ । ନେହରୁଙ୍କର ମୃତ୍ୟୁପରେ ତାଙ୍କ ଟେବୁଲ ଉପରେ ଆମେରିକାର କବି ରବର୍ଟ ଫ୍ରଷ୍ଟଙ୍କର କବିତାରୁ ଗୋଟିଏ ପଦ ସେ ଲେଖି ରଖିଥିଲେ ତାହା ହେଉଛି–

"ସୁନ୍ଦର ଯେତିକି ଅନ୍ଧାରସେତିକି
ଏହି ଯେ ଗହନ ବନ,
ତେଣୁ ତୁ ଆପଣା ସଂକଳ୍ପେ ଅଟଳ
ଅଟଳ ରହରେ ମନ !
ଆଗରେ ପଡ଼ିଛି ପଥ ବହୁଦୂର
ଆହୁରି କେତେ ଯେ ବାକି
ଗ୍ଲଲିବି ଗ୍ଲଲିବି ନପଡ଼ିବି ଥକି
ମୁଦିବା ଆଗରୁ ଆଖି ।

ପ୍ରକୃତରେ ନେହରୁ ମୁହୂର୍ତ୍ତ ପାଇଁ ବି ଥକି ପଡ଼ି ନଥିଲେ । ନିଜ ସଂକଳ୍ପରେ ଅଟଳ ରହି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କଠିନ ପରିଶ୍ରମ କରୁଥିଲେ ।

ଦେଶବାସୀହିଁ ଦେଶର ସର୍ବସ୍ୱ ବୋଲି ସେ ପ୍ରତି ମୁହୂର୍ତ୍ତରେ କହୁଥିଲେ । ଦରିଦ୍ର ଜନତାର ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଦେଶ ମାତୃକା ପାଇଁ ଆଉ ଜନତାର ମଙ୍ଗଳ ପାଇଁ ତାଙ୍କ ପ୍ରାଣ ଅହରହ କାନ୍ଦୁଥିଲା । ଏପରି କି ମୃତ୍ୟୁ ପୂର୍ବରୁ ସେ କହିଥିଲେ, "ଭାରତର କୃଷକ ଯେଉଁ ପବିତ୍ର ମାଟିରେ ଲହୁ ଲୁହ ଢ଼ାଳି ଫସଲ ଉପୁଜାଏ ଓ ଶହ ଶହ ଲୋକଙ୍କୁ ଖାଦ୍ୟ ଯୋଗାଇ ନିଜର ଜୀବିକା ଉପାର୍ଜ୍ଜନ କରେ, ମୋର ମୃତ୍ୟୁ ପରେ

ତାହାରି ଉପରେ ମୋର ଚିତା ଭସ୍ମକୁ ବିଞ୍ଚି ଦେବ । ଏହା ଫଳରେ ପ୍ରିୟ ଭାରତ ଭୂମିର ମାଟିରେ ମୋର ଦେହ ମିଶିଯାଇ ପାରିବ । ଯାହାହେଉ, ଆମର ସେହି ପରମ ପୂଜ୍ୟ ନେତାଙ୍କର ଅନ୍ତିମ ଅଭିଳାଷକୁ ଦେଶବାସୀ ପୂର୍ଣ୍ଣ କରିଥିଲେ ।

୧୯୬୪ ମସିହା ମେ ୨୭ ତାରିଖରେ ଆମର ପୂଜ୍ୟ ନେତା ଜାତିର ସ୍ୱପ୍ନ ପଣ୍ଡିତ ଜବାହରଲାଲ ନେହରୁ ଇହଲୀଳା ସମ୍ବରଣ କଲେ । ତାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଦେବା ପାଇଁ ଦେଶ ବିଦେଶରୁ ବହୁ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ହୋଇଥିଲେ । ଭାରତବାସୀଙ୍କ ସମେତ ଲକ୍ଷ ଲକ୍ଷ ଲୋକ ଚିତାଗ୍ନିରେ ଅଶ୍ରୁ ବିସର୍ଜନ କରିଥିଲେ ଏବଂ ଅଶ୍ରୁପୂର୍ଣ୍ଣ ନୟନରେ ସମସ୍ତେ କହିଥିଲେ,– "ନେହରୁ ଅମର ରହେ" । ପ୍ରକୃତରେ, ଦେହତ ଅମର ରହେ ନାହିଁ, ଅମର ରହେ ଯଶ ବା ଖ୍ୟାତି" । ଯଶ ତାଙ୍କର କେବେହେଲେ ମ୍ଳାନ ହେବନି । ସବୁଦିନ ପାଇଁ ସେହି ମହାପୁରୁଷ ଭାରତବାସୀଙ୍କ ପ୍ରାଣରେ ଅମର ହୋଇ ରହିବେ ।

ପୃଥିବୀବାସୀ ସମସ୍ତେ ସୁଖ ଶାନ୍ତିରେ ରହନ୍ତୁ, ଏହା ମଧ୍ୟ ଥିଲା ତାଙ୍କର ମହତ୍ ଉଦ୍ଦେଶ୍ୟ । ସେ ପ୍ରତ୍ୟେକ ଦେଶ ସହିତ ସୁସଂପର୍କ ସ୍ଥାପନ କରି ପାରିଥିଲେ । ତାଙ୍କୁ ପୃଥିବୀର "ଶାନ୍ତି ଦୂତ" ବୋଲି ମଧ୍ୟ କୁହାଯାଏ । ସେ ଭାରତବାସୀ କାହିଁକି ସାରା ପୃଥିବୀବାସୀଙ୍କ ହୃଦୟରେ ମଧ୍ୟ ଚିରକାଳ ପାଇଁ ଅମର ହୋଇ ରହିବେ ।

ଶିଶୁଟିଏ ଦେଖିଲେ ନେହରୁ ଆନନ୍ଦରେ ତାକୁ କୁଣ୍ଢାଇ ପକାନ୍ତି କିଛି ଖାଇବା ଜିନିଷ ମଧ୍ୟ ଦିଅନ୍ତି । ତାଙ୍କୁ କିଛି ଉପହାର ମିଳିଲେ ସେ ସବୁକୁ ଶିଶୁମାନଙ୍କ ମଧ୍ୟରେ ବିତରଣ କରି ଦିଅନ୍ତି । ଆଉ କହନ୍ତି, "ଶିଶୁମାନେ ମୋ ଦେଶର ସଂପଦ । ଭାବୀ ନାଗରିକ ତଥା ଭବିଷ୍ୟତର ଦେଶ ପରିଚାଳକ । ସେମାନଙ୍କର ଅବହେଳା କରିବା ମହାପାପ । ସେମାନଙ୍କର ଉନ୍ନତି ଏବଂ ବିକାଶ ସାଧନ ଦିଗରେ ଆମେ ସମସ୍ତେ ଲାଗିପଡ଼ିବା ଉଚିତ୍ ।" ଏଇ ଆଶା, ଏଇ ଅଭିଳାଷ ଏବଂ ଏଇ ଚିନ୍ତାଧାରା ଥିଲା ନେହରୁଙ୍କର । ତେଣୁ ସେ ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ନିଜର ଜୀବନଠାରୁ ବଳି ଶିଶୁମାନଙ୍କୁ ଭଲ ପାଉଥିଲେ । ସେ ଥିଲେ ଶିଶୁଙ୍କର, ଆଉ ଶିଶୁଏ ଥିଲେ ତାଙ୍କର । ତେଣୁ ଶିଶୁମାନଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରିବାର ଲକ୍ଷ୍ୟ ରଖି ସେହି ମହାମନୀଷୀଙ୍କର ଜନ୍ମତିଥିକୁ "ଶିଶୁ ଦିବସ" ରୂପେ ସର୍ବତ୍ର ପାଳନ କରା ଯାଉଅଛି ।

ଆଜି ଏହି ପବିତ୍ର ଶିଶୁ ଦିବସରେ ସେହି ପରମ ପୂଜ୍ୟ ଆମର ଅତି ଆଦରର ଚାଚାଜୀଙ୍କ କଥା ମନେ ପଡ଼ିଯାଏ । "ପିଲାଦିନେ ପରିବାରର ବୟୋଜ୍ୟେଷ୍ଠମାନଙ୍କଠାରୁ ରାମାୟଣ ଓ ମହାଭାରତର ହୃଦୟସ୍ପର୍ଶୀ କାହାଣୀମାନ ଶୁଣି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇ ଯାଉଥିଲି ଏବଂ ଭାବୁଥିଲି ଯେ ଭବିଷ୍ୟତରେ ଜଣେ ବଡ଼ ମଣିଷ ହେବି । ପୁଣି ନିଜ ଘରର ମୁନ୍‌ସିଠାରୁ ବିଭିନ୍ନ ସ୍ୱାଦର ଚିଜି ଚିଜି ଗଳ୍ପ ଶୁଣି ଜଣେ ବଡ଼ ବୀର ହୋଇ ଦେଶ ଜୟ କରିବି ।" ଏ କଳ୍ପନା ମଧ୍ୟ ସେ ପୋଷଣ କରିଥିଲେ । ସତ କଥା କହିବାକୁ ଯାଇ–"ଗୋଟିଏ କଲମ ପାଇଁ ମାଡ଼କୁ ଭୟ ନକରି ବାପାଙ୍କ ଆଗରେ ସତ କଥା କହିଥିଲେ ।" ଏମିତି ଅନେକ କଥା– ତୁଳସୀ ଦୁଇ ପତ୍ରରୁ ବାସିଲା ପରି ସେ ଯେ ବଡ଼ ହେଲେ ଜଣେ ବିଖ୍ୟାତ ଲୋକ ହେବେ ପିଲାଟି ଦିନରୁ ଆଭାସ ମିଳିଥିଲା । ଶୁଣିଥିବା ଗଳ୍ପଗୁଡ଼ିକରେ ଥିବା ବିଶିଷ୍ଟ ବିଶିଷ୍ଟ ବୀରମାନଙ୍କର ଚରିତ୍ରର ସୁପ୍ରଭାବ ତଥା ନିଜ ସତ୍ ଚରିତ୍ରର କ୍ରମ ବିକାଶ ଏପରି ଭାବରେ ପରିସ୍ଫୁଟିତ ହେଲାଯେ,ସେ ବଡ଼ ହେଲା ପରେ ମାତୃଭୂମି ପାଇଁ ଆଉ ଜନତାର ମଙ୍ଗଳପାଇଁ ସୁନାର ପବିତ୍ର ଭାରତବର୍ଷକୁ ସ୍ୱାଧୀନ କରିବାକୁଯାଇ ଇଂରେଜମାନଙ୍କର ଜେଲ-ଦଣ୍ଡ, ଲାଠିମାଡ଼ ଏବଂ ଅକଥନୀୟ ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ସ୍ୱାଧୀନତା ଆନ୍ଦୋଳନର ପ୍ରଧାନ ସେନାପତି ହିସାବରେ ଦୀର୍ଘଦିନ ଧରି କାର୍ଯ୍ୟ ଚଳାଇଥିଲେ ।

ନୂଆ ନୁହେଁ, ଅତି ପୁରୁଣା; ସୃଷ୍ଟି ଆରମ୍ଭରୁ । –"ଶିଶୁ ଅନୁକରଣ ପ୍ରିୟ । ଯାହା ଦେଖେ, ଯାହା ଶୁଣେ ସେ ସବୁ ତାର ମନ ଭିତରେ ଲାଖି ରହେ । ବଡ଼ ହେଲା ପରେ ସେ ତାକୁ କାର୍ଯ୍ୟରେ ପରିଣତ କରେ ।" ତେଣୁ ଶିଶୁକୁ ଶିକ୍ଷାର ପ୍ରାରମ୍ଭରୁ ଛୋଟ ଛୋଟ ଗଳ୍ପ ଏବଂ କବିତା ମାଧ୍ୟମରେ ଅନେକ ନୀତିମୂଳକ ବିଷୟ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଦେଶ ଓ ଜାତି ପାଇଁ ଜୀବନକୁ ଉତ୍ସର୍ଗ କରିଥିବା ବୀର ବାଳକ ଏବଂ ମନୀଷୀମାନଙ୍କ ସୁକାର୍ଯ୍ୟାବଳୀ ସଂପର୍କରେ ଅବହିତ କରାଇବା ବିଧେୟ ।

–"ଶିଶୁଏ ଦେଶର ଭବିଷ୍ୟତ, ଜାତିର ମେରୁଦଣ୍ଡ ଏବଂ ଶିଶୁ ଅବହେଳା ମହାପାପ ।" ଏଇ କଥା ଆମ୍ଭେମାନେ ସମସ୍ତେ କହୁଛେ । କିନ୍ତୁ, ଖାଲି କଥାରେ କଥାରେ ଏତକ କହିଦେଲେ ଚଳିବ ନାହିଁ । ବାସ୍ତବରେ ଶିଶୁମାନଙ୍କର ଯତ୍ନ ନେଇ ତାଙ୍କୁ ଉତ୍ତମ ଢାଞ୍ଚାରେ ଗଢ଼ିବାର ଦାୟିତ୍ୱ ଆମ ସମସ୍ତଙ୍କ ଉପରେହିଁ ନ୍ୟସ୍ତ ।

ଅଭିଭାବକ ଏବଂ ଶିକ୍ଷକଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତେଣୁ ଭାବଧାରା, ଚିନ୍ତାଧାରା ଏବଂ କାର୍ଯ୍ୟଧାରାର ସୁପରିଚାଳନା ସହ, ଶିଶୁଗଠନ ଦିଗରେ ଯତ୍ନବାନ ହେବା ସର୍ବାଦୌ ଉଚିତ୍ ।

ଶିଶୁର ଉତ୍ତମ ଚରିତ୍ରଗଠନ, ସାଧୁତା, ସତ୍ୟବାଦିତା, ନମ୍ରତା ଏବଂ ନିର୍ଭୀକତା ପ୍ରତି ଦୃଷ୍ଟି ରଖି ସବୁର ବିକାଶ ଦିଗରେ ଯତ୍ନ ନେବା ମଧ୍ୟ ଉଚିତ୍ । ଲୋଭ, କ୍ରୋଧ , ହିଂସା, ଦ୍ୱେଷ, ମିଥ୍ୟା, କପଟ ଏ ସବୁର ଦୂରରେ ରହି ଶାନ୍ତି, ମୈତ୍ରୀ ଏବଂ ସଦ୍‌ଭାବ ପ୍ରତିଷ୍ଠା ଦିଗରେ ଶିଶୁଙ୍କୁ ଉତ୍ସାହ ଏବଂ ପ୍ରେରଣା ଦେଲେ, ଶିଶୁର ଭବିଷ୍ୟତ ପାଇଁ ଯଥେଷ୍ଟ ଉପକାର ସାଧିତ ହୋଇ ପାରିବ । ଏତଦ୍ ବ୍ୟତୀତ ଅନ୍ୟକୁ ମିଥ୍ୟା–ପ୍ରପଞ୍ଚ କହି ତୋଷାମଦ କରି କାର୍ଯ୍ୟ ହାସଲ କରିବା, କ୍ରୋଧର ଅଧୀନ ହୋଇ ଅନ୍ୟାୟ କାର୍ଯ୍ୟ କରିବା ନିଜେ ସୁଖ ଶାନ୍ତିରେ ରହିବାକୁ ଯାଇ ଅନ୍ୟର କ୍ଷତିସାଧନ କରିବା ଏ ସବୁ ପ୍ରକାର ମନୋଭାବକୁ ଦୂର କରାଇ ଦମ୍ଭ ଓ ଦୃଢ଼ତାର ସହିତ ସତ୍ ପଥରେ ପରିଚାଳିତ ହୋଇ ନିଜର କର୍ତ୍ତବ୍ୟର ସୁପରିଚାଳନା କରିବା ଦିଗରେ ଶିଶୁମାନଙ୍କୁ ଉତ୍ସାହ ଏବଂ ପ୍ରେରଣା ଦେବା ନିତାନ୍ତ ଆବଶ୍ୟକ ।

ଗୀତାର ବାଣୀରେ "ଜାତସ୍ୟହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟଚ" । ପୁଣି କଥାରେ ଅଛି —"କେହି ରହି ନାହିଁ ରହିବେ ନାହିଁଟି ଭବ ରଙ୍ଗ ଭୂମିତଳେ, ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳବଳେ" । ମଣିଷ ପରି ଦୁର୍ଲଭ ଜୀବନ କୌଣସି ପ୍ରାଣୀର ନାହିଁ । ଏହା ନିରାଟ ସତ୍ୟ । ଏହି ସତ୍ୟଟା ମଧ୍ୟରେ, ଆଶା-ନିରାଶା, ସୁଖ-ଦୁଃଖ, ପୁଣ୍ୟ-ପାପ ଏବଂ ସତ୍ୟ-ମିଥ୍ୟା ଏମିତି ଅନେକ କିଛି ବାସ୍ତବତା ମଧ୍ୟ ଦେଇ, ଦୈନନ୍ଦିନ ଜୀବନରେ ଏହାର ନିଶ୍ଚିତତା ଉପଲବ୍ଧି କରାଯାଏ । ନିଜର ସୁଗୁଣ ଓ ସତ୍‌କର୍ମ, ପରବର୍ତ୍ତୀ ଅଧ୍ୟାୟରେ ଯୁଗଯୁଗକୁ ଅମର କରି ରଖିବାର ସାହାଯ୍ୟ କରେ । ଏହା ଧ୍ରୁବ । ଏଣୁ କ୍ଷଣକ ପାଇଁ ହେଉ କି ବହୁ ସମୟ ପାଇଁ ହେଉ ଆମେ ଦୁନିଆକୁ ଆସିଛେ । ତେଣୁ ନିଜର ଅଭିନୟ ରୂପକ କର୍ତ୍ତବ୍ୟକୁ ଠିକ୍ ଭାବରେ ସଂପାଦନ କରିବାହିଁ ସର୍ବାଦୌ କର୍ତ୍ତବ୍ୟ ଭାବି, ପ୍ରତ୍ୟେକ କାର୍ଯ୍ୟରେ ଆମ୍ଭେ-ମାନେ ଅଗ୍ରସର ହେବା ବିଧେୟ ।

ଆମେ ସମସ୍ତେ ଜାଣିଛେ, "ଆମର ଏଇ ପବିତ୍ର ଜନ୍ମଭୂମି ଶସ୍ୟଶ୍ୟାମଳା ସୁନାର ଭାରତବର୍ଷରେ ପ୍ରତ୍ୟେହ ଅନେକ ମଣିଷ ଜନ୍ମ ଆଉ ମୃତ୍ୟୁ ଲାଭ କରୁଛନ୍ତି । "ଏ କଥାଟି ଶାଶ୍ୱତ ଚିରନ୍ତନ, ପୁଣି ନିତ୍ୟନୈମିତିକ । ତେବେ ସେହିମାନଙ୍କ ମଧ୍ୟରେ ଅନେକ ମନୀଷୀ ଅଛନ୍ତି, ଯେଉଁମାନଙ୍କର ମହତ ଆଦର୍ଶହିଁ ତାଙ୍କୁ ଯୁଗଯୁଗକୁ ଅମର କରି ରଖିଛି ଏବଂ ରଖିଥିବ ମଧ୍ୟ । ଗୋପବନ୍ଧୁଙ୍କ ଭାଷାରେ—

"ମାନବ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନଦଣ୍ଡ

କର୍ମେ ଜୀଏଁ ନର କର୍ମ ଏକାତା'ଇ
ଜୀବନର ମାନଦଣ୍ଡ" ।"

ଆଜୀବନ ଦେଶସେବା ପାଇଁ ଭାରତର ଶ୍ରେଷ୍ଠ ସମ୍ମାନ "ଭାରତ ରତ୍ନ" ଉପାଧି ପ୍ରାପ୍ତ ତଥା ବିଶ୍ୱର ଏକ "ଅମୂଲ୍ୟରତ୍ନ" ଭାବେ ସମ୍ମାନିତ ମହାମାନବ ପଣ୍ଡିତ ଜବାହରଲାଲ ନେହରୁ ଏଲାହାବାଦରେ ୧୮୮୯ ମସିହା ନଭେମ୍ବର ୧୪ ତାରିଖରେ ଏକ ସମ୍ଭ୍ରାନ୍ତ ଏବଂ ଧାନାଢ଼୍ୟ ପରିବାରରେ ଜନ୍ମଲାଭ କରିଥିଲେ । ସେ ଜଣେ ବିଶିଷ୍ଟ ଆଇନଜୀବୀ ହୋଇଥିଲେ ମଧ୍ୟ ତାଙ୍କ ପାଖରେ ଟିକିଏ ହେଲେ ଗର୍ବ ନଥିଲା । ସେ କର୍ତ୍ତବ୍ୟ ପରାୟଣ, ଚରିତ୍ରବାନ୍, ସାଧୁ, ସତ୍ୟବାଦୀ, ସମୟାନୁବର୍ତ୍ତୀ, ଦୟାଳୁ ଏବଂ ସେବା ପରାୟଣ ବ୍ୟକ୍ତି ଥିଲେ । ଦୁଃଖ, ଦୁର୍ଦ୍ଦଶାକୁ ଉପଲବ୍ଧି କରିବାର କ୍ଷମତା ମଧ୍ୟ ଯଥେଷ୍ଟ ଥିଲା । ସେ ଉତ୍ତମ ରୂପେ ଜାଣିଥିଲେ ଯେ, ବିଦେଶୀ ଶାସନହିଁ ଭାରତୀୟଙ୍କର ଦାରିଦ୍ର୍ୟର ପ୍ରଧାନ କାରଣ ।

ଇଂରେଜ ସରକାର ଆମମାନଙ୍କ ଉପରେ ଯେଉଁ ଅକଥନୀୟ ଅତ୍ୟାଚାର କରିଥିଲେ, ତାର ପ୍ରତିବାଦ ସ୍ୱରୂପ ଆମ ଭାରତୀୟ ନେତୃବର୍ଗ ଇଂରେଜ ସରକାରଙ୍କ ବିରୁଦ୍ଧରେ ସତ୍ୟ ଓ ଅହିଂସା ନୀତିରେ ଆନ୍ଦୋଳନ ଆରମ୍ଭ କରିଥିଲେ । ଏଇ ଆନ୍ଦୋଳନର ପ୍ରଧାନନେତା ଥିଲେ ମହାତ୍ମାଗାନ୍ଧୀ । ଜବାହରଲାଲ ନେହରୁ ତାଙ୍କର ପ୍ରଧାନ ଶିଷ୍ୟ ଅର୍ଥାତ୍ ଦକ୍ଷିଣ ହସ୍ତ ଭଳି ସମସ୍ତକାର୍ଯ୍ୟ ସଂପାଦନ କରୁଥିଲେ । ଇଂରେଜମାନଙ୍କର ଜାଲିଆନାବାଗ-ୱାଲାର ହତ୍ୟାକାଣ୍ଡରେ କେତେକ ଭାରତୀୟ ଦେଶପାଇଁ ପ୍ରାଣବଳି ଦେଲେ । ଏହି ଘଟଣାରେ ଉତ୍ୟକ୍ତ ହୋଇ ନେହରୁ ନିଜର ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଜନତାର ମଙ୍ଗଳ ସକାଶେ ଆତ୍ମୋତ୍ସର୍ଗ କରିବା ନିମନ୍ତେ ପ୍ରତିଜ୍ଞାବଦ୍ଧ ହେଲେ ।

ମହାତ୍ମାଗାନ୍ଧୀ ଓ ଜବାହାରଲାଲ ନେହେରୁଙ୍କର ନେତୃତ୍ୱରେ ସତ୍ୟ ଏବଂ ଅହିଂସା ନୀତି ଅନୁସରଣ ପୂର୍ବକ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଏହି ଆନ୍ଦୋଳନରେ ଅନେକ ଭାରତୀୟ ମଧ୍ୟ ଯୋଗ ଦେଲେ । ଲବଣ ସତ୍ୟାଗ୍ରହରେ ଜୟଯୁକ୍ତ ହେବାପରେ ନେହରୁ ବମ୍ବେଠାରେ କଂଗ୍ରେସର ଅଧିବେଶନ ବସାଇ "ଭାରତ ଛାଡ଼" ଆନ୍ଦୋଳନକୁ ତତ୍ପରତାର ସହିତ ମଧ୍ୟ ଚଳାଇଥିଲେ । ଦୀର୍ଘ ୩୫ ବର୍ଷ କାଳ ନିଜର ସକଳ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ନିଷ୍ଠାର ସହିତ ସ୍ୱାଧୀନତା ଆନ୍ଦୋଳନ ଚଳାଇ ଥିଲେ । ଏପରିକି ଆମରିମାନଙ୍କ ପାଇଁ ସେ ଅନେକଥର ଜେଲ ଭୋଗିବା ସଙ୍ଗେ ସଙ୍ଗେ ଅନେକ ନିର୍ମମ ନିର୍ଯ୍ୟାତନା ମଧ୍ୟ ଭୋଗ କରିଥିଲେ ।

ଆମ ଦେଶ ଭାରତ ସ୍ୱାଧୀନ "ହେଲା ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ" । ପଣ୍ଡିତ ଜବାହରଲାଲ ନେହରୁ ହେଲେ ଆମ ସ୍ୱାଧୀନ ଭାରତର ପ୍ରଧାନ ମନ୍ତ୍ରୀ । ପ୍ରଧାନ ମନ୍ତ୍ରୀ ଦାୟିତ୍ୱ ନେବା ପରେ ସେ କହିଥିଲେ,—"ମୁଁ ଯେଉଁ ଦାୟିତ୍ୱରେ ଅଛି, ତାହା ନିଶ୍ଚୟ ସୁଖରୂପେ ପରିଚାଳିତ କରି ଦେଶମାତୃକା ପାଇଁ ଆଉ ଜନତାର ମଙ୍ଗଳ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିବି । କର୍ତ୍ତବ୍ୟହିଁ ବଡ଼, ଆଉ ସବୁ ପରେ । ଏ-କଥା ସମସ୍ତଙ୍କୁ ବୁଝାଉ ଥିଲେ । ଜାତିର ପିତା ମହାତ୍ମାଗାନ୍ଧୀ, ଜାତିର ଗୁରୁ ପଣ୍ଡିତ ଜବାହରଲାଲ ନେହରୁଙ୍କୁ "ଭାରତର ମୁକୁଟ ବିହୀନ ସମ୍ରାଟ" ବୋଲି କହୁଥିଲେ ।

ପ୍ରେମ, ଶ୍ରଦ୍ଧା, ଦୟା, କ୍ଷମା, ସତ୍ୟ, ଅହିଂସା ନୀତି ବଳରେ ଅନ୍ୟର ମନକୁ ଜୟ କରିବାହିଁ ପ୍ରକୃତ ଜୟ ବୋଲି ସେ ଭାବୁଥିଲେ ଏବଂ ତାହା ମଧ୍ୟ ଲୋକଙ୍କୁ ବୁଝାଉ ଥିଲେ । ଜାତି ଭେଦ, ଧର୍ମଭେଦ ଓ ଧନୀ-ଦରିଦ୍ର ମଧ୍ୟରେ ପାର୍ଥକ୍ୟ ନରଖିବାନିମନ୍ତେ ଏବଂ ଆମେସବୁ ଗୋଟିଏ ମା'ର ସନ୍ତାନ; ସମସ୍ତେ ଭାଇଭାଇ ପରି ଚଳିବା ପାଇଁ ମଧ୍ୟ ସେ ସମସ୍ତଙ୍କୁ ବୁଝାଉ ଥିଲେ ।

ଦେଶକୁ ସମୃଦ୍ଧିଶାଳୀ ରାଷ୍ଟ୍ରରେ ପରିଣତ କରିବା ନିମନ୍ତେ ଏବଂ ଦେଶରୁ ଦାରିଦ୍ର୍ୟ ଦୂର କରିବା ଭାରତକୁ ଏକ ଶକ୍ତିଶାଳୀ ରାଷ୍ଟ୍ରରୂପେ ଗଢ଼ିବା ପାଇଁ ସେ ଅବିରତ ଚେଷ୍ଟା କରୁଥିଲେ । ତେଣୁ ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ପଞ୍ଚବାର୍ଷିକ ଯୋଜନାର ପରିକଳ୍ପନା କରିଥିଲେ । ୧୯୫୧ ମସିହା ଅପ୍ରେଲ ପହିଲାରୁ ଏହି ଯୋଜନା କାର୍ଯ୍ୟକାରୀ କରାଗଲା । ସେହି ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ବାଣିଜ୍ୟ, ଶିଳ୍ପ ଓ ବିଜ୍ଞାନ ପ୍ରଭୃତିର ଯଥେଷ୍ଟ ଉନ୍ନତି ସାଧିତ ହୋଇଅଛି ।

ସମାଜବାଦୀ ଚିନ୍ତାଧାରାକୁ କ୍ରମଶଃ ଲୋକପ୍ରିୟ କରିବା ଦିଗରେ ତାଙ୍କର ଯଥେଷ୍ଟ ମନଥିଲା । ତେଣୁ ଆର୍ଥନୀତିକ ସମତା ଓ ସାମାଜିକ ସମତା କାର୍ଯ୍ୟକାରୀ କରିବା ନିମନ୍ତେ ବିଶେଷ ଚେଷ୍ଟା କରିଥିଲେ । ଏପରି କି ହିଂସା, ଦ୍ୱେଷ ଲୋପ କରି



"ମାନବ ସେବାହିଁ ଜୀବନର ଶ୍ରେଷ୍ଠ ଧର୍ମ ।" ଏହି ଉକ୍ତିର ଯଥାର୍ଥତା ପ୍ରତିପାଦନ କରିବା ଅଭିଭାବକ ଏବଂ ଶିକ୍ଷକମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଘୃଣାଭାବ ଏବଂ ଭେଦାଭେଦ ଭାବ ଇତ୍ୟାଦି ନରଖି ଶିଶୁମାନଙ୍କର ସେବାମନୋଭାବକୁ ନିଜର ସକଳ ଚେଷ୍ଟା ଖଟାଇ ପ୍ରବର୍ତ୍ତାଇ ପାରିଲେ ଶିଶୁ ନିଶ୍ଚୟ ଜନତାର ମଙ୍ଗଳକାମୀ ହୋଇ ପାରିବ । କୌଣସି ବିପଦରେ ଅଧୀର ନହୋଇ ଏକମନ, ଏକ ପ୍ରାଣରେ; ଏକ ରାହା ଧରି ଚାଲିଲେ ଶିଶୁ ମାନଙ୍କର ସେବା ମନୋଭାବ ମଧ୍ୟ ବଳବତ୍ତର ହେବ ଏବଂ ଶିଶୁ ସମାଜର କଲ୍ୟାଣ ଦିଗରେ ବ୍ରତୀ ହୋଇ ଭବିଷ୍ୟତରେ ଦେଶ ଆଉ ଦଶର ମଙ୍ଗଳସାଧନ କରି ପାରିବ ।

ସମାଜ ସଂପର୍କରେ ଶିଶୁର ଜ୍ଞାନ ଉଦୟ ନହେଲେ, ଆଉ ସମାଜ ଭିତରେ ବଢ଼ି ନଉଠିଲେ; ଏକାନ୍ତ ନିଛାଟିଆ ନିର୍ଜ୍ଜନ ପରିବେଶରେ ବଢ଼ିଲେ ଶିଶୁ ଅସ୍ୱାଭାବିକ ତଥା ଅସାମାଜିକ ହେବାର ସମ୍ଭାବନା ରହିଛି । ତେଣୁ ଉପଯୁକ୍ତ ପରିବେଷ୍ଟନୀର ପ୍ରଭାବ ଶିଶୁ ଉପରେ ପଡ଼ିବା ନିତାନ୍ତ ଆବଶ୍ୟକ ଏବଂ ତା ସଙ୍ଗେ ଉଚିତ୍ ମାର୍ଗରେ ଶିଶୁକୁ ଆଗେଇ ନେବାର କର୍ତ୍ତବ୍ୟକୁ ଆଖି ଆଗରେ ରଖି ସମାଜର ନୀତି ନିୟମ ବିଷୟରେ ଓ ଶୃଂଖଳିତ ଜୀବନଯାପନ କରିବାର ସୁଯୋଗ ଇତ୍ୟାଦିକୁ ପ୍ରେରଣା ଏବଂ ଉତ୍ସାହ ମାଧ୍ୟମରେ ଶିକ୍ଷା ଦେଲେ ଶିଶୁ ଉପରେ ସୁପ୍ରଭାବ ନିଶ୍ଚୟ ପଡ଼ିବ । ଫଳରେ ଶିଶୁ ଭବିଷ୍ୟତରେ ସୁପଥଗାମୀ ହୋଇ, ସମାଜର କଳୁଷିତ ବ୍ୟାଧିଗୁଡ଼ିକର ନିରାକରଣ ପାଇଁ ଯତ୍ନବାନ ହେବା ସଙ୍ଗେ ସଙ୍ଗେ ସମାଜର ଉନ୍ନତିସାଧନ ଦିଗରେ ସର୍ବଦା ଲାଗି ରହିବ ।

ଫୁନଶ୍ଚ ଗାଆଁ ଗହଳିଠାରୁ ଆରମ୍ଭ କରି ସହର ବଜାର ପର୍ଯ୍ୟନ୍ତ ସମସ୍ତ ଅନୁଷ୍ଠାନ, ଜିନିଷ ପତ୍ର ଓ ଧନ ସମ୍ପତ୍ତିର ଉତ୍ତରାଧିକାରୀହିଁ ଭାରତବାସୀ । ଆମର ସେ-ସବୁ ଜାତୀୟ ସମ୍ପଦ । ଏହି ଜାତୀୟ ସମ୍ପଦର ସୁରକ୍ଷା ହିଁ ଆମର ପ୍ରଧାନ କର୍ତ୍ତବ୍ୟ । ତେଣୁ ଶିଶୁମାନଙ୍କୁ ଏ ସମ୍ପର୍କରେ ବୋଧଗମ୍ୟ କରାଇବା ପ୍ରତ୍ୟେକ ଅଭିଭାବକ ଏବଂ ଶିକ୍ଷକଙ୍କର ଏକ ନୀତିପୂର୍ଣ୍ଣ କର୍ତ୍ତବ୍ୟ । ବସ୍ତୁତଃ ଆଗାମୀକାଲିର ବିକାଶୋନ୍ମୁଖ ନାଗରିକ-ଆକୃତିର ଶିଶୁରହିଁ ସର୍ବବିଧ ବିକାଶସାଧନ ଆମ୍ଭ-ମାନଙ୍କର ଧ୍ୟେୟ ହେବା ଉଚିତ୍ ।

ଏହି ଶିଶୁ ଭବିଷ୍ୟତରେ ବିଭିନ୍ନ କ୍ଷେତ୍ରରେ ରହି ଦେଶ ଚଳାଇବାର ଦାୟିତ୍ୱ ନିଶ୍ଚୟ ନେବେ । ତେଣୁ ଦେଶପ୍ରୀତି, ଶୃଙ୍ଖଳା ଜ୍ଞାନ, ଦାୟିତ୍ୱବୋଧ ଜାଗ୍ରତ କରାଇବା ଉଚିତ୍ । ଏପରିକି କୃଷି କ୍ଷେତ୍ରଠାରୁ ଆରମ୍ଭ କରି ଯୁଦ୍ଧକ୍ଷେତ୍ର ସମସ୍ତ କାର୍ଯ୍ୟ ଗୁଡ଼ିକର ସମ୍ୟକ୍ ଜ୍ଞାନ ଦେବାର ଶିକ୍ଷକଙ୍କ ଉପରେ ହିଁ ନ୍ୟସ୍ତ । ଏହି ସୁପରିଚାଳନା ଠିକ୍ ଢଙ୍ଗରେ କରି ପାରିଲେ, ଶିଶୁ ଭବିଷ୍ୟତରେ ମହାନ୍ ବ୍ୟକ୍ତିରେ ପରିଣତ ହେବା ସଙ୍ଗେ ଦେଶ ମାତୃକା ପାଇଁ ଅନେକ କିଛି ଉପକାର କରି ପାରିବେ । ତେଣୁ ଶିକ୍ଷାଗତ ଆଦର୍ଶ ନୁହେଁ, ଶିକ୍ଷକହିଁ ଆଜିର କାମ୍ୟ ।

ପ୍ରତ୍ୟେକ ଶିକ୍ଷାନୁଷ୍ଠାନମାନଙ୍କରେ ଏହି "ଶିଶୁ ଦି… ପାଳନ କରାଯାଉଅଛି । ପିଲମାନଙ୍କୁ ଉତ୍ସାହ ଏବଂ ପ୍ରେ… ଦେବାକୁ ଯାଇ କ୍ରୀଡ଼ା, ପ୍ରବନ୍ଧ ଏବଂ ବକ୍ତୃତା ପ୍ରତିଯୋଗିତା କରି ପୁରସ୍କାର ଦିଆଯିବା ନିତାନ୍ତ ଆବଶ୍ୟକ । ନାଚ, … ଏବଂ ଚଳଚ୍ଚିତ୍ର ପ୍ରଭୃତି ମନୋରଞ୍ଜନ କାର୍ଯ୍ୟକ୍ରମ ମାଧ୍ୟମ… ଯଥା ସମ୍ଭବ ଶିଶୁମାନଙ୍କ ମନରେ ଦେଶାତ୍ମବୋଧକ … ଉଦ୍ରେକ କରାଇବା ମଧ୍ୟ ଅତ୍ୟନ୍ତ ଆବଶ୍ୟକ । ଏ … ପରିଚାଳନା ନିମିତ୍ତ ଶିକ୍ଷକ, ଅଭିଭାବକ ତଥା ନାଗ… ସମସ୍ତଙ୍କର ସହଯୋଗିତା ଏକାନ୍ତ ଆବଶ୍ୟକ ।

ଆଜି ଏହି ପବିତ୍ର "ଶିଶୁ ଦିବସ"ର ଶୁଭ ଅବସର… ଆମର "ପୂଜ୍ୟନେତା–ଜାତିର ଗୁରୁ–ପଣ୍ଡିତ ଜବାହର… ନେହରୁଙ୍କ ମହତ୍ ଆଦର୍ଶରେ ଆମ ପବିତ୍ର ମାତୃଭୂମି ଭାର… ଅଗଣିତ ଶିଶୁ ପ୍ରଭାବିତ ହେବା ନିମନ୍ତେ, ମୁଁ ପ୍ରତ୍ୟେକ ଶି… ଅତି ଆଦରର ସହିତ ଉତ୍ସାହ ଏବଂ ପ୍ରେରଣା ଦେଇ ଆ… କରୁଛି । ତଥା ଏ ଦେଶର ପ୍ରତ୍ୟେକ ଅଭିଭାବକ, ଶି… ଏବଂ ନାଗରିକମାନଙ୍କୁ ବିନମ୍ର ଅନୁରୋଧ, –ଆଶା … ବିଶ୍ୱାସ, ଆସନ୍ତୁ; ଆମେ ସମସ୍ତେ ଶିଶୁମାନଙ୍କୁ ଏପରି ଛାଞ୍ଚ… ଗଢ଼ିବା; ଯେପରି ଭବିଷ୍ୟତରେ ପ୍ରତ୍ୟେକ ଶିଶୁ ଜଣେ ଭ… ନାଗରିକରେ ପରିଣତ ହୋଇ ମାତୃଭୂମି ପାଇଁ ଆଉ ଜନସ… ମଙ୍ଗଳ ପାଇଁ ଯଥାସାଧ୍ୟ ନିଜର ସକଳ ଶକ୍ତି ନିୟୋ… କରିପାରିବେ । ତେଣୁ ଏହି ପବିତ୍ର "ଶିଶୁ ଦିବସ" କେ… ପାରମ୍ପର୍ଯ୍ୟ ରୀତିରେ ପାଳିତ ନହୋଇ ତାର ମାହାତ୍ମ୍ୟ ଓ … ଭାବଧାରା ଆଚରଣୀୟ ହେଉ ।

ସହକାରୀ ଶିକ୍ଷକ
ହୁଲୁରିସିଂହା ପଞ୍ଚାୟତ ସମିତି ମଧ୍ୟ ଇଂରାଜୀ ବିଦ୍ୟା…
ସା : ଜେମାଦେଇପୁର ଶା…
ପୋ : ଅ : ହୁଲୁରିସିଂହା
ଯାୟା ଅନୁଗୋଳ
ଜିଲ୍ଲା ଢେଙ୍କାନାଳ



# ଇନ୍ଦିରା ପ୍ରିୟଦର୍ଶିନୀ



— ଶ୍ରୀ ବରଦା ପ୍ରସନ୍ନ ଦାସ —

ଭାରତର ଜଣେ ମହୀୟସୀ ମହିଳା ଏବଂ ପୃଥିବୀର ଜଣେ ଶାନ୍ତି, ମୈତ୍ରୀ ଓ ସକଳ ଜନସମାଜ ପ୍ରତି ଶ୍ରଦ୍ଧାବତୀ ନାରୀନେତ୍ରୀ, ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ୧୯୮୪, ଅକ୍ଟୋବର ୩୧ ତାରିଖ ଦିନ ତାଙ୍କର ମହାଯାତ୍ରାରେ ଇହସଂସାରରୁ ବିଦାୟ ନେଇଛନ୍ତି । ପ୍ରାଚୁର୍ଯ୍ୟ ଓ ପ୍ରାଣବନ୍ତ ଆନନ୍ଦ ଭବନକୁ ମୁଖରିତ କରି ୧୯୧୭ ନଭେମ୍ବର ୧୯ ତାରିଖରେ ପ୍ରଜ୍ୱଳିତ ହୋଇଉଠିଥିଲା ଭାରତର ଏହି ପ୍ରଦୀପ । ନାମ ଦେଇଥିଲେ ପିତା ମାତା ତା'ର ଇନ୍ଦିରା ପ୍ରିୟଦର୍ଶିନୀ । ଇନ୍ଦିରା ଅର୍ଥ ଲକ୍ଷ୍ମୀ । ପ୍ରିୟଦର୍ଶିନୀ ହେଲେ ସୁନ୍ଦରୀ, ମାନବ ପ୍ରେମୀ ଓ ବିଶ୍ୱକୁ ପ୍ରିୟ ଚକ୍ଷୁରେ ଦର୍ଶନ କରୁଥିବା ନାରୀ ।

୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ଗୁଜରାଟର ସାବରମତୀ ଆଶ୍ରମରୁ ଲବଣ ସତ୍ୟାଗ୍ରହ ପାଇଁ ଜାତିର ଜନକ ମହାତ୍ମା ଗାନ୍ଧୀ ଡାକରା ଦେଇଥିଲେ । ଭାରତକୁ ତିନି ଦିଗରୁ ବେଷ୍ଟିତ କରୁଥିବା ପ୍ରକାଣ୍ଡ ସମୁଦ୍ର ଗର୍ଭରୁ ଇଂରେଜ ସରକାରଙ୍କ ଅନୁମତି ବିନା କେହି ଟିକିଏ ହେଲେ ଲୁଣ ମାରି ପାରୁନଥିଲେ । ଏପରିକି ଜାହାଜରେ ଲଦାହୋଇ ଲୁଣ ବିଲାତରୁ ଆସି ଭାରତରେ ବିକ୍ରୀ ହେଉଥିଲା । ଲୁଣର ଚଢା ଦର ଗରିବ ଜନତାକୁହିଁ ବିଶେଷ ଭାବରେ ବାଧୁଥିଲା । ଏହି ପ୍ରତିକ୍ରିୟାଶୀଳ ଆଇନକୁ ଭାଙ୍ଗିବା ପାଇଁ ମହାତ୍ମା ଗାନ୍ଧୀ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ଆଇନ ଅମାନ୍ୟ ଆନ୍ଦୋଳନ ଭାରତର ପ୍ରାନ୍ତପଲ୍ଲୀକୁ ବ୍ୟାପୀ ଯାଇଥିଲା । ଏହି ସମୟରେ ଗାନ୍ଧୀଜୀଙ୍କର ବହିଷ୍କାର ଆନ୍ଦୋଳନକୁ ଆହୁରି ଦୃଢ଼ିଭୂତ କରିବା ପାଇଁ ବାର ବର୍ଷର ବାଳିକା ଇନ୍ଦିରାଙ୍କ ନେତୃତ୍ୱରେ ଗଢି ଉଠିଥିଲା ଏକ ବାନରସେନା ବାହିନୀ । କେବଳ ଏଲ୍ଲାହାବାଦରୁ ହିଁ ଇନ୍ଦିରାଙ୍କ ନେତୃତ୍ୱରେ ବାନରସେନା ଦଳରେ ଛଅହଜାରରୁ ଊର୍ଦ୍ଧ୍ୱ ସ୍କୁଲ ଛାତ୍ର ଛାତ୍ରୀ, ସ୍ୱେଚ୍ଛାସେବକ ଓ ସେବିକା ରୂପେ ଯୋଗ ଦେଇଥିଲେ । ଏଇଥିରୁ ତାଙ୍କ ନେତୃତ୍ୱର ପ୍ରଥମ ପରିଚୟ ମିଳିଥିଲା । ପୁଣେରେ ସ୍କୁଲ ଛାତ୍ରୀ ଥିବା ବେଳେ ଇନ୍ଦିରାଙ୍କ ଜୀବନରେ ମହାତ୍ମା ଗାନ୍ଧୀଙ୍କର ହରିଜନ ଉନ୍ନୟନ କାର୍ଯ୍ୟଗୁଡ଼ିକର ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ ହୋଇଥିଲା । ଭବିଷ୍ୟତ ଜୀବନରେ ହରିଜନ ଓ ଆଦିବାସୀଙ୍କ ଜୀବନର କଲ୍ୟାଣସାଧନକୁ ଇନ୍ଦିରା ଶାସନର ଏକ ମୌଳିକ ନୀତି ରୂପେ ଗ୍ରହଣ କରି ନେଇଥିଲେ ।

୧୯୩୪ରେ ବମ୍ବେ ବିଶ୍ୱ ବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ ପାସ୍ କରିବା ପରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦ୍ୱାରା ପରିଚାଳିତ ଶାନ୍ତିନିକେତନରେ ଇନ୍ଦିରାଙ୍କ ଉଚ୍ଚଶିକ୍ଷା ଆରମ୍ଭ ହୋଇଥିଲା । ଶୃଂଖଳିତ ନିରାଡ଼ମ୍ବର ଓ ସାତ୍ତ୍ୱିକ ଛାତ୍ର ଜୀବନ ଗଢିବା ଏହି ଅନୁଷ୍ଠାନର ବିଶେଷତ୍ୱ ଥିଲା । ବୈଦିକ ପରମ୍ପରା ଅନୁଯାୟୀ ଏଠାରେ ଶିକ୍ଷାଦାନ କରାଯାଉଥିଲା । ଉଚ୍ଚଶିକ୍ଷା ପାଇବା ସଙ୍ଗେ ସଙ୍ଗେ ଇନ୍ଦିରା ନୃତ୍ୟଗୀତ ମଧ୍ୟ ଶିକ୍ଷା କରୁଥିଲେ । ଏକଦା ଶାନ୍ତିନିକେତନର ଏକ ଉତ୍ସବରେ ମଣିପୁରୀ ନୃତ୍ୟ ପରିବେଷଣ ପାଇଁ ଇନ୍ଦିରା ପ୍ରସ୍ତୁତ ହେଉଥାନ୍ତି, ହଠାତ୍ ଗୁରୁଦେବ ରବୀନ୍ଦ୍ରନାଥଙ୍କୁ ଦେଖାକରିବା ପାଇଁ ଡାକରା ଆସିଲା । ପିତା ଜବାହରଲାଲଙ୍କ ଠାରୁ ଆସିଥିଲା ଏକ ଟେଲିଗ୍ରାମ । ମାତା କମଳା ଗୁରୁତର ଭାବେ ଅସୁସ୍ଥ । ଚିକିତ୍ସା ପାଇଁ ତାଙ୍କୁ ସୁଇଜରଲାଣ୍ଡକୁ ସ୍ଥାନାନ୍ତରିତ କରିବାକୁ ପଡ଼ିବ । ଶୀଘ୍ର ଏଲ୍ଲାହାବାଦ ଯାତ୍ରା କରିବା ପାଇଁ ରବୀନ୍ଦ୍ରନାଥ ତାଙ୍କୁ ଆଦେଶ ଦେଲେ । ଜଣେ ଅଧ୍ୟାପକଙ୍କୁ ଏଲ୍ଲାହାବାଦ ପର୍ଯ୍ୟନ୍ତ ଯିବା ପାଇଁ ଗୁରୁଦେବ କହିବାରୁ, ଇନ୍ଦିରା କହିଥିଲେ "ମୁଁ ଏକୁଟିଆ ଯାତ୍ରା କରିବାପାଇଁ ବାପାଙ୍କ ଠାରୁ ତାଲିମ ପାଇଛି ।" ବିଦାୟ କାଳରେ ବିଶ୍ୱକବି ଜବାହରଲାଲଙ୍କ ନିକଟକୁ ଲେଖିଥିଲେ "ଗଭୀର ଦୁଃଖର ସହିତ ଆମେ ଇନ୍ଦିରାଙ୍କୁ ବିଦାୟ ଦେଉଛୁ । ସେ ଆମ ଅନୁଷ୍ଠାନର ଥିଲେ ଏକ ମୂଲ୍ୟବାନ ରତ୍ନସ୍ୱରୂପ । ଅତି ନିକଟରୁ ତାଙ୍କର ଆଚରଣ ପ୍ରତି ମୁଁ ଲକ୍ଷ୍ୟ



ଶ୍ରମତୀ ଇନ୍ଦିରା ଗାନ୍ଧୀ.......

ରଖିଛି । ତୁମେ ଯେପରି ଭାବରେ ତାଙ୍କୁ ଲାଳନ ପାଳନ କରିଛ ଓ ତାଲିମ ଦେଇଛ, ସେଥିପାଇଁ ମୁଁ ତୁମକୁ ପ୍ରଶଂସା ନକରି ରହି-ପାରୁନି । ଉଭୟ ଅଧ୍ୟାପକ ଓ ଛାତ୍ର ଛାତ୍ରୀ ମହଲରେ ସେ ଅତ୍ୟନ୍ତ ପ୍ରିୟଥିଲେ । ପୁନର୍ବାର ଶାନ୍ତିନିକେତନ ଫେରି ଆସିବାର ସୁଯୋଗ ଇନ୍ଦିରାଙ୍କୁ ଆଉ ମିଳି ନଥିଲା ।

୧୯୩୬ ମସିହାରେ ୧୯ ବର୍ଷ ବୟସରେ ଇନ୍ଦିରାଗାନ୍ଧୀ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦେଲେ । ଏଇ ବୟସରେ ମାତୃହରା ମଧ୍ୟ ହୋଇଥିଲେ । ଇନ୍ଦିରାଙ୍କୁ ଯେତେବେଳେ ୨୧ ବର୍ଷ ବୟସ ହୋଇଥିଲା, ସେତେବେଳେ ସେ ଅକ୍ସଫୋର୍ଡ ବିଶ୍ୱ ବିଦ୍ୟାଳୟରେ ନାମ ଲେଖାଇଥିଲେ । ଏହା ପୂର୍ବରୁ ସୁଇଜରଲ୍ୟାଣ୍ଡରେ ମଧ୍ୟ ସେ ଉଚ୍ଚଶିକ୍ଷା ଲାଭ କରିଥିଲେ । ୧୯୪୨ ମସିହାରେ ଇନ୍ଦିରା ୨୫ ବର୍ଷ ବୟସରେ ଫିରୋଜ ଗାନ୍ଧୀଙ୍କୁ ବିବାହ କରିଥିଲେ । ଦାମ୍ପତ୍ୟ ଜୀବନରେ ଛ' ମାସ ବେଳେ ଭାରତଛାଡ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଉଭୟେ ଇନ୍ଦିରା ଓ ଫିରୋଜ କାରାବରଣ କରିଥିଲେ । ଇନ୍ଦିରାଙ୍କୁ ୩୧ ବର୍ଷ ବୟସ ହୋଇଥିବା ବେଳେ ମହାତ୍ମା ଗାନ୍ଧୀ ଆତତାୟୀର ଗୁଳିରେ ପ୍ରାଣତ୍ୟାଗ କରିଥିଲେ । ୧୯୫୩ ମସିହାରେ ଇନ୍ଦିରା ୩୬ ବର୍ଷ ବୟସରେ ପ୍ରଥମଥର ପାଇଁ ରୁଷ ଯାତ୍ରା କରିବାର ସୁଯୋଗ ପାଇଥିଲେ । ୧୯୫୯ ମସିହାରେ ୪୨ ବର୍ଷ ବୟସରେ ଇନ୍ଦିରା ଭାରତୀୟ ଜାତୀୟ କଂଗ୍ରେସର ସଭାନେତ୍ରୀ ରୂପେ ନିର୍ବାଚିତ ହୋଇଥିଲେ ଏବଂ ସଭାନେତ୍ରୀ ରୂପେ ଇନ୍ଦିରା ଏକ ନୂତନ ଯୁବଶକ୍ତିର ଉତ୍ସରୂପେ କାର୍ଯ୍ୟକରି ତାଙ୍କର ବ୍ୟକ୍ତିତ୍ୱ ଓ ବଳିଷ୍ଠ ନେତୃତ୍ୱ ଦ୍ୱାରା ବହୁ ପ୍ରତିଭାବାନ ଯୁବକଙ୍କୁ ତାଙ୍କ ଆଡକୁ ଆକୃଷ୍ଟ କରାଇ ପାରିଥିଲେ । ୧୯୬୦ ମସିହା ୪୩ ବର୍ଷ ବୟସରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପତି ଶ୍ରୀ ଫିରୋଜ ଗାନ୍ଧୀଙ୍କ ମୃତ୍ୟୁ ଘଟିଥିଲା । ୧୯୬୪ ମସିହାରେ ୪୭ ବର୍ଷ ବୟସରେ ଶ୍ରୀମତୀ ଗାନ୍ଧୀ ନିଉୟର୍କ ଠାରେ ଆୟୋଜିତ ବିଶ୍ୱମେଳାରେ ଯୋଗ ଦେଇଥିଲେ । ୧୯୬୪ ମସିହା ମଇ ୨୭ରେ ପିତା ଜବାହରଲାଲ ପ୍ରାଣ ତ୍ୟାଗ କଲେ । ଏହିବର୍ଷ ଜୁଲାଇ ୨ରେ ଲାଲବାହାଦୁର ଶାସ୍ତ୍ରୀଙ୍କ ମନ୍ତ୍ରିମଣ୍ଡଳରେ ଶ୍ରୀମତୀ ଗାନ୍ଧୀ ଏଇବର୍ଷ ତଥ୍ୟ ଓ ବେତାର ବିଭାଗ ମନ୍ତ୍ରୀ ହେଲେ । ୧୯୬୬ ମସିହା ୪୯ ବର୍ଷ ବୟସରେ ଶ୍ରୀମତୀ ଗାନ୍ଧୀ ସମକାଳୀନ ପ୍ରଧାନମନ୍ତ୍ରୀ ଲାଲବାହାଦୁରଙ୍କ ମୃତ୍ୟୁ ପରେ ଶ୍ରୀ ମୋରାରଜୀ ଦେଶାଇଙ୍କୁ ପରାସ୍ତ କରି ଜାନୁଆରୀ ୨୪ରେ ପ୍ରଥମଥର ପାଇଁ ଭାରତର ପ୍ରଧାନମନ୍ତ୍ରୀ ରୂପେ ଶପଥ ନେଇଥିଲେ ।

ଏହି ଦିନଠାରୁ ଶ୍ରୀମତୀ ଗାନ୍ଧୀ ତାଙ୍କର ପ୍ରତିଭା, ଅଭିଜ୍ଞତା ଶିକ୍ଷା ଓ ଅନୁଭୂତିର ଆଧାରରେ ଭାରତର ୭୦ କୋଟି ଜନତାଙ୍କୁ ନୂତନ ଦିଗଦର୍ଶନ ତଥା ଉପଯୁକ୍ତ ଶାସନ ଦେବାରେ ପ୍ରକୃତ ସୁଯୋଗକୁ ବିନିଯୋଗ କରିବାର ଅୟମାରମ୍ଭ କଲେ । ଭାରତର ସାମୁହିକ ବିକାଶ ପାଇଁ ତଥା ଭାରତକୁ ସବୁକ୍ଷେତ୍ରରେ ଆତ୍ମନିର୍ଭରଶୀଳ କରିବା ପାଇଁ ସେ ଅନେକ କାର୍ଯ୍ୟକ୍ରମ ହାତକୁ ନେଇ ନିଜର ନେତୃତ୍ୱର ପରାକାଷ୍ଠା ଦେଖାଇଥିଲେ । ସେଗୁଡ଼ିକ ହେଲା ୧୯୬୯ରେ ତାଙ୍କ ମନ୍ତ୍ରିମଣ୍ଡଳରେ ବୈଦେଶିକ, ବାଣିଜ୍ୟ ଓ ଯୋଗାଣ ବିଭାଗ ସୃଷ୍ଟି, ଦେଶର ୧୪ଟି ବ୍ୟାଙ୍କକୁ ଜାତୀୟକରଣ ଭାରତୀୟ ସମ୍ବିଧାନର ପରିବର୍ତ୍ତନ କରାଇ ରାଜକୀୟ ଭତ୍ତା ଉଚ୍ଛେଦ କରିବା, ୧୯୭୦ରେ ତାରାପୁରଠାରେ ଭାରତର ପ୍ରଥମ ଆଣବିକ ଶକ୍ତି କେନ୍ଦ୍ର ପ୍ରତିଷ୍ଠା କରିବା, ୧୯୭୧ ଓ ୧୯୭୫ରେ ଦେଶର ନୂଆ ରାଜ୍ୟ ରୂପେ ହିମାଚଳ ପ୍ରଦେଶ ଓ ସିକିମ ପ୍ରଦେଶର ଉଦ୍‌ଘାଟନ କରିବା, ରାଜ୍ୟ ଗୋଷ୍ଠୀ ସମ୍ମିଳନୀ ଓ ନିରପେକ୍ଷ ରାଷ୍ଟ୍ର ସମ୍ମିଳନୀ ଦିଲ୍ଲୀରେ କରାଇ ଜଣେ ବିଶ୍ୱ ରାଷ୍ଟ୍ରନୀତିଜ୍ଞ ରୂପେ ନିଜକୁ ପରିଚିତ କରାଇବା, ଦିଲ୍ଲୀରେ ଏସୀୟ କ୍ରୀଡ଼ା ଅନୁଷ୍ଠିତ କରାଇବା, ୧୯୮୪ ଜୁନ୍ ୫ରେ ପଞ୍ଜାବରେ ଉଗ୍ରପନ୍ଥୀଙ୍କ ମକାବିଲା ପାଇଁ ସୈନ୍ୟବାହିନୀ ମୁତୟନ କରିବା ଇତ୍ୟାଦି ଅନ୍ତର୍ଭୁକ୍ତ । ସବୁଠାରୁ ବିଶେଷ ଉଲ୍ଲେଖନୀୟ ଅବଦାନ ହେଉଛି ଗରିବ ଜନସାଧାରଣଙ୍କର ଉନ୍ନତି ପାଇଁ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ ସଫଳ ରୂପାୟନ କରିବାରେ ତାଙ୍କର ବ୍ୟଗ୍ରତା ।

ସେ ଦୀର୍ଘ ୨୦ ବର୍ଷଧରି ଭାରତର ୭୦ କୋଟି ଲୋକଙ୍କ ନେତ୍ରୀ ଥିଲେ । ଗୁରୁଦେବ ରବୀନ୍ଦ୍ରନାଥ ଠାକୁରଙ୍କ ପୁସ୍ତକ "ଏକଲା ଚଲୋରେ" ଦ୍ୱାରା ସେ ବିଶେଷ ଭାବରେ ଅନୁପ୍ରାଣିତ ହୋଇଥିଲେ । ଶ୍ରୀମତୀ ଗାନ୍ଧୀ ଦୁଇଜଣ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମର ସେନାପତିଙ୍କ ପରିବାରରେ ଭୂମିଷ୍ଠ ହୋଇ ଓ ସେମାନଙ୍କ ଯୋଗୁଁ ମହାତ୍ମା ଗାନ୍ଧୀଙ୍କ ସମେତ ରାଷ୍ଟ୍ରର ତୁଙ୍ଗ ନେତାମାନଙ୍କ ସାହଚର୍ଯ୍ୟ ଲାଭକରି ଜୀବନ ବିଦ୍ୟାଳୟରେ ଏପରି ମହାର୍ଘ ଶିକ୍ଷାଲାଭ କରିଥିଲେ ଯେ ରାଷ୍ଟ୍ର ଓ ରାଷ୍ଟ୍ରନୀତି ସଂପର୍କରେ ତାଙ୍କର ଅସାଧାରଣ ଅଭିଜ୍ଞତା ଥିଲା । ସେ ସମୟାନୁବର୍ତ୍ତିତା, ଶୃଙ୍ଖଳା, ଯୋଗ ଓ ଈଶ୍ୱର ବିଶ୍ୱାସର ଗୁରୁତ୍ୱ ଉପଲବ୍ଧି କରିଥିଲେ ।

ଭାରତୀୟ ଉପମହାଦେଶର ଶାନ୍ତି ପ୍ରତିଷ୍ଠା ହେଉଛି ତାଙ୍କ ବୈଦେଶିକ ନୀତିର ଅସଲ ଉଦ୍ଦେଶ୍ୟ । ତେଣୁ ତାଙ୍କୁ ପୃଥିବୀର ଶାନ୍ତିଦୂତ ରୂପେ ଆଖ୍ୟାୟିତ କରାଯାଇଥିଲା । ଶ୍ରୀମତୀ ଇନ୍ଦିରା



.... ଶ୍ରୀମତୀ ଗାନ୍ଧୀଙ୍କ ସହ ମୁଖ୍ୟମନ୍ତ୍ରୀ ଶ୍ରୀଜାନକୀ ବଲ୍ଲଭ ପଟ୍ଟନାୟକ ....

ଜଣେ ମହୀୟସୀ ନାରୀନେତ୍ରୀ ଭାବରେ ତାଙ୍କର ଦେଶବାସୀଙ୍କୁ ଅବଦାନ ପାଇଁ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟପାଇଁ ତାଙ୍କୁ ବିଶ୍ୱର ସର୍ବଶ୍ରେଷ୍ଠ ନାରୀ ବୋଲି ଘୋଷଣା କରାଯାଇଥିଲା । ପ୍ରତିଦିନ ସେ ୨୪ ଘଣ୍ଟାରୁ ୨୦ ଘଣ୍ଟା କାର୍ଯ୍ୟରତ ରହୁଥିଲେ ।

୧୯୮୪ ମସିହା ଅକ୍ଟୋବର ୩୦ରେ ଭୁବନେଶ୍ୱର ଠାରେ ଦୀର୍ଘ ୪୫ ମିନିଟ ଧରି ଓଜସ୍ୱିନୀ ଭାଷାରେ ଅନର୍ଗଳ ଭାବେ ଯେଉଁ ବକ୍ତୃତା ଉପସ୍ଥାପନା କରିଥିଲେ ତାହା ତାଙ୍କ ଜୀବନର ଶେଷ ଅମରବାଣୀ ହୋଇ ରହିବ । ଭାବ ବିହ୍ୱଳ କଣ୍ଠରେ ସେ କହିଥିଲେ, ଦେଶ ଓ ଜାତିର ସେବାଲାଗି ମୋତେ ଯଦି ମରିବାକୁ ହୁଏ, ମୁଁ ଗର୍ବ ଅନୁଭବ କରିବି । ମୁଁ ନିଶ୍ଚିତ ଯେ ମୋର ପ୍ରତ୍ୟେକ ରକ୍ତବିନ୍ଦୁ ଜାତିକୁ ସମୃଦ୍ଧ, ଶକ୍ତିଶାଳୀ ଓ ପ୍ରଗତିଶୀଳ କରି ଗଢି ତୋଳିବା ଲାଗି ଖୋରାକ ଯୋଗାଇବ" । ଶ୍ରୀମତୀ ଗାନ୍ଧୀଙ୍କର ଏତାଦୃଶ ଭାଷଣରେ ତାଙ୍କ ଦଳର ଉପସ୍ଥିତ ସଦସ୍ୟମାନେ ବିସ୍ମିତ ହୋଇ ପଡ଼ିଥିଲେ । ତା'ପରଦିନ ଦିଲ୍ଲୀଠାରେ ତାଙ୍କର ସରକାରୀ ବାସଗୃହରେ ପୂର୍ବାହ୍ନ ୯ଟା ୨୦ ମିନିଟ୍‌ରେ ତାଙ୍କର ଦୁଇଜଣ ନିରାପତ୍ତା ରକ୍ଷୀଙ୍କ ଅସ୍ତ୍ରନକ ଭାବେ ସ୍ୱୟଂକ୍ରୀୟ କାର୍ବାଇନ୍ ଷ୍ଟେନଗନ୍ ଗୁଳିରେ ଆକ୍ରାନ୍ତ ହୋଇ ଆଖି ପିଛୁଳାକେ ଶ୍ରୀମତୀ ଗାନ୍ଧୀ ତଳେ ଲୋଟି ପଡ଼ିଲେ । ଏହାର ପ୍ରତିକ୍ରିୟାରେ ଅନେକ ବ୍ୟକ୍ତି ଆତ୍ମହତ୍ୟା କରିଦେବା ଘଟଣା ପୃଥିବୀରେ ଚହଳ ସୃଷ୍ଟି କରିଥିଲା । ଆକାଶର ଏକ ଉଜ୍ଜ୍ୱଳ ନକ୍ଷତ୍ର ହୁଆତେ ବିଲୀନ ହୋଇଗଲା । ଏପରି ଏକ ନୃଶଂସ, ମର୍ମନ୍ତୁଦ, ହୃଦୟ ବିଦାରକ ଘଟଣା ବିଶ୍ୱବାସୀଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା ।

ଆଜି ଦେଶର ପ୍ରତ୍ୟେକ ନାଗରିକ ତାଙ୍କରି ଆଦର୍ଶକୁ କିଞ୍ଚିତ ପାଳନ କଲେ ତାହାହିଁ ହେବ ତାଙ୍କର ଅମର ଆତ୍ମା ପ୍ରତି ପ୍ରକୃତ ସମ୍ମାନ ଓ ଶ୍ରଦ୍ଧାଞ୍ଜଳି ।

ଉପଖଣ୍ଡ ସୂଚନା ଓ ଲୋକ ସଂପର୍କ ଅଧିକାରୀ,
ଟିଟିଲାଗଡ଼, ବଲାଙ୍ଗୀର ।






# କବି ଜୟଦେବ

—ଶ୍ରୀ ନୀଳମଣି ମିଶ୍ର

ଭାରତୀୟ ସଂସ୍କୃତ କବି ମଣ୍ଡଳୀରେ ଜୟଦେବ କବି ଗୀତଗୋବିନ୍ଦ ମହାକାବ୍ୟ ରଚନା କରି ଏକ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି । ତାଙ୍କ ରଚିତ ଅମର କାବ୍ୟ ଗୀତଗୋବିନ୍ଦ ଉତ୍କଳର ଶ୍ରୀ ଜଗନ୍ନାଥ ଧାମ ଶ୍ରୀକ୍ଷେତ୍ରରେ ରଚିତ ହୋଇ ସମଗ୍ର ବିଶ୍ୱରେ ଏକ ପ୍ରସିଦ୍ଧ ଗୀତ କାବ୍ୟ ରୂପେ ପ୍ରସିଦ୍ଧି ଅର୍ଜନ କରି ପାରିଛି । ଗୀତଗୋବିନ୍ଦକାର ଜୟଦେବ ପୁରୀ ଜିଲ୍ଲାର ପ୍ରାଚୀ ନଦୀତୀରବର୍ତ୍ତୀ କେନ୍ଦୁବିଲ୍ୱ ବା କେନ୍ଦୁଲୀ ନାମକ ଶାସନ ଗ୍ରାମରେ ପିତା ଭୋଜଦେବ ଓ ମାତା ରାଧା ଦେବୀଙ୍କ କୋଳ ମଣ୍ଡନ କରି ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପ୍ରିୟ ବନ୍ଧୁ ଥିଲେ ପରାଶର । ଏ ସମ୍ବନ୍ଧରେ ଜୟଦେବ ଗୀତଗୋବିନ୍ଦର ଗୋଟିଏ ଶ୍ଳୋକରେ ବର୍ଣ୍ଣନା କରିଛନ୍ତି :-

ଶ୍ରୀ ଭୋଜଦେବ ପ୍ରଭବସ୍ୟ ରାଧା ଦେବୀ ସୁତ ଜୟ ଦେବସ୍ୟ
ପରାଶରାଦି ପ୍ରିୟ ବର୍ଗକଣ୍ଠେ ଶ୍ରୀ ଗୀତଗୋବିନ୍ଦ କବିତ୍ୱମସ୍ତୁ ।

କିମ୍ବଦନ୍ତୀରୁ ଜଣାଯାଏ—ଦାକ୍ଷିଣାତ୍ୟ ବ୍ରାହ୍ମଣ ଦେବଶର୍ମାଙ୍କର ପଦ୍ମାବତୀ ନାମ୍ନୀ ଗୋଟିଏ କନ୍ୟାଥିଲା । ସେ ତାକୁ ଦେବଦାସୀ କରିବାକୁ ସଂକଳ୍ପ କରିଥିବାରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସ୍ୱପ୍ନାଦେଶରେ ଜୟଦେବଙ୍କୁ ସମର୍ପଣ କରିଥିଲେ । ଜୟଦେବ ମଧ୍ୟ ସ୍ୱୀୟ ରଚନା ଗୀତଗୋବିନ୍ଦର କେତୋଟି ସ୍ଥାନରେ ପଦ୍ମାବତୀଙ୍କ ନାମ ଅତ୍ୟନ୍ତ ଆଦରର ସହିତ ଉଲ୍ଲେଖ କରିଛନ୍ତି—

"ବାଗ୍ ଦେବତା ଚରିତ ଚିତ୍ରିତ ଚିତ୍ତସଦ୍ମା
ପଦ୍ମାବତୀ—ଚରଣ—ଚାରଣ—ଚକ୍ରବର୍ତ୍ତୀ ।
(ପ୍ରଥମସର୍ଗ)

ଜୟତି ପଦ୍ମାବତୀରମଣ ଜୟଦେବ—
କବି ଭାରତୀ ଭଣିତମିତି ଗୀତମ୍ ।
(ପ୍ରଥମସର୍ଗ)

ଅବଶ୍ୟ 'ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ' ପଦଟିକୁ ଜଣେ ଅଧେ ବିଦ୍ୱାନ ପୁରୀ ଜିଲ୍ଲାର ଖଣ୍ଡପଡା ଅନ୍ତର୍ଗତ ମହାନଦୀ ତଟବର୍ତ୍ତୀ ପଦ୍ମାବତୀ ନାମକ ଗ୍ରାମ ସହିତ ବିଚ୍ଛିନ୍ନ ଅର୍ଥ କରନ୍ତି । ତାଙ୍କ ମତରେ ପଦ୍ମାବତୀ ନାମକ ଗ୍ରାମରେ ଚରଣରେ ଚାରଣ ଅର୍ଥାତ ବିଚରଣ କରି ସେ ଚକ୍ରବର୍ତ୍ତୀ ସଦୃଶ ନିଜକୁ ମନେ କରୁଥିଲେ । ଯଦି ଏପରି ଗୋଟିଏ କ୍ଳିଷ୍ଟକଳ୍ପନା କରାଯାଏ, ତେବେ 'ପଦ୍ମାବତୀ—ରମଣ' ଶବ୍ଦର ଅର୍ଥ ଆଦୌ ପ୍ରତିପାଦିତ ହୋଇପାରିବ ନାହିଁ । ଆଲୋଚକଙ୍କ ମତରେ ଜୟଦେବଙ୍କ ପରି ଜଣେ ବୈଷ୍ଣବ କବି କେବେ ହେଲେ ନିଜ ପତ୍ନୀଙ୍କ ପାଦ ସେବା କରୁଥିବେ—ଏହା ଶିଷ୍ଟ ଜନ ସମ୍ମତ ହେଉନାହିଁ ।

ଅବଶ୍ୟ ଲୌକିକ ରୀତିରେ ଅସାମାଜିକ ହୋଇପାରେ କିନ୍ତୁ ରସ ରାଜ୍ୟରେ ଏହାର ବହୁ ଉଦାହରଣ ରହିଛି । ମହାକବି କାଳିଦାସ ଅଭିଜ୍ଞାନ ଶାକୁନ୍ତଳମ୍ ଓ ବିକ୍ରମୋର୍ବଶୀୟ ନାଟକରେ ନାୟକ ମହାରାଜ ଦୁଷ୍ୟନ୍ତ ଓ ପୁରୁରବାଙ୍କୁ ନାୟିକା ଶକୁନ୍ତଳା ଓ ଉର୍ବଶୀଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କରାଇ ସ୍ୱକାବ୍ୟର ରସପୁଷ୍ଟି କରିଛନ୍ତି । ଆହୁରି ମଧ୍ୟ ରସଶାସ୍ତ୍ରରେ ନାୟିକାର ମାନଭଞ୍ଜନ କରିବାକୁ ଯାଇ ନାୟକ ପାଦ ପ୍ରହାର ସ୍ୱରୂପ ଉପହାର ଗ୍ରହଣ କରି କୃତକୃତ୍ୟ ହୋଇଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । 'ସାହିତ୍ୟ ଦର୍ପଣ'ଶୀର୍ଷକ ଅଳଙ୍କାର ଗ୍ରନ୍ଥରୁ ଏହାର ଗୋଟିଏ ଉଦାହରଣ ଦିଆ ଯାଇପାରେ—

"ଦାସେ କୃତାଗସି ଭବତ୍ୟୁଚିତ ପ୍ରଭୁଣାଂ
ପାଦପ୍ରହାର ଇତି ସୁନ୍ଦରୀନାତ୍ର ଦୂୟେ ।
ଉଦ୍ୟତ୍ କଠୋର ପୁଲକାଙ୍କୁର କଣ୍ଟକାଗ୍ରୈ—
ର୍ଯଦ୍‌ଭିଦ୍ୟତେ ମୃଦୁପଦଂ ନନୁସା ବ୍ୟଥାମେ" ।

ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ ପଦକୁ ମଧ୍ୟ କେତେକ ପ୍ରାଚିନ ଟୀକାକାର ପଦ୍ମାବତୀ—ଲକ୍ଷ୍ମୀ, ପଦ୍ମାବତୀ—ରାଧା ବୋଲି ଅର୍ଥ କରିଥିଲେ ହେଁ ଅଧିକାଂଶ ସଂସ୍କୃତ ଟୀକାକାର

ପ୍ରବର୍ତ୍ତକ ରୂପେ ଶ୍ରୀଚୈତନ୍ୟଙ୍କୁ ବର୍ଣ୍ଣନା କରିଛନ୍ତି । ଏହି ପୁସ୍ତକଟି ଏବେ ପ୍ରକାଶନାଧୀନ । ଏହାର ପ୍ରକାଶନ ପରେ ଓଡ଼ିଶାର ଗୀତଗୋବିନ୍ଦର ସ୍ଥିତି ସଂପର୍କରେ ଆମକୁ ଅନେକ ତଥ୍ୟ ମିଳି-ପାରିବ ।

## କବି ଜୟଦେବଙ୍କ କାବ୍ୟର ବିଷୟବସ୍ତୁ

ସ୍ଥୂଳ ଦୃଷ୍ଟିରୁ ବିଚାର କଲେ ଜୟଦେବ ଗୀତଗୋବିନ୍ଦ ମହାକାବ୍ୟରେ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିଥିବାର ଦେଖାଯାଏ । ଶ୍ରୀକୃଷ୍ଣଙ୍କୁ ଗୋପୀମାନଙ୍କ ସହିତ ରାସନୃତ୍ୟରେ ମଗ୍ନ ଥିବାର ଦେଖି ଶ୍ରୀରାଧାଙ୍କ ମନରେ କ୍ଷୋଭ ଜାତ ହୋଇଛି । ସେ ଏକାନ୍ତ ଭାବରେ ଶ୍ରୀକୃଷ୍ଣଙ୍କୁ ଆପଣାର ବୋଲି ମନେ କରି ପୂର୍ବରୁ ବହୁବାର ନିଭୃତ ମିଳନରେ ମିଳିତ ହୋଇଥିବାରୁ, ତାଙ୍କ ଲାଳସାପୂର୍ଣ୍ଣ ପ୍ରାଣରେ ଆଘାତ ଲାଗିଛି । ସେ ଅଭିମାନିନୀ ହୋଇ ସଖୀ ସହିତ ଫେରିଯାଇ କୁଞ୍ଜରେ ବସି ଅତୀତର ସୁଖସ୍ମୃତିର ସ୍ମରଣ କରିଛନ୍ତି ।

ଅଭିମାନିନୀ ରାଧା ଅଭିମାନ ଭରା ହୃଦୟରେ ଫେରିଯାଇ ଥିବାର ଲକ୍ଷ୍ୟ କରି ଶ୍ରୀକୃଷ୍ଣ ତାଙ୍କୁ ଅନ୍ୱେଷଣ କରିଛନ୍ତି । ସେହି ଅନ୍ୱେଷଣ ମଧ୍ୟରେ ସେ ଚିନ୍ତା କରିଛନ୍ତି—"ହରି ହରି ହତାଦରତୟା ଗତା ସା କୁପିତେବ" ।

ଶ୍ରୀରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କର ମିଳନ କରାଇବା ଇଚ୍ଛାରେ ସଖୀ ଯମୁନାତୀରର ବେତସ କୁଞ୍ଜରେ ଉପସ୍ଥିତ ହୋଇ ଅନୁନୟ କରିଛି—"ସା ବିରହେ ତବ ଦୀନା ମାଧବ । ମନସିଜ—ବିଶିଖ—ଭୟାଦିବ ଭାବନୟା ତ୍ୱୟି ଲୀନା" ।

ଶ୍ରୀକୃଷ୍ଣ ସଖୀର ଅନୁନୟରେ ବିଚଳିତ ହୋଇ ଶ୍ରୀରାଧାଙ୍କୁ ସେହି କୁଞ୍ଜକୁ ଘେନି ଆସିବା ଲାଗି କହିଛନ୍ତି । ସଖୀ ସେଠାରୁ ଫେରିଯାଇ ଶ୍ରୀରାଧାଙ୍କ ଆଗରେ ଶ୍ରୀକୃଷ୍ଣଙ୍କ ବିରହ ବର୍ଣ୍ଣନା କରି, ତାଙ୍କୁ ଅଭିସାରରେ ଯମୁନାତୀରରେ କୁଞ୍ଜକୁ ଯିବା ପାଇଁ କହିଛି—"ରତି ସୁଖସାରେ ଗତମଭିସାରେ ମଦନ ମନୋହର ବେଶଂ, ନ କୁରୁ ନିତମ୍ବିନି ଗମନ ବିଳମ୍ବନ ମନୁସର ତଂ ହୃଦୟେଶମ୍" ।

କିନ୍ତୁ ମଦନବାଣରେ କ୍ଷୁର୍ଣ୍ଣା ରାଧିକା ଏଥିରେ ସକ୍ଷମା ନ ହେବାରୁ ପୁଣି ସଖୀଯାଇ ଶ୍ରୀକୃଷ୍ଣଙ୍କୁ ଶ୍ରୀମତୀଙ୍କ କୁଞ୍ଜକୁ ଆଣିବା ପାଇଁ ଅନୁନୟ କରିଛି—

"ନାଥ ହରେ ସୀଦତି ରାଧା ବାସଗୃହେ"

ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ କୁଞ୍ଜକୁ ଯିବା ଲାଗି ସମ୍ମତ ହୁଅନ୍ତେ ସଖୀ ଧାଇଁଯାଇ ଶ୍ରୀରାଧାଙ୍କୁ ବେଶଭୂଷଣରେ ସଜ୍ଜିତ କରାଇଛି । କିନ୍ତୁ ନିର୍ଦ୍ଦିଷ୍ଟ ସମୟରେ ମନମୋହନ କୁଞ୍ଜକୁ ନ ଆସିବାରୁ ଶ୍ରୀରାଧା ବିପ୍ରଲବ୍ଧା ହୋଇ ପ୍ରାଣପ୍ରିୟଙ୍କ ସମ୍ବନ୍ଧରେ ନାନା ପ୍ରକାର ଦୁଶ୍ଚିନ୍ତା କରିଛି ଏବଂ ପରିଶେଷରେ ନିରାଶ ହୋଇ ସେ ସଖୀ ଆଗରେ ମନୋବେଦନା ପ୍ରକାଶ କରି କହିଛି—"ରମୟତି ସୁଭୃଶଂ କାମପି ସୁଦୃଶଂ ଖଳ ହଳଧର ସୋଦରେଣ" । ଶ୍ରୀମତୀ କାମବାଣରେ ଜର୍ଜ୍ଜରିତା ହୋଇ ଉନ୍ମାଦିନୀଙ୍କ ପରି ଅଶ୍ରୁଝରାଇ କହିଛି—"ପ୍ରାଣାନ୍ ଗୃହାଣ ନ ଗୃହଂ ପୁନରାଶ୍ରୟିଷ୍ୟେ" ।

ଶ୍ରୀକୃଷ୍ଣ ରାତ୍ରିଟି କେଉଁ ପ୍ରଣୟିନୀର କୁଞ୍ଜରେ ବିତାଇ ପ୍ରଭାତ କାଳରେ ସୁରତ ସଙ୍କେତ ଅଙ୍ଗରେ ଧାରଣ କରି ଶ୍ରୀରାଧାଙ୍କ କୁଞ୍ଜରେ ପ୍ରବେଶ କରିଛନ୍ତି । ଏ' ଦୃଶ୍ୟ ଦେଖି ଶ୍ରୀରାଧା ଖଣ୍ଡିତା ଓ କଳହାନ୍ତରିତା ନାୟିକାରେ ପରିଣତ ହୋଇଯାଇ, ପ୍ରାଣପ୍ରିୟଙ୍କୁ ନିର୍ଦ୍ଦୟ ଭାବରେ ଭର୍ତ୍ସନା କରିଛନ୍ତି—

"ଯାହି ମାଧବ ଯାହି କେଶବ ମା ବଦ କୈତବ ବାଦମ୍
ତାମନୁସର ସରସୀରୁହ ଲୋଚନ ଯାତବ ହରତି ବିଷାଦମ୍" ।

ପ୍ରାଣପ୍ରିୟାଙ୍କଠାରୁ ଅପମାନିତ ହୋଇ ଶ୍ରୀକୃଷ୍ଣ ଫେରିଯିବା ପରେ ସଖୀ ଶ୍ରୀମତୀଙ୍କୁ ଅନେକ ପ୍ରକାର ବୁଝାଇଛନ୍ତି । ପୁଣି ସନ୍ଧ୍ୟା ସମୟରେ ଶ୍ରୀକୃଷ୍ଣ ଶ୍ରୀମତୀଙ୍କ କୁଞ୍ଜକୁ ଆସି ମାନିନୀର ମାନଭଞ୍ଜନ କରିବା ଲାଗି ଚେଷ୍ଟା କରି ବିଫଳ ହୁଅନ୍ତେ, ପରିଶେଷରେ ତାଙ୍କ ପାଦରେ ପଡ଼ି ଅନୁନୟ କରିଛନ୍ତି—

"ସ୍ମରଗରଳ ଖଣ୍ଡନଂ ମମ ଶିରସିମଣ୍ଡନଂ
ଦେହି ପଦପଲ୍ଲବ ମୁଦାରମ୍" ॥

ମାନନୀର ମାନ ଭଙ୍ଗ ହୋଇଛି । ସଖୀ ତାଙ୍କୁ ବେଶଭୂଷଣରେ ସଜ୍ଜିତ କରାଇ ମାଧବଙ୍କ କୁଞ୍ଜରେ ପ୍ରବେଶ କରାଇଛି । ପ୍ରାଣପ୍ରିୟା ଶ୍ରୀମତୀଙ୍କ ଅନୁକୂଳ ମନୋଭାବ ଲକ୍ଷ୍ୟ କରି ଶ୍ରୀକୃଷ୍ଣ ତାଙ୍କୁ କୁଞ୍ଜକୁଟୀରକୁ ପାଛୋଟି ନେଇଛନ୍ତି । ସେଠାରେ ରାଧା-ଶ୍ରୀକୃଷ୍ଣଙ୍କର ନିଭୃତ ମିଳନ ହୋଇଛି । ସଖୀର ମନସାଦ ପୂରଣ ହୋଇଛି । ମିଳନାନ୍ତେ ଶ୍ରୀରାଧା ପୁନର୍ମିଳନ କାମନାରେ ପ୍ରାଣପ୍ରିୟଙ୍କୁ ତା'ର ବେଶଭୂଷଣ ଯଥାସ୍ଥାନରେ ସଜାଇ ଦେବା ଲାଗି ଅନୁରୋଧ କରି କହିଛନ୍ତି—

"କୁରୁ ଯଦୁନନ୍ଦନ ଚନ୍ଦନ ଶିଶିର ତରେଣ କରେଣ ପୟୋଧରେ
ମୃଗମଦ ପତ୍ରକ ମତ୍ର ମନୋଭବ ମଙ୍ଗଳ କଳଶ ସହୋଦରେ" ॥

କିନ୍ତୁ ମୈଥୁନୀ ଚିନ୍ତାସକ୍ତ ସାଧାରଣ ଜନତା ଏ ପ୍ରକାର ଅର୍ଥ ଗୀତ ଗୋବିନ୍ଦରୁ ଗ୍ରହଣ କରୁଥିଲେ ହେଁ ଜ୍ଞାନୀ, ଗୁଣୀ, ତତ୍ତ୍ୱଦର୍ଶୀ ବିଦ୍ୱାନ୍‌ମାନେ ଏହାର ଭିନ୍ନ ଅର୍ଥ ଗ୍ରହଣ କରିଥାନ୍ତି—

ଜୀବାତ୍ମା ବ୍ୟାକୁଳ ଭାବରେ ପରମାତ୍ମାଙ୍କ ସାନ୍ନିଧ୍ୟ ପାଇ ଅବିରତ ଚେଷ୍ଟା କରୁଛି । ସେ ଯେତେବେଳେ ପରମାତ୍ମାଙ୍କ ସାନ୍ନିଧ୍ୟ ଲାଭରେ ପ୍ରତିବନ୍ଧକ ଲକ୍ଷ୍ୟ କରୁଛି, ଠିକ୍ ସେତିକିବେଳେ ବିବେକ ତା'ର ପ୍ରକୃତ ମାର୍ଗ ନିର୍ଦ୍ଦେଶ କରି ଦେଉଛି । ପରିଶେଷରେ ଶ୍ରୀରାଧା ରୂପୀ ଜୀବାତ୍ମା ଶ୍ରୀକୃଷ୍ଣରୂପୀ ପରମାତ୍ମାଙ୍କ ସହିତ ମିଳିତ ହୋଇ ସମସ୍ତ ସୁଖର ଆଧାର ମୋକ୍ଷ ଲାଭ କରୁଛି ।

କବିରାଜ ଜୟଦେବ ଗୀତଗୋବିନ୍ଦ ରଚନାର ମୌଳିକ ଦୃଷ୍ଟି-କୋଣ ସଂପର୍କରେ ଦୁଇଟି ଶ୍ଳୋକ କାବ୍ୟରେ ସନ୍ନିବେଶିତ କରିଛନ୍ତି—

"ଯଦି ହରି ସ୍ମରଣେ ସରସଂମନଃ ।
ଯଦି ବିଳାସକଳାସୁ କୁତୂହଳମ୍ ।
ମଧୁର କୋମଳ କାନ୍ତ ପଦାବଳୀଂ ।
ଶୃଣୁ ତଦା ଜୟଦେବ ସରସ୍ୱତୀମ୍"

* * * *

ଯଦ୍ ଗାନ୍ଧର୍ବ କଳାସୁ କୌଶଳ ମନୁଧ୍ୟାନଂ ଚ ଯଦ୍ ବୈଷ୍ଣବଂ
ଯଚ୍ଛୃଙ୍ଗାର ବିବେକ ତତ୍ତ୍ୱ ରଚନା କାବ୍ୟେଷୁ ଲୀଳାୟିତମ୍ ।

ଏତକ୍କୁ ଅନ୍ତ ଅଠଶ୍ଵକିଣ ।
ଲିହିବି ବୈଷ୍ଣବ ଲୀଳାରସ ।।"

ଉକ୍ତ ପୁସ୍ତକରୁ ଆହୁରି ମଧ୍ୟ ସୂଚନା ମିଳେ ଯେ, କବି ଜୟଦେବ ଶ୍ରୀକ୍ଷେତ୍ରରେ ଇହଲୀଳା ସମ୍ବରଣ କରିଥିଲେ ।

କେନ୍ଦୁଳୀ ଗ୍ରାମର ବର୍ତ୍ତମାନ ଅବସ୍ଥିତି ସଂପର୍କରେ କୌଣସି ସରକାରୀ ଅଭିଲେଖ (Record) ନାହିଁ ବୋଲି ଆଲୋଚକମାନେ ମତ ଦିଅନ୍ତି । ଅବଶ୍ୟ ଏହା ସତ୍ୟ ଯେ କେତେକ ଅଭିଲେଖରେ କେନ୍ଦୁବିଲ୍ୱ ବା କେନ୍ଦୁଳୀର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । କିନ୍ତୁ ଗତ ଦୁର୍ଗାପୂଜା ଅବକାଶ ସମୟରେ ଭୂତପୂର୍ବ ନିର୍ଦ୍ଦେଶକ ଶ୍ରୀଯୁକ୍ତ ପାଣି ମହୋଦୟଙ୍କ ଗହଣରେ ମୁଁ କେନ୍ଦୁଳୀ ଗ୍ରାମ ଓ ପ୍ରାଚୀ ଉପତ୍ୟକାର କେତେକ ଗ୍ରାମ ସର୍ବେକ୍ଷଣରେ ଯାଇଥିବା ସମୟରେ ପୂର୍ବର କେନ୍ଦୁବିଲ୍ୱ ଗ୍ରାମର ଜନୈକ ବ୍ୟକ୍ତିଙ୍କର ଖତିଆନ ଦେଖିବାର ସୁଯୋଗ ପାଇଥିଲି । ସେହି ଖତିଆନ୍‌ରେ ଲେଖା ରହିଛି–

"ପ୍ରଜାର ନାମ–ରୋବନି ନାଏକ, ପି: ସୁଦୁରି ନାଏକ, ଜାତି–ଶୂଦ୍ର ମହାଲଏକ ସା:–ନିଜ ଗାଁ, ପଡ଼ା–କେନ୍ଦୁଳୀ ଦେଉଳୀ । ଜମିଦାର–ରାଧାପ୍ରସାଦ ଭଗତ ଓଗେର । ରଘୁନାଥ ଜିଉ ମାର୍ଫତ ମହନ୍ତ ରାମାନୁଜ ଦାସ ଓଗେର ପ୍ରଗନା–କୋଠଦେଶ, ଥାନା–ବାଲିଅନ୍ତା, ଥାନା ନମ୍ବର ୯୧ ତଉଜି ୪୪, ଜି: ପୁରୀ ୨୭-୧୦-୧୯୨୭ ।

ଦସ୍ତଖତ–ପରିଷ୍କାର ଭାବରେ ପଢ଼ି ହେଉ ନାହିଁ । ତାରିଖ–୧-୧-୧୯୨୮ ।

ଏଥିରୁ ଜଣାଯାଏ ଯେ, ପ୍ରାଚୀନ କେନ୍ଦୁବିଲ୍ୱ ବା କେନ୍ଦୁଳୀ ବର୍ତ୍ତମାନ କେନ୍ଦୁଳୀ ଦେଉଳୀ ନାମରେ ପରିଚିତ । ଖୁବ୍ ସମ୍ଭବତ ଏହି ଗ୍ରାମଟି ଦେଉଳରେ ପରିପୂର୍ଣ୍ଣ ଥିବାରୁ ତାହାର ନାମରେ 'ଦେଉଳୀ' ଶବ୍ଦ ବିଶେଷଣ ରୂପେ ବ୍ୟବହୃତ ହୋଇଛି । ତଦ୍‌ବ୍ୟତୀତ ସେହି ଅଞ୍ଚଳର ଗୋଟିଏ ପ୍ରାଚୀନ ନକ୍‌ସାରେ କେନ୍ଦୁଳୀ ଦେଉଳୀ ଲେଖା ଥିବାର ସମ୍ବାଦ ଜୟଦେବ ସାଂସ୍କୃତିକ ପରିଷଦର ସଂପାଦକଙ୍କଠାରୁ ମିଳେ ।

## ଗୀତଗୋବିନ୍ଦ ରଚନାର ପୃଷ୍ଠଭୂମି--

ଓଡ଼ିଶାର ଭୌମକର ରାଜବଂଶ ଅମଳରେ କଳିଙ୍ଗରୁ ବୌଦ୍ଧଧର୍ମ ବିଲୋପ ସାଧିତ ହୋଇ ଶୈବ ଓ ଶାକ୍ତ ମତ ପ୍ରତିଷ୍ଠିତ ହୋଇଥିଲା । ଶୈବ ଓ ଶାକ୍ତ ଉପାସକ ମାନେ ଦୁଇଭାଗରେ ବିଭକ୍ତ ହୋଇ ବାମମାର୍ଗୀ ଦକ୍ଷିଣମାର୍ଗୀ ଭେଦରେ ପରିଚିତ ହୋଇଥିଲେ । ଦକ୍ଷିଣପନ୍ଥୀ ତାନ୍ତ୍ରିକମାନେ, ତନ୍ତ୍ରର ଯୋଗପଦ୍ଧତିକୁ ଅନୁସରଣ କରି ମୋକ୍ଷପ୍ରାପ୍ତିର ମାର୍ଗ ଅନ୍ୱେଷଣ କରୁଥିବା ଅବସ୍ଥାରେ ବାମମାର୍ଗୀମାନେ ମାରଣ, ମୋହନ, ବଶ, ଉଚ୍ଚାଟନ ପ୍ରଭୃତିର ପ୍ରୟୋଗ କରି ସାମାଜିକ ସ୍ଥିତିରେ ଚମକ ସୃଷ୍ଟି କରିଥିଲେ । ମଦ୍ୟ, ମାଂସ, ମୈଥୁନ, ମୁଦ୍ରା ଓ ମତ୍ସ୍ୟ ଆଦି ପଞ୍ଚ 'ମ' କାରର ପ୍ରଚଳନ କରାଇ ସମାଜରେ ଲୋକପ୍ରିୟତା ହାସଲ କରିବା ସଙ୍ଗେ ସଙ୍ଗେ ତାନ୍ତ୍ରିକ ପ୍ରୟୋଗରେ ନାରୀମାନଙ୍କୁ ଗ୍ରହଣ କରି ତନ୍ତ୍ରଯାନକୁ ଲୋକପ୍ରିୟ କରାଇଥିଲେ । ସେତିକି ବେଳେ ବୌଦ୍ଧ ତାନ୍ତ୍ରିକମାନେ ବଜ୍ରଯାନୀ ରୂପେ ପରିଚିତ ହୋଇ ବାମମାର୍ଗୀ ତାନ୍ତ୍ରିକମାନଙ୍କ ମଧ୍ୟରେ ସମ୍ମିଳିତ ହୋଇଥିଲେ । ସେ ମାନଙ୍କ ପ୍ରଭାବ ଓ ଦୌରାତ୍ମ୍ୟରେ ସମାଜର ବୁଦ୍ଧିଜୀବୀବର୍ଗ ତ୍ରାହି ତ୍ରାହି ଡାକ ଛାଡ଼ିବାକୁ ଲାଗିଲେ । ତାନ୍ତ୍ରିକମାନେ ସମାଜର ଅପେକ୍ଷାକୃତ ନିମ୍ନବର୍ଗଙ୍କ ସହାୟତାରେ ସାମାଜିକ ପରିସ୍ଥିତିକୁ ଏପରି ବିଭ୍ରାନ୍ତ କରି ଦେଲେ ଯେ, ଶାସକବର୍ଗ ମଧ୍ୟ ସେହି ଆଭିଚାରିକ ପ୍ରଭାବରୁ ମୁକ୍ତ ହୋଇ ପାରିଲେ ନାହିଁ । ତା' ଫଳରେ ଶାସନ କ୍ଷେତ୍ରରେ ନାନାଦି ବିଶୃଙ୍ଖଳା ସୃଷ୍ଟି ହେବାକୁ ଲାଗିଲା । ସେହି ସୁଯୋଗରେ ଗଙ୍ଗବଂଶୀୟ ପ୍ରଖ୍ୟାତ ବୀର ଅନନ୍ତ ବର୍ମା ଚୋଡ଼ଗଙ୍ଗ ଦେବ ସୋମବଂଶୀଙ୍କ ବିରୁଦ୍ଧରେ ଅଭିଯାନ ଚଳାଇ ଉତ୍କଳର ଶାସନ କ୍ଷମତା କରଗତ କରିନେଲେ । ତାଙ୍କର ନେତୃତ୍ୱ ତଥା ଦୀର୍ଘକାଳୀନ ଶାସନ ଚକ୍ର ମଧ୍ୟରେ ଚୋଡ଼ଗଙ୍ଗ ଦେବ କଳିଙ୍ଗ, ଉତ୍କଳ ଓ କୋଶଳକୁ ମିଶାଇ ଆଗଙ୍ଗା ଗୋଦାବରୀ ଏକ ବିଶାଳ ସାମ୍ରାଜ୍ୟ ଗଠନ କରି ସମଗ୍ର ଅଞ୍ଚଳକୁ କଳିଙ୍ଗ ସାମ୍ରାଜ୍ୟ ନାମରେ ନାମିତ କଲେ ।

ରାଜନୈତିକ ଶୃଙ୍ଖଳା ହାସଲ କରିବା ପରେ ପରମ ବୈଷ୍ଣବ ଚୋଡ଼ଗଙ୍ଗ ଦେବ ଜାତୀୟ ବିଗ୍ରହ ଭୈରବଙ୍କୁ ବିଷ୍ଣୁ ବା ସପ୍ତଧାମୂର୍ତ୍ତିର ସମନ୍ୱିତ ବିଗ୍ରହ ରୂପେ ପୁରୁଷୋତ୍ତମ ଜଗନ୍ନାଥ ନାମରେ ସୁପରିଚିତ କରାଇଲେ । ଖୁବ୍ ସମ୍ଭବତଃ ତତ୍ ପୂର୍ବରୁ ଆଜିର ଶ୍ରୀକ୍ଷେତ୍ର ଧାମ ଭୈରବୀ ଚକ୍ରରେ ପ୍ରତିଷ୍ଠିତ ଶୈବକ୍ଷେତ୍ର ରୂପେ ପ୍ରସିଦ୍ଧି ଅର୍ଜନ କରିଥିଲା । ଏହାର ପ୍ରମାଣ ସ୍ୱରୂପ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ସ୍ଥିତ ପାତାଳେଶ୍ୱର, ଈଶାନେଶ୍ୱର ଆଦି ଲିଙ୍ଗବିଗ୍ରହ ଅଦ୍ୟାପି ତିରିଶ ଚାଳିଶ ଫୁଟ ଗହ୍ୱର ମଧ୍ୟରେ ଅବସ୍ଥାନ କରୁଛନ୍ତି । ତଦ୍ ବ୍ୟତୀତ ପୁରୀସହରରେ ଅବସ୍ଥିତ ଲୋକେଶ୍ୱର, ବା ଲୋକନାଥ, ମାର୍କଣ୍ଡେୟ, କପାଳମୋଚନ ପ୍ରଭୃତି ମନ୍ଦିରର ଅବସ୍ଥିତି ମଧ୍ୟ ଆଲୋଚନାର ପରିସର ମଧ୍ୟକୁ ଆସିପାରେ ।

ଚୋଡ଼ଗଙ୍ଗ ଦେବ ବର୍ତ୍ତମାନର ମନ୍ଦିର ନିର୍ମାଣ ଆରମ୍ଭ କରାଇବା ସଙ୍ଗେ ସଙ୍ଗେ ବିଷ୍ଣୁଙ୍କ ପ୍ରାଧାନ୍ୟ ଶ୍ରୀମନ୍ଦିରରେ ଅକ୍ଷୁର୍ଣ୍ଣ ରଖି ଗଣେଶ, ଶିବ, ସୂର୍ଯ୍ୟ ଓ ଦୁର୍ଗାଙ୍କ ପ୍ରତିଷ୍ଠା ପ୍ରତିପାଦନ କରିଥିଲେ । ଅର୍ଥାତ୍ ଚୋଡ଼ଗଙ୍ଗ ଦେବ 'ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା'ର ପ୍ରଚଳନ କରାଇ ପଞ୍ଚୋପାସନାର ସୂତ୍ରପାତ କରାଇଥିଲେ । ତା' ସହିତ ଜନସାଧାରଣଙ୍କ ମୈଥୁନୀ ଚେଷ୍ଟାକୁ ସଙ୍କୁଚିତ କରାଇ ସୁନ୍ଦରୀ ଦେବଦାସୀମାନଙ୍କୁ ଶ୍ରୀମନ୍ଦିରର ଉପାସନାରେ ଅଙ୍ଗୀଭୂତ କରାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ କେବଳ ଦେବଭୋଗ୍ୟ ବା ଦେବ ଗଣିକା ରୂପେ ଚିହ୍ନିତ କରାଇଥିଲେ ।

ଏହି ସମୟରେ ଦାକ୍ଷିଣାତ୍ୟର ସୁପ୍ରଚଳିତ ଓ ସୁପ୍ରସାରିତ ବୈଦିକ ସନ୍ନ୍ୟାସୀମାନଙ୍କ ବୈଷ୍ଣବୀଧାରା ଅନୁକୂଳ ବାତାବରଣ ... ପୂର୍ବ ଭାରତର ପ୍ରସିଦ୍ଧ କ୍ଷେତ୍ର ପୁରୀଧାମରେ ପ୍ରବାହିତ ... ଲାଗିଲା ଏବଂ ବୈଷ୍ଣବମତବାଦର ପ୍ରସିଦ୍ଧ ଆଚାର୍ଯ୍ୟ ... ନୁଜ, ନିମ୍ବାର୍କ, ବିଷ୍ଣୁସ୍ୱାମୀ ପ୍ରମୁଖ ପୁରୀଧାମରେ ସ୍ୱ ସ୍ୱ ... ର ପରିପ୍ରଚାର ଲାଗି ମଠ ସ୍ଥାପନ କରିଥିଲେ । ଏହିପରି ଏକ ଅନୁକୂଳ ପରିସ୍ଥିତିରେ ଜୟଦେବ ସ୍ୱପାଣ୍ଡିତ୍ୟ ତଥା ଅଲୌକିକ ପ୍ରତିଭାର ପ୍ରଦର୍ଶନ କରି ଗୀତଗୋବିନ୍ଦ ରଚନା କରିଥିଲେ । ମାଧବ ପଟ୍ଟନାୟକ ତାଙ୍କ ପୁସ୍ତକ 'ବୈଷ୍ଣବ ଲୀଳାମୃତ' ରେ ଏହି ମତ ପୋଷଣ କରିବା ସଙ୍ଗେ ସଙ୍ଗେ ରସ ଓ ସଂକୀର୍ତ୍ତନର

ବ୍ରାହ୍ମଣବଂଶୀ ଅବତାରପୂର୍ଣ୍ଣ,
ତେଥେଂ ଘେନଲା ଶ୍ରୀବ୍ୟାସେଂ ॥

ତୋନି ଜୟଦେବ କଵି ନେଂ କଵିନ,
ଶ୍ରୀ ଗୀତଗୋବିନ୍ଦ ଗ୍ରନ୍ଥ କେଲ୍ଲ ॥"

ବଙ୍ଗଳା କବି କୃଷ୍ଣଦାସ ଜୟଦେବଙ୍କ ସମ୍ବନ୍ଧରେ ଅନେକ ମନଗଢ଼ା ଅବାସ୍ତବ କଳ୍ପନା କରିଥିଲେ ହେଁ, ପ୍ରକୃତ ସତ୍ୟକୁ ଗୋପନ କରି ନ ପାରି ଲେଖିଛନ୍ତି—

"ଜୟଦେବ ମହାଶୟ ମହାନ୍ ମାନୁଷ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ ବୃକ୍ଷତଳେ ବାସ ॥
ଅଗାଧ ପାଣ୍ଡିତ୍ୟ ହୟ ଅତୁଲ ଭକ୍ତିମାନ ।
ଶ୍ରୀଜଗନ୍ନାଥ ପ୍ରଭୁର କୃପାର ଭାଜନ ॥"

ଉତ୍କଳୀୟ କବି ରାମଦାସ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ 'ଦାର୍ଢ୍ୟତା ଭକ୍ତି ରସାମୃତ', ଶୀର୍ଷକ ଯେଉଁ ପୁସ୍ତକଟି ଲେଖିଛନ୍ତି ସେଥିରେ ସେ ପ୍ରାୟ ପଚାଶଜଣ ଭକ୍ତଙ୍କ ଚରିତ ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରେ ଗୋଟିଏ ଅଧ୍ୟାୟ (୫୫ତମ ଅଧ୍ୟାୟ)ରେ ଜୟଦେବ ଚରିତ ଲେଖିଛନ୍ତି–

"ଜନମ କେନ୍ଦୁବିଲ୍ୱ ଗ୍ରାମେ । ବ୍ରାହ୍ମଣ ଜୟଦେବ ନାମେ ॥
ମହାପଣ୍ଡିତ ବିଷ୍ଣୁଭକ୍ତ । ଜିତ ଇନ୍ଦ୍ରିୟ ସୁବିନୀତ ॥

ବିରକ୍ତ ନିଃସଙ୍ଗ ଉଦାସୀ । ଶ୍ରୀକ୍ଷେତ୍ରେ ପରବେଶ ଆସି ॥
ଏକ ବୃକ୍ଷର ତଳେ ଥାଇ । ଶ୍ରୀଜଗନ୍ନାଥଙ୍କୁ ସେବଇ ॥
× × × ×
ରଚିଲ୍ଲ ଅପୂର୍ବ ପ୍ରବନ୍ଧ । ନାମ ଯା ଶ୍ରୀଗୀତଗୋବିନ୍ଦ ॥
ଶୁଣନ୍ତି ଆଜି ଯାଏ ନିତ୍ୟ । ତ୍ରିକାଳେ ଯାହା ଜଗନ୍ନାଥ ॥"

ଭକ୍ତକବି ରାମଦାସ ଦେବଶର୍ମାଙ୍କ କନ୍ୟାପ୍ରାପ୍ତି, ଜୟଦେବଙ୍କ ସହିତ ପଦ୍ମାବତୀର ବିବାହ, ଉତ୍କଳୀୟ ନରପତିଙ୍କ ରଚିତ ଗୀତଗୋବିନ୍ଦ (ଖୁବ୍ ସମ୍ଭବତଃ ଅଭିନବ ଗୀତଗୋବିନ୍ଦ)ର ଶ୍ରୀମନ୍ଦିରରେ ପ୍ରଚଳନ ଓ ଶ୍ରୀଜଗନ୍ନାଥଙ୍କ ଦ୍ୱାରା ଉକ୍ତ ପୁସ୍ତକର ପ୍ରତ୍ୟାଖ୍ୟାନ ପ୍ରଭୃତି ବହୁ ଉପାଖ୍ୟାନ ସେଥିରେ ବର୍ଣ୍ଣନା କରିଛନ୍ତି ।

ପ୍ରାଚୀନ କବିମାନଙ୍କ ବ୍ୟତୀତ ସାର ଉଇଲିୟମ ଜୋନ୍ସ ( Asiatic Researches Vol. III—1799 ) ମରାଠୀ ଗବେଷକ ହରିଦାସ ହୀରାଚନ୍ଦ ( 1864 ) ବଙ୍ଗଳାର ପ୍ରଖ୍ୟାତ ଆଲୋଚକ ଡକ୍ଟର ସୁକୁମାର ସେନ୍ ସ୍ୱର୍ଗତଃ ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ; ସଂସ୍କୃତ ସାହିତ୍ୟର ଇତିହାସ ପ୍ରଣେତା ବରଦାଚାରୀ; ସୁପ୍ରସିଦ୍ଧ ସଂସ୍କୃତଜ୍ଞ ସ୍ୱର୍ଗତଃ ଡକ୍ଟର ଜି: ରାଘବନ ପ୍ରଭୃତି ବିଦ୍ୱାନଙ୍କ ଦ୍ୱାରା ଏବଂ ଇଂଲଣ୍ଡର ଅକ୍ସଫୋର୍ଡ଼ସ୍ଥିତ ଓରିଏଣ୍ଟାଲ ଇନ୍ସ୍ଟିଚ୍ୟୁଟ୍‌ରେ ସଂରକ୍ଷିତ ତଥା ୧୭୯୪ ଖ୍ରୀଷ୍ଟାବ୍ଦରେ ଲିଖିତ ପୋଥିରେ ଜୟଦେବ ଉତ୍କଳୀୟ ତଥା ପ୍ରାଚୀନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ ବା କେନ୍ଦୁଳୀ ଶାସନର ଅଧିବାସୀରୂପେ ସ୍ୱୀକୃତ ହୋଇଛନ୍ତି ।

ଏ ସମସ୍ତ ପ୍ରକାର ଉପାଦାନଠାରୁ ଅଧିକ ମୂଲ୍ୟବାନ୍ ଉପାଦାନ ହେଉଛି—ମାଧବ ପଟ୍ଟନାୟକଙ୍କ ରଚିତ ଭକ୍ତିଗ୍ରନ୍ଥ ବୈଷ୍ଣବ ଲୀଳାମୃତ' । ସମ୍ବଲପୁର ବିଶ୍ୱବିଦ୍ୟାଳୟର ମୁଖ୍ୟ ଅଧ୍ୟାପକ ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ଦ୍ୱାରା ଦୁଇଖଣ୍ଡ "ବୈଷ୍ଣବ ଲୀଳାମୃତ" ଗ୍ରନ୍ଥରେ ବୈଷ୍ଣବମାନଙ୍କ ଚରିତର ଅବତାରଣ କରାଯାଇଛି । ଉକ୍ତ ଗ୍ରନ୍ଥଟି ପ୍ରତାପରୁଦ୍ର ଦେବଙ୍କ ୪୮ ଅଙ୍କ ବା ଖ୍ରୀ : ଅ: ୧୫୩୬ ସାଲରେ ଲିଖିତ । ଗ୍ରନ୍ଥଟି ନଅ ଗୋଟି ଅଧ୍ୟାୟରେ ବିଭକ୍ତ । ସେହି ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟରେ ଜୟଦେବଙ୍କ ଚରିତ ବର୍ଣ୍ଣନା କରାଯାଇଛି ।

"ବିପ୍ର ସେ ଜୟଦେବ ନାମ,
କ୍ଷେତ୍ରବରକୁ ଆଗମନ । ୫୬ ପଦ

କେନ୍ଦୁଳି ଶାସନ ତା ଗ୍ରାମ,
ପ୍ରାଚୀନଦୀର ତଟେ ପୁଣ । ୫୭

ନୀଥାନୀ ମାଧବ ସମୀପେ,
ଭକତି କଲା ନାନାରୂପେ । ୫୮
ଶାସ୍ତ୍ର ପୁରାଣେ ବିଚକ୍ଷଣ,
କବିତ୍ୱ ମାର୍ଗେ ତାର ମନ । ୫୯

ଗୀତ ସେ ରଚିବି ବୋଇଲ,
କ୍ଷେତ୍ରବାସକୁ ମନ ଦେଲା । ୬୦

ଶ୍ରୀଜଗନ୍ନାଥର ସମୀପେ,
ଶୁଦ୍ଧ ସାତ୍ତ୍ୱିକ ମତି ଭାବେ । ୬୧

× × ×

ଗୀତଗୋବିନ୍ଦ ନାଟ ସେବା,
ମନ୍ଦିରେ ପ୍ରତ୍ୟହ ହୋଇବା ।

ରାଜା ସେ ସେବା ଭିଆଇଲ୍ଲ । କେନ୍ଦୁଳୀ ଶାଢ଼ୀ ଯୋଗାଇଲ୍ଲ ॥
ଶ୍ରୀ ଗୀତଗୋବିନ୍ଦ ରାସ ଏ । ଶ୍ରୀଜଗନ୍ନାଥର ପ୍ରିୟ ଏ ॥
ବୋଲି କଲକ ଏ ଭିଆଣ । ଭଗତେ ହେଲେ ତୋଷମନ ॥

× × ×

ଗୀତଗୋବନ୍ଦ ନାଟ ପୁଣ । ନାଟ ମନ୍ଦିର କଲ୍ଲ ଭିଆଣ ॥
ରାହାସ ନୃତ୍ୟର ନିମିତ୍ତ । ଗୀତଗୋବିନ୍ଦ କଲେ ନୃତ୍ୟ ॥
ଭୀମଦେବର ଏ କୀରତି । କାଳେସେ ଗଲ୍ଲ କୀର୍ତ୍ତି ଥାପି ॥"

(ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ଓ ସମୟ
କଲିକତାରୁ ପ୍ରକାଶିତ ଓଡ଼ିଆ ପତ୍ରିକା 'ପ୍ରତିବେଶୀ'–ସ୍ୱନକ୍ଷତ୍ର ସଂଖ୍ୟା)

ପରିଶେଷରେ କବି ମାଧବ ପଟ୍ଟନାୟକ ଗ୍ରନ୍ଥ ରଚନାର ସମୟ ଓ ତାଙ୍କ ଅନ୍ୟ ରଚନା ସଂପର୍କରେ ସୂଚନା ଦେଇ ଲେଖିଛନ୍ତି–

"ରାଜାର ଅଙ୍କ ଚଉବିଂଶେ ।
ରଚିଲି ଚୈତନ୍ୟ ବିଳାସେ ॥

"ଏକାମ୍ରକାନନାତ୍ ପୂର୍ବେ ଯୋଜନାତ୍ରେ ମହୀପତେ ।
ନାମ୍ନା ପ୍ରାଚୀତି ବିଖ୍ୟାତା ସରିଦାତ୍ରେ ସରସ୍ୱତୀ
ପ୍ରାଚ୍ୟାଂଦିଶି ମହେଶସ୍ୟ ଯତ୍ରସ୍ୟାତ୍ ସାଗରଙ୍ଗମା,
କ୍ରୋଶେ କ୍ରୋଶେ ତଟେଲିଙ୍ଗଂତତଃ ପ୍ରାଚୀସରସ୍ୱତୀ"

ଏହି ପ୍ରାଚୀନଦୀ ତଟରେ ମୁଦ୍ରେଶ୍ୱର, ନାଟେଶ୍ୱର, ସିଦ୍ଧେଶ୍ୱର ତଥା ସୁଦର୍ଶନ ତୀର୍ଥ, ଅପ୍‌ସରାତୀର୍ଥ, ଚକ୍ରତୀର୍ଥ, ବିଶ୍ୱାମିତ୍ରତୀର୍ଥ ଆଦି ରହିଥିବାର ବର୍ଣ୍ଣନା ପ୍ରାଚୀମାହାତ୍ମ୍ୟରୁ ମିଳିଥାଏ । ଏହି ପ୍ରାଚୀ ଉପତ୍ୟକା କେବଳ ଯେ ଶୈବ, ଶାକ୍ତ ସଂସ୍କୃତିରେ ସମୃଦ୍ଧ ତାହା ନୁହେଁ, ବୈଷ୍ଣବ ସଂସ୍କୃତିରେ ମଧ୍ୟ ସେ ସ୍ଥାନଟି ସମୃଦ୍ଧ ହୋଇଛି । କେନ୍ଦୁଳୀ ଗ୍ରାମଠାରୁ ଅଦୂରରେ ଅବସ୍ଥିତ ନୀଆଳୀଗ୍ରାମର ଶୋଭନେଶ୍ୱର ମନ୍ଦିର ବେଢ଼ାରେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଗୋଟିଏ ଗୃହ ନିର୍ମାଣ କରାଯାଇ ସେହି ଅଞ୍ଚଳରୁ ମିଳିଥିବା ଆଠଗୋଟି ମାଧବ ମୂର୍ତ୍ତି ସଂରକ୍ଷିତ ହୋଇଛି । ସେଗୁଡ଼ିକ ଶଂଖ, ଚକ୍ର, ଗଦା, ପଦ୍ମଧାରୀ । ତନ୍ମଧ୍ୟରୁ ଗୋଟିଏ ମାଧବ ମୂର୍ତ୍ତିରେ ଉପାସିକାରୂପେ ଦୁଇପାର୍ଶ୍ୱରେ କେତୋଟି ନାରୀମୂର୍ତ୍ତି ଥିବାରୁ, ତାହାକୁ ଗୋପୀ ଉପାସିତ ମାଧବ ମୂର୍ତ୍ତି ବୋଲି କୁହାଯାଉଛି । ତଦ୍‌ବ୍ୟତୀତ କେନ୍ଦୁଳୀର ମାଧବ (ଅଧୁନାଲୁପ୍ତ) ପ୍ରାଚୀନଦୀ ତଟରେ ଅବସ୍ଥିତ ଦ୍ୱାଦଶ ମାଧବ, ତ୍ରିବେଣୀ ସଂଗମ ସ୍ଥଳରେ ତ୍ରିବେଣୀମାଧବ, ସୁଆଗପୁରର ମାଧବ, ମାଧବାନନ୍ଦ ମାଧବ । ପିତପଦାର ମାଧବ, କୃଷ୍ଣପ୍ରସାଦର ମାଧବ ପ୍ରଭୃତି ବିଗ୍ରହ ଏବଂ କେନ୍ଦୁଳୀର ଆଖପାଖ ଅଞ୍ଚଳରେ ଥିବା ନୃସିଂହ ବିଗ୍ରହ, ବରାହ, ଲକ୍ଷ୍ମୀନାରାୟଣ, ବାଲିଅନ୍ତାର ନିକୁଞ୍ଜବିହାରୀ, ବାଙ୍କୋଟିର ମଦନମୋହନ, ସରକଣାର ଗୋପୀନାଥ, ନୃସିଂହ ଓ ତ୍ରିବିକ୍ରମ, ଗାରେଡ଼ି ପାଞ୍ଚଣର ଅନନ୍ତବାସୁଦେବ ଓ ମାଧବ, ବିଷ୍ଣୁପୁରର ସୋମେଶ୍ୱରଦେବଙ୍କ ମନ୍ଦିରର ଗର୍ଭଗୃହରେ ଅଷ୍ଟଦଳପଦ୍ମ ଉପରେ ଗୋପୀକୃଷ୍ଣ ଓ ମାଧବ ପ୍ରଭୃତି ପ୍ରାଚୀ ଉପତ୍ୟକାରେ ବୈଷ୍ଣବୀ-ସଂସ୍କୃତିର ସୂଚନା ଦେଇଥାଏ । ଏହି ପରିବେଶ ମଧ୍ୟରେ କେନ୍ଦୁଳୀ ଶାସନରେ ଶ୍ରୀଜୟଦେବ ଜନ୍ମଗ୍ରହଣକରି ରାଧାମାଧବ ଉପାସନା ଆରମ୍ଭ କରିବା ସଙ୍ଗେ ସଙ୍ଗେ ଗୀତଗୋବିନ୍ଦ ମହାକାବ୍ୟର ରଚନାକରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅର୍ପଣ କରିଥିଲେ ।

ଜୟଦେବଙ୍କ ସମୟ ଅର୍ଥାତ୍ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ମାଧବ ଉପାସନାର ଭିତ୍ତିଭୂମି ସୁଦୃଢ଼ ଥିବାର ପ୍ରମାଣ ମିଳେ ।

ଖ୍ରୀଷ୍ଟୀୟ ଷଷ୍ଠ ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ ବଂଶୀୟ ନରପତି ମାଧବରାଜଙ୍କର ଗୋଟିଏ ଶିଳାଲେଖାରେ ଚକ୍ରଧର-ଭଗବାନ୍ ମାଧବ (ପ୍ରବ୍ରତ ଚକ୍ର ଚକ୍ରଧରଭବ ଭଗବାନ୍ ମାଧବଃ ମାଧବରାଜ କୁଶଳୀ) । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଭୌମକର ରାଜବଂଶ ସମୟରେ ପ୍ରଖ୍ୟାତି ଅର୍ଜନ କରିଥିବା ବୈତରଣୀ ଉପତ୍ୟକା ବିଶେଷତଃ ବିରଜାମଣ୍ଡଳର ମାହାତ୍ମ୍ୟ ପ୍ରସଙ୍ଗରେ ଲିଖିତ 'ବିରଜା-ମାହାତ୍ମ୍ୟ' ପୁସ୍ତକରେ ବର୍ଣ୍ଣିତ ଆଦି ମାଧବ, ଅନନ୍ତ ମାଧବ, ପୁରୁଷୋତ୍ତମ ମାଧବ, ସୁଦର୍ଶନ ମାଧବ, ଜନାର୍ଦ୍ଦନ ମାଧବ, ନରକାନ୍ତକ ମାଧବ, ବାସୁଦେବ ମାଧବ, ଗୋବିନ୍ଦ ମାଧବ ଖ୍ରୀଷ୍ଟୀୟ ନବମ ଦଶମ ଶତାବ୍ଦୀର ମାଧବ ବିଗ୍ରହବୋଲି ସ୍ୱର୍ଗୀୟ କେଦାରନାଥ ମହାପାତ୍ର ମତ ଦିଅନ୍ତି ।

ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ପ୍ରତିଷ୍ଠିତ ଫୁଲବାଣୀ ଜିଲ୍ଲା ବୌଦ୍ଧ ସହରଠାରୁ ପ୍ରାୟ ଆଠମାଇଲ ଦୂରବର୍ତ୍ତୀ ଗନ୍ଧରାଡ଼ିର ମାଧବ, ଶତ୍ରୁଭଂଜଦେବ ତ୍ରିଭୁବନ କଳସଙ୍କ ଦଶପଲ୍ଲା ତାମ୍ର ଶାସନରେ (ଓ. ଏଚ୍. ଆର. ଜେ. ଭଲ୍ୟୁମ ଏକ) ବର୍ଣ୍ଣିତ ସଲୋନ ମାଧବ ଖ୍ରୀଷ୍ଟାବ୍ଦ ୮୧୨) ଶ୍ୱେତକର ଇନ୍ଦ୍ରବର୍ମନଙ୍କ ସାନକେମୁଣ୍ଡି ତାମ୍ରଶାସନରେ ବର୍ଣ୍ଣିତ ଲୋକମାଧବ (ଇନ୍‌ସ୍କ୍ରିପ୍‌ସନ୍‌ସ ଅଫ୍ ଓଡ଼ିଶା, ଭଲ୍ୟୁମ ଦୁଇ), ଶ୍ରୀକାକୁଲମ ଜିଲ୍ଲା ଗେଲିବାରସ ଗ୍ରାମର ସ୍ତମ୍ଭଲେଖରେ ଥିବା ଶ୍ୱେତଗଂଗ ମାଧବ (ଖ୍ରୀଷ୍ଟାବ୍ଦ ୧୧୫୩, ଇନ୍‌ସ୍କ୍ରିପସନ୍‌ସ ଅଫ୍ ଓଡ଼ିଶା ଭଲ୍ୟୁମ୍ ତିନି, ପାର୍ଟ ଦୁଇ) କଣ୍ଟିଲୋର ନୀଳମାଧବ, ପୁରୀଧାମର ଶ୍ୱେତଗଂଗା କୂଳରେ ପୂଜିତ ଶ୍ୱେତମାଧବ (ଖ୍ରୀ: ମା: ୧୧ଶ ଶତାବ୍ଦୀ) ପ୍ରଭୃତି ମାଧବ ବିଗ୍ରହର ଉପାସନା କବି ଜୟଦେବଙ୍କ ରାଧାମାଧବ ଉପାସନା ନିମିତ୍ତ ସହାୟକ ହୋଇଥିବାର ଅନୁମାନ ଆଦୌ ଅସମୀଚୀନ ନୁହେଁ । ଓଡ଼ିଶାରେ ମାଧବ ଉପାସନାର ପରମ୍ପରା ଓ କେନ୍ଦୁବିଲ୍ୱ ତଥା ପ୍ରାଚୀ ଉପତ୍ୟକାର ବୈଷ୍ଣବୀ ସଂସ୍କୃତି ବିଶେଷତଃ ମାଧବ ଉପାସନା ଶ୍ରୀ ଜୟଦେବଙ୍କୁ ରାଧାମାଧବ ଉପାସନା ଓ ତାଙ୍କ ଗୁଣବର୍ଣ୍ଣନାକରି କାବ୍ୟରଚନାରେ ଉପାଦାନ ଯୋଗାଇଥିଲା ।

ଆହୁରିମଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଉପାସନା ସମ୍ବନ୍ଧୀୟ ଗ୍ରନ୍ଥ ନୀଳାଦ୍ରୀ ମହୋଦୟରୁ ଜଣାଯାଏ ଯେ, ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥଙ୍କୁ ମାଧବରୂପେ ଉପାସନା କରୁଥିଲେ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ସପ୍ତଧା ମୂର୍ତ୍ତିରୂପେ ସେ ଯେଉଁ ଉପାସନା କରୁଥିଲେ ସେ ସାତୋଟି ବିଗ୍ରହ ହେଉଛନ୍ତି– ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ, ମାଧବ, ଭୂଦେବୀ ଓ ଶ୍ରୀଦେବୀ । ଶ୍ରୀ ଜୟଦେବ ମହାପ୍ରଭୁ ଜଗନ୍ନାଥଙ୍କୁ ମାଧବ ବା ରାଧାମାଧବଙ୍କ ସମ୍ମିଳିତ ବିଗ୍ରହରୂପେ କଳ୍ପନା କରି ତାଙ୍କ ଲୀଳାଗାନରେ ଗୀତଗୋବିନ୍ଦ କାବ୍ୟଟିକୁ ରଚନା କରିଛନ୍ତି ।

ଜୟଦେବ ଉତ୍କଳର କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମ ଗ୍ରହଣକରି ଶ୍ରୀକ୍ଷେତ୍ରର ଅଧିଷ୍ଠିତ ବିଗ୍ରହ ଶ୍ରୀଜଗନ୍ନାଥଙ୍କ ଉପାସନାରେ ନିରତ ଥାଇ ଗୀତଗୋବିନ୍ଦ ରଚନା କରିଥିବାର ପ୍ରମାଣ ମୈଥିଳ ପଣ୍ଡିତ ଚନ୍ଦ୍ରଦତ୍ତଙ୍କ ଭକ୍ତମାଳା ପୁସ୍ତକରେ ଦେଖିବାକୁ ମିଳେ ।

"ଜଗନ୍ନାଥ ପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ ।
କିନ୍ଦୁବିଲ୍ୱ ଇତି ଖ୍ୟାତଃ ଗ୍ରାମଃ ବ୍ରାହ୍ମଣସଙ୍କୁଳଃ ॥
ତତ୍ରୋତ୍କଳେ ଦ୍ୱିଜୋ ଜାତଃ ଜୟଦେବ ଇତି ଶ୍ରୁତଃ ।
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମପୂଜକଃ ॥
× × ×
ନିର୍ମାୟ ଗୀତଗୋବିନ୍ଦଂ ପୁସ୍ତକଂ ପୁରୁଷୋତ୍ତମେ ।
ନିବେଦ୍ୟ କୃତ କୃତ୍ୟୋଽଭୂତ୍ ଜୟଦେବ ମହାମନାଃ ॥"

କେବଳ ଚନ୍ଦ୍ରଦତ୍ତ ନୁହନ୍ତି–ବିକ୍ରମ ସମ୍ବତ୍ ୧୭୬୯ ବା ଖ୍ରୀ: ଅ: ୧୭୧୨ରେ ରଚିତ ପ୍ରିୟାଦାସଙ୍କ 'ଭକ୍ତମାଳା' ଟୀକାରେ ଜୟଦେବ କେନ୍ଦୁବିଲ୍ୱରେ ଜନ୍ମଗ୍ରହଣ କରିଥିବାର ଉଲ୍ଲେଖ ରହିଛି । ଶକାବ୍ଦ ୧୬୮୪ ବା ଖ୍ରୀ: ଅ: ୧୭୬୨ରେ ରଚିତ ମରାଠୀ କବିଙ୍କ 'ଭକ୍ତବିଜୟ' ପୁସ୍ତକରେ ରହିଛି–

"ଜଗନ୍ନାଥ କ୍ଷେତ୍ର ସମୀପ ଜାଣ,
କେନ୍ଦୁବିଲ୍ୱ ନାମ ଗ୍ରାମାଭିଧାନ ॥

ଯଥା–ନାରାୟଣ ଦାସ, ଧନଞ୍ଜୟ ବିପ୍ର, ଲକ୍ଷ୍ମଣ ଭଟ୍ଟ ଏବଂ ଓଡ଼ିଆ ଅନୁବାଦକ ଧରଣୀଧର, ଉଦ୍ଧବ ଦାସ, ବଜରୀ ଦାସ ପ୍ରଭୃତି ପଦ୍ମାବତୀ ଜୟଦେବଙ୍କ ପତ୍ନୀ ଥିବାର ଅର୍ଥ କରିଛନ୍ତି । ସେହି ଟୀକାକାରଙ୍କ ମତରେ ପଦ୍ମାବତୀଙ୍କ ଚରଣ ଯୁଗଳକୁ ସେ ନୃତ୍ୟଛନ୍ଦରେ ଚକ୍ରବତ୍ ଭ୍ରମଣ କରାଉଥିବାର ଇଙ୍ଗିତ ଦେଇଛନ୍ତି ।

"ପଦ୍ମାବତୀ ଜୟଦେବସ୍ୟ ପତ୍ନୀ ତସ୍ୟାଶ୍ଚରଣୌ ତଯୋଃ ସ୍ମରଣଂ ଚାଳନଞ୍ଚ ତତ୍ର ଚକ୍ରବର୍ତ୍ତୀ ମୁଖ୍ୟଃ । ପରମେଶ୍ୱରସ୍ୟାଗ୍ରେ ସ୍ୱକାନ୍ତାଂ ପଦ୍ମାବତୀଂ ସ୍ୱୟମେବ ନର୍ତ୍ତୟତୀତ୍ୟଭିପ୍ରାୟଃ ।"

"ଯେ ପଦ୍ମାବତୀ ନାମ କହି । ତାହାଙ୍କ ଭାରିଜା ଅଟଇ ॥
ଚରଣେ ଅଛଇ ତାହାର । ନୂପୁର ବର ମନୋହର ॥
ତାହା ସେ ଦ୍ରୁତ କରିବାରେ । ଚକ୍ରବର୍ତ୍ତୀ ବୋଲିଟି ତାରେ" ॥
(ବଜରୀ ଦାସ)

ଆହୁରି ମଧ୍ୟ ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଜୟଦେବ ଯେତେବେଳେ ବାସୁଦେବଙ୍କ ରତି କେଳୀ କଥା'ର ବର୍ଣ୍ଣନା କରିବାକୁ ଯାଇଛନ୍ତି । ସେତେବେଳେ ଶୃଙ୍ଗାରୀ ଚିନ୍ତାରେ ଆପ୍ଲୁତ ହୋଇଥିବା ଅତ୍ୟନ୍ତ ଯୁକ୍ତିଯୁକ୍ତ ।

ଟୀକାକାର ଧନଞ୍ଜୟ ବିପ୍ର ସେଇଥିପାଇଁ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି–"ପଦ୍ମାବତୀ ଶବ୍ଦେନ ସ୍ୱପ୍ରିୟା ନାମ ପାଦ-ପତନାତ୍ କବେଃ ଶୃଙ୍ଗାରିତ୍ୱ ସୂଚନେନ କାବ୍ୟେଽପି ଶୃଙ୍ଗାରୋ-ତ୍କର୍ଷ ଆକ୍ଷିପ୍ତଃ" ।

"ଶୃଙ୍ଗାରୀ ଚେତ୍ କବିଃ କାବ୍ୟଂ
ଜାତଂ ରସମୟଂ ଜଗତ୍ ।
ସ ଏବ ଚେଦଶୃଙ୍ଗାରୀ
ନୀରସଂ ସର୍ବମେବ ତତ୍ ॥

ଏହି ସମସ୍ତ ଉଦାହରଣରୁ ସ୍ପଷ୍ଟ ହୁଏ ଯେ, ତାଙ୍କ ପ୍ରାଣ ପ୍ରିୟା ପତ୍ନୀଙ୍କ ନାମ ଥିଲା–ପଦ୍ମାବତୀ ।

ଜୟଦେବଙ୍କ ଗୀତଗୋବିନ୍ଦରୁ କେବଳ ତିନୋଟି ନାମ ଯଥା–ଭୋଜଦେବ, ରାଧାଦେବୀ ଅଥବା ବାମାଦେବୀ ଓ ପରାଶରଙ୍କ ନାମ ବ୍ୟତୀତ ଅନ୍ୟ କୌଣସି ନାମର ଉଲ୍ଲେଖ ମିଳେ ନାହିଁ । ଅବଶ୍ୟ ସ୍ୱର୍ଗତଃ ଚକ୍ରଧର ମହାପାତ୍ର ସ୍ୱରଚିତ 'ଜୟଦେବ' ପୁସ୍ତକରେ କଳାବତୀ ମାଳିନୀ ପ୍ରଭୃତି କେତୋଟି ବିଶେଷଣ ସୂଚକ ପଦରେ ବ୍ୟକ୍ତିତ୍ୱାରୋପ କରିଛନ୍ତି–

ବାସସ୍ଥାନ—

କବି ଜୟଦେବ ଗୀତଗୋବିନ୍ଦରେ ନିଜ ବାସସ୍ଥାନ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି –

"ବର୍ଣ୍ଣିତଂ ଜୟଦେବକେନ ହରେରିଦଂ ପ୍ରଣତେନ ।
କେନ୍ଦୁବିଲ୍ୱ ସମୁଦ୍ରସମ୍ଭବ ରୋହିଣୀରମଣେନ " ।

ଅର୍ଥାତ୍ କେନ୍ଦୁବିଲ୍ୱ ହେଉଛି ସମୁଦ୍ର, ସେଥିରୁ ଜାତ ହୋଇଥିବା ରୋହିଣୀରମଣ ବା ଚଂଦ୍ର ସଦୃଶ ଜୟଦେବ ।

ଏହି କେନ୍ଦୁବିଲ୍ୱ ସମୁଦ୍ରସମ୍ଭବ ରୋହିଣୀରମଣେନ' ପଦଟିକୁ ଟୀକା କରିବାନୁସାର ଗୀତଗୋବିନ୍ଦର ପ୍ରସିଦ୍ଧ ଟୀକାକାର ନାରାୟଣ ଦାସ ଲେଖିଛନ୍ତି "କେନ୍ଦୁବିଲ୍ୱାଖ୍ୟଂ ଶାସନଂ ତଦ ମହତ୍ୱାତ୍ ସମୁଦ୍ରତ୍ୱେନ ରୂପିତଂ ✿✿ କେନ୍ଦୁବିଲ୍ୱ ଶାସନାଜ୍ଜାତ-ସ୍ତତ୍ସୋବ ଉକ୍ତଂ କାରଣଃ ।"

ରାଣା କୁମ୍ଭଙ୍କ ରସିକପ୍ରିୟା ଟୀକାରେ ମଧ୍ୟ ଉଲ୍ଲେଖ ରହିଛି–

"କେନ୍ଦୁବିଲ୍ୱଂ ତନ୍ନାମକଂ ନିବାସୋ ବା ଗ୍ରାମଃ ସମୁଦ୍ର ଇବ ତଜ୍ଜନ୍ମଃ ରୋହିଣୀରମଣେବ ଚନ୍ଦ୍ରେଣେବ "

ସ୍ୱର୍ଗତଃ କେଦାରନାଥ ମହାପାତ୍ର ସ୍ୱରଚିତ "ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ" ପୁସ୍ତକରେ କେନ୍ଦୁବିଲ୍ୱର ନାମକରଣ ସଂପର୍କରେ ଯୁକ୍ତି ଦର୍ଶାଇ କହିଛନ୍ତି ଯେ, କେନ୍ଦୁବିଲ୍ୱ ନାମ-କରଣଟି କେନ୍ଦୁ ଓ ବିଲ୍ୱରୁ ସମ୍ଭୂତ ହୋଇଛି । ସେହି ଅଞ୍ଚଳରେ ପ୍ରଚୁର ପରିମାଣରେ କେନ୍ଦୁ ଓ ବେଲଗଛ ରହିଥିବାରୁ ସେହି ଗ୍ରାମଟିର ନାମ କେନ୍ଦୁବିଲ୍ୱ ହୋଇଛି । କେବଳ କେନ୍ଦୁବିଲ୍ୱ ନୁହେଁ ବୃକ୍ଷର ନାମାନୁସାରେ କେନ୍ଦୁଝର, କେନ୍ଦୁପାଟନା, କେନ୍ଦୁଝୁଣ୍ଡା, ତୁଳସୀପୁର, ଶାଳବଣିଆ, ଶାଳଗାଁ, ବେତନଟି, ତୁଳସୀପୁର, ମନ୍ଦାରବସ୍ତ, ତାଳପଦା, ଚଂପାପୁର, ତାଳଚେର ପ୍ରଭୃତି ଶହଶହ ଗ୍ରାମ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଥିବାର ଦେଖାଯାଏ ।

କେନ୍ଦୁବିଲ୍ୱ ଗ୍ରାମଟି ପ୍ରାଚୀ ନଦୀର ତଟବର୍ତ୍ତୀ ଗୋଟିଏ ବିରାଟ ଗ୍ରାମ । ଏଠାରେ ବହୁ ବ୍ରାହ୍ମଣ ବସତି ରହିଥିବାରୁ କେନ୍ଦୁବିଲ୍ୱ ଶାସନ' ପ୍ରତିଷ୍ଠିତ ହୋଇଥିଲା । ବହୁ ଗୋତ୍ରଜ, ବହୁ ପଦବୀଧାରୀ ତଥା ବହୁ ଶାଖା ଅଧ୍ୟୟନ କରୁଥିବା ବ୍ରାହ୍ମଣମାନଙ୍କୁ ଗୋଟିଏ ସ୍ଥାନରେ ରଖାଇ ପ୍ରାଚୀନ ରାଜାମାନେ ଗୋଟିଏ ଗୋଟିଏ ଶାସନ ବସାଉଥିଲେ । କେନ୍ଦୁବିଲ୍ୱ ଶାସନଟି ବିରାଟ ଗ୍ରାମ ହୋଇଥିବାରୁ ଜୟଦେବ ସ୍ୱଗ୍ରାମକୁ ସମୁଦ୍ରତୁଲ୍ୟ କଳ୍ପନାକରି, ସେଠାକାର ଚନ୍ଦ୍ର ସଦୃଶ ନିଜକୁମନେ କରିଛନ୍ତି ।

ଯେଉଁ ପ୍ରାଚୀ ନଦୀ କୂଳରେ କେନ୍ଦୁବିଲ୍ୱ ବା କେନ୍ଦୁଳୀ ଅବସ୍ଥିତ ତାହା ମଧ୍ୟ ଏକ ପ୍ରାଚୀନ ନଦୀ ଏବଂ ଖ୍ରୀଷ୍ଟ ପୂର୍ବ ଶତାବ୍ଦୀରେ ସମ୍ରାଟ ଖାରବେଳଙ୍କଦ୍ୱାରା ଯେଉଁ ତନଶୁଳୀୟ ନାମକ ଜଳମାର୍ଗ ନିର୍ମିତ ହୋଇଥିଲା ତାହାହିଁ 'ପ୍ରାଚୀନାମରେ ନାମିତା ହୋଇଛି' । ଏପରି ଅନୁମାନ କରାଯିବାର କାରଣ ହେଉଛି–ପ୍ରାଚୀନଦୀ ଯେଉଁ ସ୍ଥାନରୁ କାଠଯୋଡ଼ୀ ନଦୀରୁ ଉଦ୍ଭବ ହୋଇଛି, ସେ ସ୍ଥାନଟିର ନାମ ତିନ୍‌ଶୁଳିଆ ବା ତ୍ରିଶୁଳିଆ । ସମ୍ରାଟ ଖାରବେଳ କଳିଙ୍ଗ ନଗରୀର ବିସ୍ତୃତ ପୂର୍ବାଞ୍ଚଳ ବା ସୁନାବ୍ୟା କରିବାପାଇଁ ଏହି ଜଳମାର୍ଗଟି ଖୋଦନ କରାଇ ପ୍ରଜାବର୍ଗର ବହୁବିଧ ଉନ୍ନତି ସାଧନ କରିଥିଲେ । ଏହି ନଦୀଟି ତିନ୍‌ଶୁଳିଆରୁ ନିର୍ଗତ ହୋଇ ବାରଙ୍ଗ, ଫୁଲନଖରା, ଭିଙ୍ଗାରପୁର, କେନ୍ଦୁବିଲ୍ୱ ଓ କାକଟପୁର ପ୍ରଭୃତି ଅଞ୍ଚଳଦେଇ ପୂର୍ବ ସାଗରରେ ବିଲୀନ ହୋଇଛି । କଳିଙ୍ଗନଗରୀର ପ୍ରାଚ୍ୟ ଭୂଭାଗରେ ଏହି ନଦୀ ପ୍ରବାହିତା ହୋଇଥିବାରୁ ଏହାର ନାମ 'ପ୍ରାଚୀ' ।

ପ୍ରାଚୀମାହାତ୍ମ୍ୟ ଶୀର୍ଷକ ଖଣ୍ଡିଏ ସଂସ୍କୃତ ପୁସ୍ତକରେ ପ୍ରାଚୀ ନଦୀର ବିସ୍ତୃତ ବର୍ଣ୍ଣନା କରାଯାଇଛି । କେବଳ ପ୍ରାଚୀ ସମ୍ବନ୍ଧରେ ଏତିକି କହିଲେ ଯଥେଷ୍ଟ ହେବ–

ଚତସର୍ବଂ ଜୟଦେବ ପଣ୍ଡିତ କବେ କୃଷ୍ଣୈକତାନାତ୍ମନଃ ସାନନ୍ଦାଃ ପରିଶୀଳୟନ୍ତୁ ସୁଧିୟଃ ଶ୍ରୀଗୀତଗୋବିନ୍ଦତଃ ।।"

## ଓଡ଼ିଶାରେ ଗୀତଗୋବିନ୍ଦର ଲୋକପ୍ରିୟତା

ଓଡ଼ିଶାର ବଡ଼ଠାକୁରଙ୍କ ଶ୍ରୀମନ୍ଦିରରେ ଗୀତଗୋବିନ୍ଦର ନିତ୍ୟ ସେବା ପ୍ରଚଳନ ହେବାପରେ ଏହାର ପ୍ରସାର ରାଜ୍ୟରେ ପରିବ୍ୟାପ୍ତ ହୋଇଥିଲା । କେବଳ ବିଷ୍ଣୁମନ୍ଦିର ନୁହେଁ, ଶିବ ଓ ଦୁର୍ଗାପୀଠରେ ମଧ୍ୟ ଗୀତଗୋବିନ୍ଦ ପାରାୟଣର ପରଂପରା ରହିଛି । କେନ୍ଦୁବିଲ୍ୱ ଗ୍ରାମ ନିକଟସ୍ଥ ମହୁଖଣ୍ଡା ଗ୍ରାମର 'ବିଳାସୁଣୀ' ମନ୍ଦିରର ବାସନ୍ତୀ ଦୁର୍ଗାପୂଜାର ନବରାତି ଉତ୍ସବ ଓ ଶାରଦୀୟା ଶୋଳପୂଜା ସମୟର ନିତ୍ୟ ସେବା ମଧ୍ୟରେ ଘଣ୍ଟିରେ ଗୀତଗୋବିନ୍ଦ ପାରାୟଣ ହେଉଛି । ସେହି ଗ୍ରାମର ସ୍ୱପ୍ନେଶ୍ୱର ଦେବଙ୍କ ମନ୍ଦିରରେ ମଧ୍ୟ ପ୍ରତିଦିନ ଗୀତଗୋବିନ୍ଦ ପାରାୟଣର ବ୍ୟବସ୍ଥା ଅଦ୍ୟାପି ରହିଛି । କାକଟପୁରର ଆଖଣ୍ଡଳେଶ୍ୱର, ବୁଧକେଶ୍ୱର ଓ ମଧୁକେଶ୍ୱର ଆଦି ଶିବମନ୍ଦିରମାନଙ୍କରେ ଗୀତଗୋବିନ୍ଦ ପାରାୟଣର ପରଂପରା ଅଦ୍ୟାପି ରହିଛି ବୋଲି ସେଠାକାର ଅଧିବାସୀମାନଙ୍କଠାରୁ ଜଣାଯାଏ ।

ଗୀତଗୋବିନ୍ଦର ଅନୁକରଣରେ କବିଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ଅଭିନବ ଗୀତଗୋବିନ୍ଦ, ରାୟ ରାମାନନ୍ଦ ପଟ୍ଟନାୟକଙ୍କ ଶ୍ରୀଜଗନ୍ନାଥ ବଲ୍ଲଭ, ନାରାୟଣ ଭଞ୍ଜଙ୍କ ରୁକ୍ମିଣୀ ପରିଣୟ, ରଘୁରାମ ଦାଶଙ୍କ ମୁକୁନ୍ଦବିଳାସ, ଅର୍ଗ୍ଗ ଚିତ୍ ନିତ୍ୟାନନ୍ଦଙ୍କ ଶିବ ଲୀଳାମୃତ ଓ ଶ୍ରୀକୃଷ୍ଣ ଲୀଳାମୃତ, ଶିତିକଣ୍ଠଙ୍କ ଗୀତ ସୀତାବଲ୍ଲଭ ପ୍ରଭୃତି ଅନେକଗୁଡ଼ିଏ ଗୀତକାବ୍ୟ ରଚିତ ହୋଇଛି । ତଦ୍ ବ୍ୟତୀତ ଶତଂଜୀବ ମିଶ୍ରଙ୍କ 'ପ୍ରମୁଦିତ ଗୋବିନ୍ଦ', ଜୀବଦେବାଚାର୍ଯ୍ୟଙ୍କ ପୁତ୍ର ଜୟଦେବ (ଦ୍ୱିତୀୟ)ଙ୍କ ବୈଷ୍ଣବାମୃତ ଗୋଷ୍ଠିରୂପକ, ଅନାଦି ମିଶ୍ରଙ୍କ କେଳିକଲ୍ଲୋଳିନୀ, ଭାସଗୋଷ୍ଠୀ ରୂପକ, ରାମଚନ୍ଦ୍ର ଖଡ୍ଗରାୟଙ୍କ ସଙ୍ଗୀତ ଚିନ୍ତାମଣି, ନରହରି ଚରିତ, କମଳଲୋଚନ ଖଡ୍ଗରାୟଙ୍କ ବ୍ରଜଯୁବବିଳାସ ପ୍ରଭୃତି କାବ୍ୟ ଗୀତଗୋବିନ୍ଦର ଅବଲମ୍ବନରେ ଓଡ଼ିଆ ବିଦ୍ୱାନ୍‌ଙ୍କ ଦ୍ୱାରା ଲିଖିତ ହୋଇଛି ।

ଗୀତଗୋବିନ୍ଦର ପ୍ରଥମ ଟୀକା 'ଭାବବିଭାବିନୀ'ର ପ୍ରଣେତା ହେଉଛନ୍ତି–ଜୟଦେବଙ୍କର ପ୍ରାୟ ସମସାମୟିକ ଉତ୍କଳୀୟ ପଣ୍ଡିତ ଉଦୟନାଚାର୍ଯ୍ୟ । ତତ୍ପରେ କବିରାଜ ନାରାୟଣ ଦାସ, ଲକ୍ଷ୍ମଣ ସୂରୀ, ଧନଞ୍ଜୟ ଦ୍ୱିଜ, ଲକ୍ଷ୍ମଣ ଭଟ୍ଟ ପ୍ରଭୃତି ବିଦ୍ୱାନ୍‌ମାନେ ଉତ୍କଳୀୟ ଭାବରେ ଓ ଉତ୍କଳରେ ଅବସ୍ଥାନ କରି ଗୀତଗୋବିନ୍ଦର ସଂସ୍କୃତ ଟୀକା କରିଛନ୍ତି ।

ଗୀତଗୋବିନ୍ଦର ଅବଲମ୍ବନରେ ବୃନ୍ଦାବନ ଦାସ, ଧରଣୀଧର, ଦୀନକୃଷ୍ଣ ଦାସ, ଉଦ୍ଧବ ଦାସ, ଜଗନ୍ନାଥ ମିଶ୍ର, ବଳରୀ ଦାସ, ବାସୁଦେବ ମିଶ୍ର, ପିଣ୍ଡିକ ଶ୍ରୀଚନ୍ଦନ, ଗୋପୀନାଥ ଧୀର, ଶ୍ୟାମସୁନ୍ଦର ଭଞ୍ଜ, ଗୌରହରି ପରିଛା, ପଟିଆରାଜା ଦିବ୍ୟସିଂହ ଦେବ ପ୍ରଭୃତି ବହୁ ଉତ୍କଳୀୟ କବି ସ୍ୱତନ୍ତ୍ର ଟୀକା ରଚନା କରିଛନ୍ତି ।

ଗୀତଗୋବିନ୍ଦରେ ପ୍ରଦତ୍ତ ରାଗରାଗିଣୀ ଦ୍ୱାରା ପ୍ରଭାବିତ ହୋ[...] ଓଡ଼ିଆ କବି ଓ କୋବିଦମାନେ ଶହ ଶହ ରାଗରାଗିଣୀ ସୃଷ୍ଟିକ[...] କାବ୍ୟକବିତାଦି ରଚନା କରିଥିବାର ଦୃଷ୍ଟାନ୍ତ ଆଦୌ ବିରଳ ନୁହେଁ[...]

ଗୀତଗୋବିନ୍ଦର ବିଷୟ ବସ୍ତୁକୁ ଆଧାର କରି ଓଡ଼ିଶାରେ ଶ[...] ଶହ କୃଷ୍ଣକାବ୍ୟ, ଖଣ୍ଡକାବ୍ୟ, ଚଉପଦୀ ପ୍ରଭୃତି ରଚିତ ହୋଇଛି[...] ଓଡ଼ିଶାର ପୁରପଲ୍ଲୀରୁ ସଂଗୃହୀତ ପ୍ରାୟ ପାଞ୍ଚଶହ ଗୀତଗୋବି[...] ପୋଥି ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । ଗୀତ[...] ଗୋବିନ୍ଦର କଥାବସ୍ତୁ ଅବଲମ୍ବନରେ ସଚିତ୍ର ଗୀତଗୋବିନ୍ଦ ପୋଥି[...] କେବଳ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଯେ ସଂରକ୍ଷିତ ହୋଇଛି[...] ତା' ନୁହେଁ, ସମଗ୍ର ଭାରତ ବର୍ଷର ବିଭିନ୍ନ ସଂଗ୍ରହାଳୟରେ[...] ଓଡ଼ିଆ ଶିଳ୍ପୀଙ୍କ ଦ୍ୱାରା ପ୍ରସ୍ତୁତ ଶତାଧିକ ଚିତ୍ରିତ ଗୀତ[...] ଗୋବିନ୍ଦ ପୋଥି ସଂରକ୍ଷିତ ହୋଇଛି ।

ଗୀତଗୋବିନ୍ଦରେ ବର୍ଣ୍ଣିତ ଦଶାବତାର ସମ୍ବଳିତ କୃଷ୍[...] ବିଷ୍ଣୁ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟର ପ୍ରତ୍ନତତ୍ତ୍ୱ ବିଭାଗରେ[...] ପ୍ରଦର୍ଶିତ ହୋଇଛି ।

ଜୟଦେବ ଖଣ୍ଡିଏ କ୍ଷୁଦ୍ର କାବ୍ୟ ରଚନା କରିଥିଲେ ହେଁ[...] ତାର ପ୍ରଭାବ ସମଗ୍ର ବିଶ୍ୱରେ ବ୍ୟାପ୍ତ ହୋଇଛି । ଜଗଦ୍ଧର[...] ପ୍ରଭୃତି ଭାରତୀୟ ବିଦ୍ୱାନମାନେ ଗୀତଗୋବିନ୍ଦର ଟୀକା ରଚନା କରିଛନ୍ତି ଏବଂ ଗୀତଗୋବିନ୍ଦ ପରି ଗୀତ କାବ୍ୟର ରଚନାରେ ବହୁ ଭାରତୀୟ ବିଦ୍ୱାନ ପ୍ରୟାସ କରି, ଗୀତ ଗିରୀଶ, ଗୀତ ଶଙ୍କର, ଗୀତ ଗୋପୀପତି ପ୍ରଭୃତି ପୁସ୍ତକ ରଚନା କରିଛନ୍ତି ।

ଗୀତ ଗୋବିନ୍ଦ ଭାରତୀୟ ବିଦ୍ୱତ୍ ସମାଜରେ ଚହଳ ସୃଷ୍ଟି କରିଥିବାରୁ ଜୟଦେବଙ୍କୁ ନିଜ ଅଞ୍ଚଳର କବିରୂପେ ଅଳୀକ ଦାବୀମାନ ଉପସ୍ଥାପିତ ହେବା ସଙ୍ଗେ ସଙ୍ଗେ କାବ୍ୟର ଶ୍ଳୋକଗୁଡ଼ିକ ମଧ୍ୟରେ କେତେକ ପ୍ରକ୍ଷିପ୍ତ ଶ୍ଳୋକ ମିଶିଯାଇଛି । କିନ୍ତୁ ଉତ୍କଳୀୟ ପରମ୍ପରା ହେଉଛି–

"ଗାଥା ଚବିଶ ଶ୍ଳୋକ ବାଆସୋରୀ,  
ସର୍ଗ ଦ୍ୱାଦଶ ବର୍ଣ୍ଣ ଆଦିକରି ।"

କିମ୍ବା

ଚୌବିଶ ଗାଥା ଗୀତ ମତେ ।  
ବାସ୍ତରୀ ଶୋଳକ ସହିତେ ।।

ଜୟଦେବ ଉତ୍କଳୀୟ ସଂସ୍କୃତିକୁ ବହୁଭାବରେ ପ୍ରଭାବିତ କରି ଉତ୍କଳୀୟ କବି ମଣ୍ଡଳୀର ମଉଡ଼ମଣୀ ରୂପେ ପ୍ରତ୍ୟେକ ଓଡ଼ିଆର ହୃଦ ସିଂହାସନରେ ବିରାଜମାନ କରିଛନ୍ତି । ତାଙ୍କ ସମ୍ବନ୍ଧରେ ବହୁ ଭାରତୀୟ ତଥା ପାଶ୍ଚାତ୍ୟ ଗବେଷକ ସ୍ୱତନ୍ତ୍ର ଗ୍ରନ୍ଥମାନ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଜୟଦେବଙ୍କୁ ଉତ୍କଳୀୟ କବିରୂପେ ବର୍ଣ୍ଣନା କରିଛନ୍ତି ।

ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

# ସୋନପୁର ଅଞ୍ଚଳର ଲୋକ ଗୀତି ......

# ଡାଲଖାଇ



ଶ୍ରୀ ଭଗୀରଥି ନେପାକ

ପଶ୍ଚିମ ଓଡିଶା କହିଲେ, ଓଡିଶା ପ୍ରଦେଶର ପଶ୍ଚିମାଞ୍ଚଳକୁହିଁ ବୁଝାଇଥାଏ । ଏ ଅଞ୍ଚଳ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, କଳାହାଣ୍ଡି ଓ ବଉଦ-ଆଠମଲ୍ଲିକ ପର୍ଯ୍ୟନ୍ତ ବିସ୍ତୃତ । ଏହି ଅଞ୍ଚଳର ଭାଷାକୁ 'ସମ୍ବଲପୁରୀ ଭାଷା' କୁହାଯାଏ । ଆଉ କେହି କେହି ଏହାକୁ ଏବେ 'କୋଶଳୀ ଭାଷା' କହୁଛନ୍ତି । କାରଣ ଏହି ଅଞ୍ଚଳକୁ ପୂର୍ବେ 'କୋଶଳ' କୁହାଯାଉଥିଲା । ଏ ଅଞ୍ଚଳର ପଠିତ ଭାଷା ଖାଣ୍ଟି ଓଡିଆ ହେଲେ ମଧ୍ୟ, କଥିତ ଭାଷାରେ ହିନ୍ଦୀ, ଛତିଶଗଡି ଲରିଆ ପ୍ରଭୃତି ଭାଷାର ପ୍ରଭାବ ସୁସ୍ପଷ୍ଟ । ତେଣୁ ପଶ୍ଚିମ ଓଡିଶାର କଥିତ ଭାଷାକୁ ଓଡିଶାର ଉପକୂଳ ଅଞ୍ଚଳର ଲୋକମାନେ ସହଜରେ ବୁଝି ପାରନ୍ତି ନାହିଁ । ଏହାର କାରଣ ହେଲା, ଏ ଅଞ୍ଚଳ ବହୁକାଳ ଧରି ଓଡଶାଠାରୁ ବିଚ୍ଛିନ୍ନ ଥିଲା । ନିକଟ ଅତୀତରେ ଏଥିରୁ ଅଧିକାଂଶ ଅଞ୍ଚଳ ମଧ୍ୟପ୍ରଦେଶ ସଙ୍ଗେ ସାମିଲ ହୋଇ ରହିଥିଲା । ପୁଣି ଏ ଅଞ୍ଚଳରେ ବହୁକାଳ ଧରି ରାଜା ରାଜୁଡ଼ାମାନେ ଶାସନ କରି ଆସୁଥିଲେ । ବହୁ ରାଜ୍ୟ ଅତୀତରେ ଆଦିମ ଅଧିବାସୀମାନଙ୍କ ଦ୍ୱାରା ଶାସିତ ହୋଇ ଆସିଥିଲା । ତେଣୁ ଏ ଅଞ୍ଚଳର ଭାଷା, ସଭ୍ୟତା ଓ ସଂସ୍କୃତିରେ ଆଦିମ ଅଧିବାସୀମାନଙ୍କ ପ୍ରଭାବ ସୁସ୍ପଷ୍ଟ ।

ପୂର୍ବତନ ସୋନପୁର ରାଜ୍ୟ ପଶ୍ଚିମ-ଓଡିଶାର ବକ୍ଷସ୍ଥଳ ସଦୃଶ । ଏ ଅଞ୍ଚଳ ଯଥାକ୍ରମେ ଭଞ୍ଜବଂଶ, ସୋମବଂଶ ଶ୍ୱେତ, କଲଚୁରୀ ଓ ଗଙ୍ଗବଂଶର ଶାସକମାନଙ୍କର ଶାସନାଧୀନ ଥିଲା । ୧୯୪୮ ମସିହା ଜାନୁୟାରୀ ଏକ ତାରିଖ ଦିନ ଏ ରାଜ୍ୟ ଓଡିଶା ପ୍ରଦେଶ ସହିତ ସାମିଲ ହେବା ପୂର୍ବରୁ ଚୌହାନବଂଶର ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା ।

ଏହି ଦୃଷ୍ଟିରୁ ସୋନପୁର ରାଜ୍ୟ ବହୁ ପ୍ରକାର ସଭ୍ୟତା ଓ ସଂସ୍କୃତିର ଲୀଳାକ୍ଷେତ୍ର । ଏ ଅଞ୍ଚଳରୁ ପ୍ରାପ୍ତ ପ୍ରତ୍ନତାତ୍ତ୍ୱିକ ଉପାଦାନରୁ ଜଣାଯାଏ ଯେ, ଏ ଅଞ୍ଚଳରେ ପ୍ରାଗୈତିହାସିକ ସଭ୍ୟତା ବିଦ୍ୟମାନ ଥିଲା । ଏ ଅଞ୍ଚଳ ତତ୍କାଳୀନ ସଭ୍ୟତା ଓ ସଂସ୍କୃତିର ଶୀର୍ଷ ଦେଶରେ ଦଣ୍ଡାୟମାନ ହୋଇ କେବଳ ଓଡ୍ର, କୋଶଳକୁ ନୁହେଁ, ସମଗ୍ର ଭାରତବର୍ଷକୁ ଜୀବନ ଓ ଜୀବନ-ଦର୍ଶନର ଦିଗଦର୍ଶନ ଦେଉଥିଲା । ସୋନପୁର ସହର କେବଳ ତେଲନଦୀ ଓ ମହାନଦୀର ସଙ୍ଗମ ସ୍ଥଳୀ ନୁହେଁ, ବିଭିନ୍ନ ସଭ୍ୟତା ଓ ସଂସ୍କୃତିର ମଧ୍ୟ ସଙ୍ଗମ ସ୍ଥଳୀ ଥିଲା । ମନ୍ଦିର ମାଳିନୀ ସୋନପୁର ତାହାହିଁ ସାବ୍ୟସ୍ତ କରିଥାଏ । ତେଲନଦୀ କୂଳର ନବାବିଷ୍କୃତ ଅସୁରଗଡ଼ ତାର ମୂକସାକ୍ଷୀ ମାତ୍ର ।

ପଶ୍ଚିମ ଓଡିଶାର ପ୍ରାଣକେନ୍ଦ୍ର ସୋନପୁର ଅଞ୍ଚଳ ଲୋକ-ସଂସ୍କୃତିର ଗନ୍ତାଘର । ଜଣାଯାଏ, ଏ ଅଞ୍ଚଳ ପ୍ରଥମେ ଆଦିବାସୀ ଗଣ୍ଡ ସଂପ୍ରଦାୟର ପୀଠସ୍ଥଳୀ ଥିଲା । ଚୌହାନ ରାଜା ମଧୁକର ସାଏଙ୍କ ତୃତୀୟପୁତ୍ର ମଦନ ଗୋପାଳ ଗଣ୍ଡମାନଙ୍କ ହସ୍ତରୁ ଶାସନ କ୍ଷମତା ଆଣି ନିଜେ ରାଜା ହେଲେ ଓ ସେମାନଙ୍କ ଦ୍ୱାରା ପୂଜିତ ଦେବ ଦେବୀଙ୍କୁ ପୂଜାକରି ଗଣ୍ଡ ପ୍ରଜାମାନଙ୍କୁ ସନ୍ତୁଷ୍ଟ କଲେ । ପୁଣି ସେମାନଙ୍କ ପର୍ବ ପର୍ବାଣୀକୁ ଅକ୍ଷୁର୍ଣ୍ଣ ରଖି ଏହାର ବିଧି ବିଧାନ ପ୍ରଚଳନ କଲେ । ଏବେ ରାଜା ନାହାନ୍ତି, ରାଜ୍ୟ ନାହିଁ, କିନ୍ତୁ ଆଦିବାସୀ ପର୍ବ-ପର୍ବାଣୀ, ନାଚଗୀତ ଇତ୍ୟାଦି ପରଂପରାକ୍ରମେ ସୋନପୁର ରାଜ୍ୟ, ସୋନପୁର ଅଞ୍ଚଳରେ ତିଷ୍ଠି ରହିଛି ।

ଏବେ ମଧ୍ୟ ସୋନପୁର ଅଞ୍ଚଳରେ ଆଦିବାସୀ ପର୍ବ କରମା, ଡ଼ାଲଖାଇ, ଦଣ୍ଡ ପ୍ରଭୃତି ପାଳିତ ହୋଇଥାଏ ଓ ପ୍ରତି ଆଦିବାସୀ ଗ୍ରାମରେ କରମା, ଦଣ୍ଡ, ଡ଼ାଲଖାଇ ନୃତ୍ୟ ଅନୁଷ୍ଠିତ ହୋଇ ତତ୍ ସଂପୃକ୍ତ ଗୀତ ଗାନ କରାଯାଇଥାଏ ।

ଏ ନାଚ, ଏ ଗୀତମାନେ ପଶ୍ଚିମ ଓଡିଶାର ଅନ୍ୟତମ ମୁଖ୍ୟ ଆକର୍ଷଣ । କାରଣ ଏହା ପଶ୍ଚିମ ଓଡିଶାର ଅନ୍ୟତମ ଜନପ୍ରିୟ ନାଚଗୀତ ।

ସୋନପୁର ସହରର ପାଖ ଆଖ ଗାଁ ଗଣ୍ଡାରେ, ପୂର୍ବତନ ସୋନପୁର ରାଜ୍ୟ ପରିସର ମଧ୍ୟରେ କରମା, ଦଣ୍ଡ,



ଲୋକନୃତ୍ୟ 'ଡାଲଖାଇ'ର ଏକ ଦୃଶ୍ୟ .....

ଚିରସ୍ରୋତା ମହାନଦୀ, ତେଲନଦୀ, ଅଙ୍ଗନଦୀର ମନ ଫୁଲଣିଆ ସ୍ରୋତର ଧ୍ୱନିପରି ଏ ଗୀତମାନଙ୍କର ଧ୍ୱନି କଳକଳ, ଛଳଛଳ ଓ ଉଚ୍ଛରୋଳ । ଏ ଗୀତମାନେ ଜୀବନର ସ୍ୱର ଶୁଣାନ୍ତି, ହୃଦୟର କଥା କହନ୍ତି, ମନର ମହକା ମହକା ଭାବକୁ ଧାରା ଶ୍ରାବଣର ବାରିଧାରା ପରି ବୁଣି ଦିଅନ୍ତି, ଅଜାଡ଼ି ଦିଅନ୍ତି । ପ୍ରତି ଗୀତ ମୁଠା ମୁଠା ଫୁଲ ଫୁଟାଏ, ଆଞ୍ଜୁଳା ଆଞ୍ଜୁଳା ସ୍ୱପ୍ନ ଦିଏ । ଏ ଗୀତ ଶୁଣିଲେ ବୃଦ୍ଧ ଯୁବକ ହୁଏ, ବୃଦ୍ଧା ନବବଧୂ ପାଲଟେ । ଶ୍ରୋତା ଲୋକ ଜୀବନର ହା'ହୁତାଶ, ପରାଜୟର ଗ୍ଲାନି, ତିକ୍ତ ଅନୁଭୂତିର କ୍ଷତ ଭୁଲି ଗୀତ ସଙ୍ଗରେ ନିଜକୁ ଏକାକାର କରିଦିଏ । ପଥ ଚାଲିବାର କ୍ଳାନ୍ତି, ଜୀବନ ବିତାଇବାର ଗ୍ଲାନି ନିମିଷକ ଭିତରେ ଭୁଲି ହୋଇଯାଏ । ସେ ଭାବେ, ଦୁଃଖ ସହି ବଞ୍ଚିବାର ସାର୍ଥକ ହେଲା ! ଜୀବନ ପାତ୍ର ଆନନ୍ଦରେ ଉଚ୍ଛୁଳିଗଲା । ଆଉ ଭୟ ନାହିଁ, କ୍ଳାନ୍ତି ନାହିଁ, ଚିନ୍ତା, ଅବସାଦ, ଅବଶୋଷ କିଛିନାହିଁ ।

ସୋନପୁର ଅଞ୍ଚଳର ଲୋକଗୀତର ଧର୍ମ ଏହିପରି ।

ସୋନପୁର ଅଞ୍ଚଳର ସବୁ ଲୋକଗୀତକୁ ଏକାଠି କଲେ ସାତଖଣ୍ଡ ରାମାୟଣ ହେବ । କାରଣ ସୋନପୁର ଅଞ୍ଚଳର ଯାହା ନାହିଁ, ସମଗ୍ର ପଶ୍ଚିମ ଓଡିଶାରେ କାହିଁକି, ଓଡିଶାରେ କି ଭାରତ ବର୍ଷରେ ନାହିଁ । ଖାଲି ଲୋକଗୀତ ନୁହେଁ, ବିଦଗ୍ଧ ( Classical ) ଗୀତର ମଧ୍ୟ ଏ ଅଞ୍ଚଳରେ ପ୍ରଚୁର ଚର୍ଚ୍ଚା ହୋଇଥାଏ ।

ଭାତ ହାଣ୍ଡିରୁ ଗୋଟିଏ ଭାତ ଚିପି ପରୀକ୍ଷା କରାଯାଏ । ମୁଁ ଏଠାରେ ସୋନପୁର ଅଞ୍ଚଳର ଲୋକଗୀତ ପର୍ଯ୍ୟାୟରେ କେବଳ ଲୋକଗୀତ ଡାଲଖାଇର ଚର୍ଚ୍ଚା କରିବି । କହି ରଖେ, ପାଠକ ସଂସଦ ପକ୍ଷରୁ ଆୟୋଜିତ ଲୋକ ସଂସ୍କୃତ ଆଲୋଚନା ଚକ୍ରରେ ଯୋଗଦେଇ, କଟକ ଶ୍ରୀରାମଚନ୍ଦ୍ର ଭବନରେ ଡାଲଖାଇ ଗୀତ ଓ ନାଚର ଚର୍ଚ୍ଚା କରିଥିଲି । ସେହି ଆଲୋଚନାର ସଫଳତାକୁ ଆଖି ଆଗରେ ରଖି 'ଡାଲଖାଇ' ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ କରୁଛି । ତହିଁରୁ ଏକ ସଂକ୍ଷିପ୍ତ ଅଧ୍ୟାୟ ପରିବେଷଣ କରୁଛି ।

## ଡାଲଖାଇ .....

"ପଲ୍ଲୀର କେଉଁ ଏକ ଅଚିହ୍ନା ଗାଁ ମୁଣ୍ଡର ବରଗଛ ମୂଳେ କିମ୍ବା ଆମ୍ବ ତୋଟାରେ ଢ଼ୋଲ ବାଜୁଥିବ । ଯୁବତୀ କନ୍ୟାମାନେ ସୋନପୁରିଆ ବଉଳ ଶାଢ଼ୀ ପିନ୍ଧି ବେକରେ ଗଙ୍ଗା-ଯମୁନା ଗାମୁଛା ପକାଇ, ବିହ୍ୱଳ ହୋଇ ହଲି ଦୋହଲି ନାଚୁଥିବେ । ସେମାନଙ୍କ ଢଳିଆ ଖୋସାରୁ କୁରହୋଇ ଫୁଲ ଖସି ପଡୁଥିବ । ବେକର ଖଗଲା ଝାଳରେ ଓଦା ଜରଜର ହୋଇଥିବ । ଆଖିର ଚାହାଣୀରେ ଭିଜା ଭିଜା ମହୁଲି କଥା ଲହଡ଼ା ଭାଙ୍ଗୁଥିବ । ସେମାନେ ହସୁଥିବେ ଝରଣାର ସୁଅ ପରି ଛଳ ଛଳ ହୋଇ, ଗାଉଥିବେ ଅନର୍ଗଳ ଭାବେ ମହାନଦୀର ଲହରିଆ ଢେଉପରି କଳ କଳ ହୋଇ । ଯୌବନ ସେଇଠି କଥା କହୁଥିବ । ଗୀତ ଗାଉଥିବ । ବୟସ ସେଇଠି ଲହଡ଼ା ଭାଙ୍ଗି ବୁଡ଼ ପକାଉଥିବ । ସେଇଠି ଦଣ୍ଡେ ଛିଡ଼ା ଡାଲଖାଇର ଅନେକ ଆଦର । ଯିଏ ସୋନପୁର ଅଞ୍ଚଳର ଏହି ଲୋକ ନୃତ୍ୟମାନ ଦେଖିନାହିଁ, ଲୋକଗୀତମାନ ମନ ପୁରାଇ ଶୁଣିନାହିଁ, ବୁଝିବାକୁ ହେବ ସେ ସୋନପୁର ଅଞ୍ଚଳ ଦେଖିନାହିଁ । ଏ ଅଞ୍ଚଳର ଆତ୍ମାକୁ ଚିହ୍ନିନାହିଁ ।

ସୋନପୁର ଅଞ୍ଚଳର ସହର ଓ ପୁରପଲ୍ଲୀମାନଙ୍କରେ କେବଳ ଦଣ୍ଡ, ଡାଲଖାଇ, କରମା ନୁହେଁ, ତା ସାଙ୍ଗରେ ରସରକେଲି, ମାଇଲଜଡ଼, ବାଜାଝୁଲକି, ଢାପ୍, ନଚନିଆ, କୃଷ୍ଣଗୁରୁ, ବିହାଗୀତ, ସାପୁଆଗୀତ, ଶବର ଶବରୁଣୀ ଗୀତର ଝଙ୍କାର ଝଙ୍କୃତ ହୋଇଥାଏ । ଏ ଅଞ୍ଚଳରେ ପ୍ରବାହିତ ହେଲେ ବୁଝିବ, ଲୋକ ନାଚ କ'ଣ, ଲୋକ ଗୀତ କ'ଣ ? ଡାଲଖାଇ ନାଚ କ'ଣ, ଡାଲଖାଇ ଗୀତ କ'ଣ ? ସେ ଗୀତରେ କେଉଁ ନିଶା ଥାଏ ? ସେ ନାଚରେ କେଉଁ ଭାଷାଥାଏ ସେ ଭାଷାରେ କେଉଁ ମାଦକତା ଥାଏ ?





ଡାଲ୍‌ଖାଇ ନୃତ୍ୟରତ ଏକ ଦଳ ......

ସେଇଠି ମଣିଷ ନାଚେ ନା ଯୌବନ ନାଚେ ?
ସେଇଠି ମଣିଷ ହସେ ନା ଯୌବନ ହସେ ?

ଡ଼ାଲଖାଇ ନାଚୁଥିବା, ଡ଼ାଲଖାଇ ଦେଖୁଥିବା, କଳାକାର ଓ ଦର୍ଶକମାନଙ୍କର ଆଖିମାନେ ଫୁଲ ହୋଇଯାଆନ୍ତି, ନିଶ୍ୱାସ ମଳୟ ହୁଏ ଓ ମନ ମଦିରା ପାଲଟି ଯାଏ ।

ଏ ଡ଼ାଲଖାଇ ନାଚ ପଶ୍ଚିମ ଓଡିଶା, ବିଶେଷତଃ ସୋନପୁରିଆ ଯୁବତୀ କନ୍ୟାମାନଙ୍କ ପରି ଆଉ କେହି ନାଚି ଜାଣନ୍ତି ନାହିଁ । ଏ ଡ଼ାଲଖାଇ ନାଚର ତାଳ ତଳିଆ ଖୋଷା ନ ଖୋସିଲେ ପକାଇ ହୁଏ ନାହିଁ । ଏ ଡ଼ାଲଖାଇ ନାଚର ନିଶା, ଡ଼ାଲିଆ ଖୋଷାରେ ଜୁର ହୋଇ ଗଳା ଖଞ୍ଜି ରୁପା ପାନ ପତ୍ର ନ ମଣ୍ଡିଲେ ଠିକ ଭାବରେ ଧରେ ନାହିଁ ।

ନର୍ତ୍ତକୀର ମାଂସଳ କାନ୍ଧ ଓ ଶଂଖ ବେକ ଛୁଇଁ ହଲି ଦୋହଲି ନାଚୁଥିବା ସୋନପୁରିଆ ଗଙ୍ଗା ଯମୁନା ଗାମୁଛା, ଡ଼ାଲଖାଇ ନାଚର ଛନ୍ଦ ତତାଇ ଦିଏ, ମତାଇ ଦିଏ, କିଣିନେଇ ବିକିଦିଏ ।

ଏ ଗୀତ ସମ୍ବଲପୁରୀ ଭାଷାରେ ଯେମିତି ଜମେ ପୃଥିବୀର ଅନ୍ୟ କୌଣସି ଭାଷାରେ ସେମିତି ଜମେ ନାହିଁ । କାରଣ ସମ୍ବଲପୁରୀ ଭାଷାର ମିଠା ମାଦକତା, ଆଉ ଅନ୍ୟ କୌଣସି ଭାଷାରେ ନାହିଁ । ସମ୍ବଲପୁରୀ କଥା କହୁଥିଲେ, ଗୀତ ଗାଉନ୍ଥ ପରି ଲଗେ । ଏଠାକାର କଥାଟା ଗୀତ ଆଉ ଗୀତ ? ତାହା ଗୀତ ନୁହେଁ ଜୀବନ ।

ଆଶ୍ୱିନ ଶୁକ୍ଳପକ୍ଷ ଅଷ୍ଟମୀକୁ ଦୁର୍ଗାଷ୍ଟମୀ କୁହାଯାଏ । ଅଷ୍ଟମୀଠାରୁ ଦଶମୀ ପର୍ଯ୍ୟନ୍ତ ଦୁର୍ଗାପୂଜା ଉତ୍ସବ ଅନୁଷ୍ଠିତ ହୋଇଥାଏ ।

ଦୁର୍ଗାଷ୍ଟମୀ ବା ମହାଷ୍ଟମୀ ଦିନ ପଶ୍ଚିମ ଓଡିଶାର ସବର୍ଣ୍ଣ ହିନ୍ଦୁ କନ୍ୟାମାନେ ଭାଇମାନଙ୍କର ମଙ୍ଗଳ କାମନା କରି 'ଭାଇଜୀଉଁତିଆ ଓଷା' କରନ୍ତି ଓ ଆଦିବାସୀ କନ୍ୟାମାନେ 'ଡ଼ାଲଖାଇ ଓଷା' ଆରମ୍ଭ କରି ଡ଼ାଲଖାଇ ନାଚ ନାଚନ୍ତି ଓ ଡ଼ାଲଖାଇ ଗୀତ ଗାଆନ୍ତି ।

ଆଦିବାସୀ ଗୋଷ୍ଠୀର ଡ଼ାଲଖାଇ ଓଷାଉତିମାନେ ଡ଼ାଲଖାଇ ନାଚ ନାଚିଲାବେଳେ ଯେଉଁ ଗୀତ ଗାଆନ୍ତି, ତାହାକୁ ଡ଼ାଲଖାଇ ଗୀତ କୁହାଯାଏ । ଡ଼ାଲଖାଇ ଗୀତରେ 'ଡ଼ାଲଖାଇରେ' ବା 'ଡ଼ାଲଖାଇବୋ' ଏହି ପଦକୁ ଘୋଷାପଦ ରୂପେ ବ୍ୟବହାର କରାଯାଉଥିବାରୁ ଗୀତ ଓ ନାଚର ନାମ 'ଡ଼ାଲଖାଇ' । ଆଉ ଏକ ମତରେ ଦେବୀ ଡ଼ାଲଖାଇ (ଦୁର୍ଗା/ମଙ୍ଗଳା)ଙ୍କ ଉଦ୍ଦେଶ୍ୟରେ ଏହି ନାଚ ଗୀତ ଅନୁଷ୍ଠିତ ହେଉ ଥିବାରୁ ଏହାକୁ ଡ଼ାଲଖାଇ ନାଚ ଓ ଡ଼ାଲଖାଇ ଗୀତ କୁହାଯାଏ । ଡ଼ାଲଖାଇ ନାଚ ଓ ଗୀତର ପ୍ରଭାବ ଅତ୍ୟନ୍ତ ବିସ୍ଫୋରକ ।

## ଡାଲ୍‌ଖାଇ ଗୀତ

'ଡ଼ାଲଖାଇ ଗୀତ' ସବୁଠି ସମାନ ନୁହେଁ । ଭାବ ସମାନ ଥାଇ ବିଭିନ୍ନ ଭାଷା, ଶବ୍ଦ ଓ ପଂକ୍ତିର ଅବଲମ୍ବନରେ ଏହା ଗାନ କରାଯାଏ ।

ଡ଼ାଲଖାଇ ଗୀତ ପୁଣି ଡ଼ାଲଖାଇ ଓ ବୃହତ ଡ଼ାଲଖାଇ ଏହି ଦୁଇ ଶ୍ରେଣୀରେ ବିଭକ୍ତ । ଛଟା, ଛଟକନ୍, ଟଁସ, ଦାଏକା, ଟପାଗୁଲି ପ୍ରୟୋଗ କରି ଡ଼ାଲଖାଇକୁ ବୃହତ ଡ଼ାଲଖାଇରେ ପରିଣତ କରାଯାଇଥାଏ । ପ୍ରଥମେ 'ମାଲଶିରୀ' ଗାନ କରାଯାଏ । ଏହା ଦେବୀ ଜଣାଣ ।

ପରେ ଡ଼ାଲଖାଇ ଗୀତ ଗାନ କରାଯାଏ । ଡ଼ାଲଖାଇ ଗୀତରେ ମଧ୍ୟ ବାରମାସୀ ଡ଼ାଲଖାଇ ଓ ଡ଼ାଲଖାଇ ଚଉତିଶା ରହିଛି ।

ଅନେକ ମନେ କରନ୍ତି, ଡ଼ାଲଖାଇ ଗୀତ ମାନେ ଅଶ୍ଳୀଳ ଓ ଅପାଂକ୍ତେୟ । କିନ୍ତୁ ଏହା ଯଥାର୍ଥ ନୁହେଁ । ଏଥିରେ ପ୍ରେମଗୀତର ମାତ୍ରା ଅଧିକ ଥିଲେହେଁ, ସାମାଜିକ, ପଲ୍ଲୀ ପ୍ରକୃତି ବର୍ଣ୍ଣନା, ରାସଲୀଳା, ଜୀବନ ଦର୍ଶନ ପ୍ରଭୃତି ଚିତ୍ର ମଧ୍ୟ ପରିବେଷିତ ହୋଇଥାଏ ।

ଏ ଗୀତ ଓ ନାଚ କେବଳ ପଶ୍ଚିମ ଓଡିଶାରେ ସୀମାବଦ୍ଧ ହୋଇ ରହିଛି । ଏ ଗୀତ ଓ ନାଚରେ ଅମୃତ ସ୍ୱାଦ ପାଇ ରଙ୍ଗମଞ୍ଚର କଳାକାରମାନେ ଏହାକୁ ସହର ଓ ନଗରୀମାନଙ୍କରେ ପ୍ରଦର୍ଶନ କରିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । କିନ୍ତୁ ଅସଲ ଡ଼ାଲଖାଇର ମଜା ସେଠାରେ ମିଳୁନାହିଁ । ଅନୁଧ୍ୟାନ ଅନୁଶୀଳନ ଓ ଗବେଷଣାତ୍ମକ ଆଲୋଚନା ଫଳରେ ଏହା ଯେ ପୃଥିବୀର ଶ୍ରେଷ୍ଠ ଲୋକନୃତ୍ୟ ଓ ଲୋକଗୀତ ସ୍ତରକୁ ଉତ୍ତୀର୍ଣ୍ଣ ହୋଇପାରିବ, ଲେଖକର ଏ ବିଶ୍ୱାସ ରହିଛି ।

### ଡାଲ୍‌ଖାଇ ଦେବୀ ବନ୍ଦାଣ

ଡ଼ାଲ୍‌ଖାଇରେ
କଲଛିଟଶାଢ଼ୀ ଅଟେ ଘୁଲ୍‌ଘୁଲ୍
ମାଖିଛେ ସିନ୍ଦୁର, ବାଲ ମୁକୁଲ୍
ବେକେ ଧଣ୍ଡାମାଲ କପାଲେ ଚିତା
ବତ୍ସଥାର୍ କାନେ କହୁଛେ କଥା
ଦୁଃଖ ହରତା
ସୁଖକରତା

ନାଚି ନାଚି ଆସେ କଲସି, ଜଗତରମାତା
ଜଗତର୍‌ମାତା, ଜଗତର ମାତା କାଏଁ ଡ଼ାଲ୍‌ଖାଇରେ ।

### 'ଡାଲ୍‌ଖାଇ ପ୍ରେମଗୀତ

ଯୁବତୀ କଣ୍ଠରେ—'ଡ଼ାଲ୍‌ଖାଇରେ

ରସକେ ରସିଆ କିରେ ଧାନ୍‌ଫୁଲ କଷିଆ
ତରଲଗି ମୁଣ୍ଡିନେବି କାନର ପସିଆ ।
ତର ଲଗି ମୁଣ୍ଡି ନେମି ହାତର୍ କଚରିଆ
ତର ଲଗି ମୁଣ୍ଡି ନେମି ହାତର ବନ୍ଦରିଆ
ଏକାତର୍ ଲଗି ମୁଇଁ ନାଗର
ତୁଇତ ଦଗାଦିଆ କି ଡ଼ାଲ୍‌ଖାଇରେ ।
'ଲେକିରି ବାଇଗନ୍ କିରେ ଥିପି ଥିପି କଁଟା
ଗଲିଯାଉଥିଲେ ଗଜା ମରଦ୍ ଲିପି ଲିପି ଅଁଟା
ତର ସଙ୍ଗେ ଗଲେ ବାଟେ ହେମି ହଟହଟା
ଯଦି ହଟହଟା କରୁ ନାଗର
ତର ଲଗି ନେମି ଅଁଟା କାଏଁ ଡ଼ାଲ୍‌ଖାଇରେ ।

ଡ଼ାଲଖାଇରେ
ଇଡ଼ାହିର ମାକଡ୍ ଯାଇ ସେ ଡ଼ାହି ବସ୍‌ଲା
କଂଗୁ କେନ୍ଦୁଖିଆ ମାକଡ୍ କିଭବ ପାଇଲା
ନଡ଼ିଆ ସୁଆଦ କାହୁଁ ପାଇବ
ଗଲେ ଦେଶାନ୍ତର

ଯାଚିଲା ବେଲର୍ ଲଗି
କାଉ ମୋର
ବୁଲେ ଝାର ଝାର କାଏଁ ଡାଲ୍‌ଖାଇରେ ।

'ଡ଼ାଲ ତ ଡ଼ାଲଯେ ଅଏଁଲା ଡ଼ାଲ
ଅଏନ୍ ଦିଶୁଛେ ତର ବାବୁରି ବାଲ
ବାବୁରି ବାଲରେ ତେଲ୍ ଖଏଁଗୁ
ଧୂତି ଖଣ୍ଡେ ପିନ୍ଧିଥିବୁ
ଲେଡ଼ି ଝମକା
ମୁଁହ ମଲକା କାଏଁ ଡ଼ାଲ୍‌ଖାଇରେ ।

ସେହିପରି ସୁନ୍ଦରୀ ନବଯୁବତୀର ମହକା ମହକା ଦେହ, ନାଚିଲା ନାଚିଲା ନବ ଯୌବନ ଦେଖି ଯୁବକ ତାରି ମନର ଅକୁହା କଥାକୁ ଡାଲ୍‌ଖାଇ ଗୀତରେ ଅଜାଡ଼ି ଦେଇ ଗାଏ—

ଡାଲ୍‌ଖାଇ ବୋ
କାଟିଗଲି ବାଉଁଶ ନଲ ଦୁଇପାଖେ ଫୁଲ
ଗଲବରଷ୍ ଦେଖିଥିଲି ଟିକନ୍ ଗୁକନ୍ ଥିଲୁ
ଏସୁର ସାଲେ ଦେଖୁଅଛେଁ ନନୀକେ, ସତେଗା
ଡ଼ିଆଁ ଚରିଗଲୁ କି ଡ଼ାଲ୍‌ଖାଇରେ ।
'ବାହାଲର୍ ବରଗଡ଼ ବାନ୍ଧିନେଲେ ଯିବା
ହଲଦୀର ରଙ୍ଗ ଧନ ଗାଧୁଇଲେ ଯିବା
ମୁଖରୁ ବୟସ ଗଲେ ଧନ୍ ମର୍
କିଏ ପଗ୍ରରିବା ? କି ଡ଼ାଲ୍‌ଖାଇରେ ।

ଡାଲ୍‌ଖାଇରେ—
ନାଲେ ନାଲେ ଯାଉଥିଲି ଭେଟିଲି ଧମନା
ତତେ ନାଇଁ ଦେଖି ନନୀ ଲଗୁଅଛେ ବନା
ଲଗୁଛେ ବନା ମୋର ସବୁ ଦଏନା
ନାଇଖଁଡ଼ି କେଢେ ବୁଟାଦଏନା
ଦଏନାର ବାସ ନେସି ପରାଣ
ଶୁଂଘି ଦେଲେ ଧନ ମୋର ଜାନିବୁ
ଗରଲ ବିଷ, ଗରଲ ବିଷ କାଏଁ ଡାଲ୍‌ଖାଇରେ ।

ଡ଼ାଲ୍‌ଖାଇ ଗୀତ ମନଟଣା, ମରମବିନ୍ଧା ଗୀତ । ଏ ଗୀତ ଥରେ ଶୁଣିଲେ ସବୁଦିନକୁ ମନେ ରହେ । କାରଣ, ଏ ଗୀତ ହେଲା— ଅଲୁଣ୍ ଅଛପା ଗୀତ । ମନର କଥାକୁ ସିଧାସଳଖ ପ୍ରକାଶ କରିନପାରିଲେ ଡ଼ାଲ୍‌ଖାଇ ଗୀତ ହୁଏ ନାହିଁ । ସେଇଥିପାଇଁ ନବଯୁବତୀ 'ଡ଼ାଲ୍‌ଖାଇ ନାୟିକା' ଇଚ୍ଛା ସଂଲମତା ସବୁ ଭୁଲି ନିଜର ଯୌବନ ପ୍ରତି ସଚେଷ୍ଟ ହୋଇ ସର୍ବ ସମକ୍ଷରେ ଗାଏ ।

'ଡ଼ାଲ୍‌ଖାଇରେ—
ପଳସା ଗଛର ଫୁଲ
ଦିହେ ମର ଅଛେ ଗା ଯୌବନ ଭାର
କେତାକେ କହେଲି ଗା ବହୁକେ କହେଲି
ଖୁଜିଆନ ବର୍ କାଏଁ ଡ଼ାଲ୍‌ଖାଇରେ ।

'ଡାଲ୍‌ଖାଇ ଗୀତରେ ସାମାଜିକ ଚିନ୍ତା

ଡ଼ାଲ୍‌ଖାଇରେ
ବାପ୍ ଆଟ୍‌କୁରା ଟଂକା ଦେଖିଲା
ଦରମରା ଟାକେ ଝାଁପେଇ ଦେଲା
ବନ୍ଦନା ଲୁଗାଥି କନ୍ଦନା ଲଗଲା ଡ଼ାଲ୍‌ଖାଇରେ
ଲଖ୍‌ଟୁରିକାଣା ଭଂଗତୀ ହେଲା କି ଡ଼ାଲ୍‌ଖାଇରେ ।

ଡାଲ୍‌ଖାଇ ଗୀତରେ ପଲ୍ଲୀ ପ୍ରକୃତି

'ଡ଼ାଲ୍‌ଖାଇରେ............ଡ଼ାଲ୍‌ଖାଇରେ
ମାରୁଛେ ବିଜୁଲି ଘଡ଼ିକେ ଘଡ଼ି
ସର୍ଗୁଁ କୁଏ ଅଗ୍ନି ପଡୁଛେ ଛିଡ଼ି ।
ପାନି ଝରୁ ଅଛେ ଥରକେ ଥର
ଅଧାରେ ନନୀକେ ଲଗୁଛେ ଡ଼ର
ଲଗୁଛେ ଡ଼ର କାଂଏ ଡ଼ାଲ୍‌ଖାଇରେ......ଇତ୍ୟାଦି ।

ଡାଲ୍‌ଖାଇରେ ରାସଲୀଳା

'ଡ଼ାଲ୍‌ଖାଇରେ—
କୃଷ୍ଣ ଯାଇଥିଲେ ଯମୁନା କୂଳ
ରାଧା ଯାଇଥିଲେ ଆନିବେ ଜଳ ।
ଧରି ନେଲେ ହାତ କଲା କହ୍ନାଇ
ଛାଡ଼ ବୋଇଲେ ସେ ଛାଡ଼ୁଇ ନାଇଁ ।
ଯୁବା ବୟସ ନନ୍ଦର ପିଲା
ଦେହ ତାର କଲା କଲା କି ଡ଼ାଲ୍ ଖାଇରେ ।

ଡ଼ାଲ୍‌ଖାଇରେ—
ନଇତ ନଇ ମୋର ଆଡ଼ବଙ୍କା ନଇ
ଗାଁଆକୁ ସୁନ୍ଦର ଦିଶେ ଗଇଁଠିଆ ଭାଇ ।
କ୍ଷେତକୁ ସୁନ୍ଦର ଦିଶେ ବଡ଼ ବଡ଼ ଗାଇ
ଗଛକୁ ସୁନ୍ଦର ଦିଶେ ଲମ ଲମ ଡ଼ାହି
ରାଧାକୁ ସାଜିଛେ ପରେ କାଳିଆ
ପୂବର ମାଧୋଇ
ପୂର୍ବର ମାଧୋଇ କାଏଁ ଡାଲ୍‌ଖାଇରେ ।

ଡ଼ାଲ୍‌ଖାଇ ଗୀତର କେବଳ ପ୍ରେମ, ସାମାଜିକ ଚିତ୍ର, ରାସ ଲୀଳା କି ପଲ୍ଲୀ ପ୍ରକୃତି ବର୍ଣ୍ଣନା ନୁହେଁ 'ଜୀବନ ଦର୍ଶନ'ର ଗଭୀର ତତ୍ତ୍ୱ ମଧ୍ୟ ପରିବେଷିତ ହୋଇଥାଏ । ତାର ଏକ ନମୁନା ନିମ୍ନରେ ଦିଆଗଲା —

ଡାଲ୍‌ଖାଇରେ ଡାଲ୍‌ଖାଇରେ
ଆଇଛୁ ଏକଲା ଯିବୁ ତୁଇ ଏକା
କିହେ ନାଇଁ ତର ପରାନ ସଖା
କରିଥିବୁ ଯେତେ ଦାନ ତୁଇ ପୁଣ୍ୟ
ପଛରେ ପାଇବୁ ବାଟର ସଖା
ମନ, ବାଟର ସଖା କାଏଁ ଡାଲ୍‌ଖାଇରେ ।

ଏହିପରି ଆହୁରି କେତେ ରଙ୍ଗର, କେତେ ଢଙ୍ଗର ଗୀତ । ପରିବେଷିତ ଡ଼ାଲ୍‌ଖାଇ ଗୀତମାନ ତାର ଏକ ନମୁନା ମାତ୍ର ।

କ୍ୱାର୍ଟର ନଂ ଏଚ୍—୫୮, ୟୁନିଟ୍—୪
ଏ. ଜି. କଲୋନି, ଭୁବନେଶ୍ୱର ।

# ପ୍ରାକ୍-ସ୍ୱାଧୀନତା କାଳରୁ ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳରେ ଓଡ଼ିଆ ଭାଷା : ଏକ ପର୍ଯ୍ୟବେକ୍ଷଣ

ଡକ୍ଟର ଶ୍ରୀଶ ପଟେଲ

ପ୍ରାଗୈତିହାସିକ ଯୁଗରେ ମଣିଷ ଗୋଷ୍ଠୀବଦ୍ଧ ଜୀବନ-ଯାପନ କରୁଥିବାର ପ୍ରମାଣ ମିଳିପାରିଛି । ଭାବର ଆଦାନ-ପ୍ରଦାନ ନିମନ୍ତେ ସେମାନେ କେତେକ ନିର୍ଦ୍ଦିଷ୍ଟ ଧ୍ୱନି ଏବଂ ଅଙ୍ଗଭଙ୍ଗୀ ପ୍ରୟୋଗ କରୁଥିଲେ । କ୍ରମଶଃ ନୂତନ ପ୍ରସ୍ତର ଯୁଗର ଲୋକେ ଅଧିକ ମାର୍ଜିତ ଭାବରେ ଧ୍ୱନି ଏବଂ ଇଙ୍ଗିତ ପ୍ରୟୋଗ କରିପାରିଲେ । ମଧ୍ୟ ପ୍ରସ୍ତର ଯୁଗରେ ଚିତ୍ର ଦ୍ୱାରା ଭାବ ପ୍ରକାଶ କରାଯାଇପାରେ ବୋଲି ଉପଲବ୍ଧି କରି ପାରିଥିଲେ । ଭୌଗୋଳିକ ଦୃଷ୍ଟିକୋଣରୁ ବିଭିନ୍ନ ସଂପ୍ରଦାୟ ବିଭିନ୍ନ ପ୍ରକାର ଚିତ୍ର ମାଧ୍ୟମରେ ଭାବପ୍ରକାଶ କରିବାକୁ ଚେଷ୍ଟା କରିଥିଲେ ଏବଂ ଏଠାରୁ ହିଁ ଲିପିର ପ୍ରକୃତ ଜନ୍ମ । ପ୍ରତ୍ନତତ୍ତ୍ୱବିତ୍‌ଗଣ, ସିନାଇ ପେନିନ୍‌ସୁଲାର ମାଉନ୍ ସାଫଟ୍ରୁ ପୃଥିବୀର ଆଦିମ ଚିତ୍ରଲିପି ଆବିଷ୍କାର କରିଛନ୍ତି । ୧୮୯୦ରେ ଡକ୍ଟର ଇଉଜିନ୍ ଡୁବୋଇସ୍ ପୃଥିବୀର ପ୍ରାଚୀନତମ ଜୈବ-ଶିଳା ଆବିଷ୍କାର କରି ଦର୍ଶାଇଥିଲେ ଯେ ଅତିକାୟ ମାନବାକୃତି-ବାନର ଏକ ନିର୍ଦ୍ଦିଷ୍ଟ ଭାଷା ମଧ୍ୟ ବ୍ୟବହାର କରି ପାରୁଥିଲେ । ୧୯୬୨ ମସିହାରେ ଜର୍ମାନ୍ ଭାଷାବିତ୍ ଜନ ସୁଇଡେନ୍‌କି "(Do you Speak Chimpanzee)?" ବୋଲି ଏକ ପୁସ୍ତକ ପ୍ରଣୟନ କରି, ଏଥିରେ ମର୍କଟ ଓ ବାନରମାନଙ୍କର ଭାଷା ସଂପର୍କରେ ତାଙ୍କର ଗବେଷଣା ପ୍ରକାଶ କରିଥିଲେ ।

ଖ୍ରୀଷ୍ଟପୂର୍ବ ୨,୦୦୦ ବର୍ଷ ତଳେ ଇଉମାରତ, ବାବିଲୋନୀୟ, ସିରୀୟ ଏବଂ ହିଟ୍ଟିତୀୟମାନେ ମଧ୍ୟ-ଏସିଆରେ କ୍ୟୁନିଫର୍ମ (Cuneiform) ଚିତ୍ରଲିପି ବ୍ୟବହାର କରୁଥିଲେ । ହିଟ୍ଟିତୀୟ ଭାଷା ଆର୍ଯ୍ୟ ଭାଷାର ପ୍ରାଥମିକ ରୂପ ବୋଲି ବହୁ ଭାଷାବିତ୍ ମତ ପ୍ରକାଶ କରିଥାଆନ୍ତି । ଫର୍ଥ ତାଙ୍କର (The Tongue of men) ପୁସ୍ତକରେ ପୁରାତନ ମିଶରୀୟ ସିନାଇ, ପୁରାତନ ଫୋନେସୀୟ, ଗ୍ରୀକ୍ ଲାଟିନ୍ ଏବଂ ଭାରତୀୟ ଭାଷାର ସୁନ୍ଦର ଚିତ୍ରଲିପି ମାନ ପ୍ରଦାନ କରିଛନ୍ତି । ବୈଦିକ ଲିପି ତଥା ଚିତ୍ର-ଲିପିର କ୍ରମଶଃ ନିର୍ଦ୍ଦିଷ୍ଟ ଲିପି ଆକାର ଧାରଣ କରିବାକୁ ପ୍ରାୟ ଶହ ଶହ ବର୍ଷ ଲାଗିଗଲା ।

ଏହାପରେ ଦେଖାଦେଲା ଇଣ୍ଡୋ-ୟୁରୋପୀୟ, ଫିନୋ-ଉଗ୍ରୀୟ, ସେମୀଟୀୟ ହାମୀଟୀୟ, ଇଣ୍ଡୋ-ଚୀନା, ମାଲୟ-ପୋଲେନେସୀୟ, ତୁର୍କୀ-ତାତ୍‌ତାର, ଦ୍ରାବିଡ଼ୀୟ ଏବଂ ବାନ୍ଟୁ ପ୍ରଭୃତି ମୌଳିକ ଭାଷାଲିପି । ଏହି ମୌଳିକ ଭାଷାରୁ ଅସଂଖ୍ୟ ଉପଭାଷା, ଶାଖା ଭାଷାଦିର କ୍ରମଶଃ ସୃଷ୍ଟି ହେବାରେ ଲାଗିଲା । ଏଠାରେ ଲକ୍ଷ୍ୟ କରିବାର କଥା ଏହି ଯେ, କ୍ରମଶଃ ଜନ୍ମ ଲାଭ କରିଥିବା ଉପଭାଷା ଏବଂ ଉପଲିପିଗୁଡ଼ିକ ଭାଷାମାତୃକା ତଥା ଲିପି-ମାତୃକାଠାରୁ ସଂପୂର୍ଣ୍ଣ ଭାବେ ଅଲଗା ହୋଇ-ପାରନ୍ତି ନାହିଁ । ସୁତରାଂ ଏକ ମୌଳିକ ଭାଷାରୁ ଉତ୍ପତ୍ତି ହୋଇଥିବା ବିଭିନ୍ନ ଉପଭାଷାଗୁଡ଼ିକରେ ବ୍ୟାକରଣଗତ, ଧ୍ୱନିଗତ, ଲିପିଗତ ଆଦି ସାମଞ୍ଜସ୍ୟ ରହିଥିବାର ଦେଖାଯାଇଥାଏ ।

ଓଡ଼ିଶା ତଥା ଭାରତରେ ସାନ୍ତାଳ, କୋହ୍ଲ, ମୁଣ୍ଡା, ପରଜା, ଜୁଆଙ୍ଗମାନେ ଭାରତବର୍ଷର କି ଏମାନେ ଅନ୍ୟ କେଉଁ ସ୍ଥାନରୁ ଆସିଛନ୍ତି; ଏ ସଂପର୍କରେ ବହୁ ମତ ପ୍ରକାଶ ପାଇଥାଏ । କେତେକଙ୍କ ମତରେ ମାଡ଼ାଗାସ୍କର-ଆଫ୍ରିକା ସହିତ ଭାରତ-ବର୍ଷକୁ ସଂଯୋଗ କରୁଥିବା ମହାଦେଶକୁ ଲେମୁରିଆ (Lenuria) କୁହାଯାଉଥିଲା । କ୍ରମଶଃ ଏହା ସମୁଦ୍ର ଗର୍ଭରେ ବିଲୀନ ହେବାରୁ ଏହାର ଅଧିବାସୀଗଣ ଭାରତରେ ପ୍ରବେଶ କରିଥିଲେ । ଅନ୍ୟ କେତେକଙ୍କ ମତରେ, ଭାରତରେ ସର୍ବପ୍ରଥମେ ହେଲେ ମୁଣ୍ଡା ବା ମୁଣ୍ଡାରୀ ଜାତି । କୋଚିନ, ଗୁଏନା, ମାଲୟ, ନିକୋବର ଦ୍ୱୀପପୁଞ୍ଜ, ଫିଲିପାଇନ ଦ୍ୱୀପପୁଞ୍ଜ, ମାଲୟ ଏବଂ ଅଷ୍ଟ୍ରେଲିଆର କଥିତ ଭାଷା ସହିତ ଅନେକ ସାମଞ୍ଜସ୍ୟ ରହିଛି ବୋଲି ଧ୍ୱନିତତ୍ତ୍ୱବିତ୍ ମତପ୍ରକାଶ କରିଥାଆନ୍ତି । ମୁଣ୍ଡାରୀ, ସାନ୍ତାଳୀ, ଭୂମିଜ, ହୋ, ବଉର, ତୋଡ଼ା, କର୍ବା, ଖାଡ଼ିଆ, ଜୁଆଙ୍ଗ, ଶବର, ଗଦବା, ପରଜାମାନଙ୍କର କଥିତ ଭାଷାରେ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ଉଦାହରଣ ସ୍ୱରୂପ—

| ଓଡ଼ିଆ | ସାନ୍ତାଳୀ | ମୁଣ୍ଡାରୀ |
|---|---|---|
| ଖାଇବା | ଜମ୍ | ଜମ୍‌ମେନ |

| | | |
|---|---|---|
| ଶୋଇବା | ଗୀତିମେ | ଗୀତମେ |
| ଗୀତ ଗାଇବା | ସେରେଂଜମେ | ହୁରାଂଡାନା |
| ହାଣ୍ଡିଆ | ହାଣ୍ଡି | ହଣ୍ଡି |
| ମାଂସ | ଜିଲ୍ | ଜିଲୁ |
| ନାଚ | ଏନେଜ୍ | ସୁସୁମ |
| ମାଟି | ହାସା | ହାସା |

ଉନ୍ନତ ସମାଜରେ, ଦ୍ରୁତ ଶିଳ୍ପ କ୍ଷେତ୍ର ତଥା ବିଜ୍ଞାନ କ୍ଷେତ୍ରରେ ଅଗ୍ରଗତି ଫଳରେ ଭାଷାଗୁଡ଼ିକ ମଧ୍ୟରେ ନାନା- ପ୍ରକାର ମିଶ୍ରଣ ଘଟିବାରେ ସମ୍ଭବପର ହୋଇ ପାରିଛି । ଅଥଚ ଏହା ନିଶ୍ଚିତ ଯେ ବ୍ୟାକରଣ ହିଁ ଭାଷାର ଉଚ୍ଛୃଙ୍ଖଳ ପରିବର୍ତ୍ତନଶୀଳ ଗତିକୁ ନିୟନ୍ତ୍ରଣ କରିବାରେ ସହାୟକ ହୋଇ- ଥାଏ । ଯାନବାହନର ଉଦ୍‌ଭାବନ, ଗମନାଗମନର ସୁବିଧା ଐତିହାସିକ ବିଜୟ, ବ୍ୟବସାୟଗତ ଏକତ୍ରତା ଇତ୍ୟାଦି ଯୋଗୁଁ ଭାଷା ଭାଷା ମଧ୍ୟରେ ସମ୍ମିଶ୍ରଣ ତଥା କ୍ରମ ପରିବର୍ତ୍ତନ ପରିଲକ୍ଷିତ ହୋଇଛି ଏବଂ ହେବା ମଧ୍ୟ ସ୍ୱାଭାବିକ ।

ଓଡ଼ିଶାର ଆଦିବାସୀ କନ୍ଧମାନଙ୍କର 'କୁଇ' ଭାଷା ସହିତ ତେଲଗୁ ଭାଷାର ସଂପର୍କ ରହିଛି । ଏହି ଭାଷା ସଂସ୍କୃତ ଶବ୍ଦାବଳୀକୁ ଏତେ ନିଜର କରି ନେଇଛି ଯେ, ଫଳରେ ବଙ୍ଗଳା, ହିନ୍ଦୀ, ଓଡ଼ିଆ ଆଦି ଆର୍ଯ୍ୟ ଭାଷାମାନେ ଅନ୍ୟ ଦ୍ରାବିଡ଼ ଭାଷା ଅପେକ୍ଷା ଏହା ସହିତ ଅଧିକ ଘନିଷ୍ଠ ଭଣା କହୁଛନ୍ତି । ଓଡ଼ିଆ ଭାଷା ଆଦିବାସୀ ଗୋଷ୍ଠୀଗୁଡ଼ିକୁ ଦୁଇଭାଗରେ ବିଭକ୍ତ କରାପାରେ—ସେଇଁ ଗୋଷ୍ଠୀଗୁଡ଼ିକ ବହୁଦିନ ଧରି ଓଡ଼ିଆ କହୁଛନ୍ତି ଏବଂ ଅନ୍ୟଟି ନିଜ ଭାଷା ସହିତ ଓଡ଼ିଆ ମିଶାଇ କହୁଛନ୍ତି ।

ଭାଷା ସଂକ୍ରମଣ (Linguistic acculturation) ତଥା ଉପଭାଷାଗୁଡ଼ିକର ମାନବୀକରଣ ( Standardisation ) ପରାକାଳରୁ ରହି ଆସିଛି ଏବଂ ରହିଥିବ ମଧ୍ୟ । କାରଣ ବଡ଼ ଭାଷା-ଭାଷୀ ଗୋଷ୍ଠୀ ଭିତରେ ଯୋଗାଯୋଗ ସୃଷ୍ଟି ହେଲେ ଭାଷା ସଂକ୍ରାମିତ ହେବା ସ୍ୱାଭାବିକ । ଉଦାହରଣ ସ୍ୱରୂପ ଦର୍ଶାଇ ଦିଆଯାଇଛି ଯେ ଓଡ଼ିଆ ର 'ଖାଇବା'କୁ ସାନ୍ତାଳୀମାନେ 'ଜମ୍' କୁହନ୍ତି । 'ଘମ୍' ମୁଣ୍ଡା ଶବ୍ଦ । 'ଜୋମ୍' 'ଘମ୍' ଶବ୍ଦର ଅପଭ୍ରଂଶ । 'ଜୋମ୍' ଶବ୍ଦକୁ 'ଗମ୍', ଜୋମ୍-ବ ରୁ ଘମ୍-ବ ବା ଗମନ ବା ସ୍ୱଭକ୍ଷ ଉତ୍ପତ୍ତି । ସାଂସ୍କୃତିକ କ୍ଷେତ୍ରରେ ସାମଞ୍ଜସ୍ୟ ଓ ସଂକ୍ରମଣ ଦୃଷ୍ଟିରୁ ଆଦିବାସୀମାନଙ୍କର ଆସାଢ଼ି ପର୍ବ, ଜଗନ୍ନାଥଙ୍କର ଅଣସର ଘରେ ରହିବା, ଅକ୍ଷୟତୃତୀୟା ଓ ନବାନ୍ନ-ଭକ୍ଷଣ ଓଡ଼ିଆ ସମାଜରେ ଲକ୍ଷ୍ୟ କରିବା ବିଧେୟ । ସେହିପରି ସାର୍ବଜନୀନ ଶିକ୍ଷା ମାଧ୍ୟମରେ ଅଧୁନା ଉପଭାଷାଗୁଡ଼ିକର ମାନବୀକରଣ ଦ୍ରୁତ ଗତିରେ ବଢ଼ି ଚାଲିଛି ।

ନମ୍ବର । 47

ରସିଦ୍ (ଯାହା ପ୍ରେରକଙ୍କୁ ଦିଆଯିବ )

The Special assistant- Agent- Balliguda Division

ବ୍ରାଞ୍ଚ ଅଫିସର ଛାପର ଠ

ଶ୍ରୀ ଠିକଣାଦାର Russell Konda ଙ୍କ ନାମରେ ଗୋଟିଏ Registered

| ବିମା ଦ୍ରବ୍ୟ ସମ୍ବନ୍ଧେ | | |
|---|---|---|
| ନିମ୍ନଲିଖିତ ଘରମାନ ପୂରଣ କରିବାକୁ ହେବ । ଯେତେ ଟଙ୍କା ପାଇଁ ବିମା କରାଯା : (ଅଙ୍କରେ) ଟ (ଅକ୍ଷରରେ) ବିମାର ହାର - ଟ ଅ ଓଜନ ତୋଳା ହିସାବରେ (ଚିଠି ପାଇଁ) (ଅକ୍ଷରରେ । ତୋଳା ,, (ପାର୍ଶଲ ପାଇଁ) | ରେଜିଷ୍ଟ୍ରି-ପାର୍ଶଲ ହେଲେ (ବିମା ଓ ଭି: ପି: ହେଲେ ସୁଦ୍ଧା) ନିମ୍ନ ଲିଖିତ ଘରମାନ ପୂରଣ କରିବାକୁ ହେବ । ଡାକ ମହାଶୁଲ । ଟ ଅ 3 | ମନିଅର୍ଡର ହେଲେ ନିମ୍ନଲିଖିତ ଘର ପୂରଣ କରାଯିବ । ଟଙ୍କା ... ... ଟ କମିଶନ ... ... ମୋଟ ... ... ମୋଟ (ଅକ୍ଷରରେ) |



Radhakrishna Be

ବ୍ରାଞ୍ଚ ପୋଷ୍ଟମାଷ୍ଟରଙ୍କର ସ୍ୱାକ୍ଷର ।

7-5-

Dr. S. Patel.

ପୋଲିସ ଷ୍ଟେସନ ଭାରପ୍ରାପ୍ତ କାର୍ଯ୍ୟକାରକଙ୍କ ନିକଟକୁ ।

ଭାରି ଅପରାଧ, ଅର୍ଥାତ୍ ହତ୍ୟା, ଅପରାଧମୂଳକ ନରହତ୍ୟା ଡକାଇତି, ଦସ୍ୟୁତା, ଗୁପ୍ତ ଭାବେ ଅନଧିକାର ଗୃହ ପ୍ରବେଶ କିମ୍ବା ସିନ୍ଧି, ଗୋମେଷାଦି ଚୋରି, ଓ ୫୦ ଟଙ୍କାରୁ ଉର୍ଦ୍ଧମୂଲ୍ୟ ସମ୍ପତ୍ତିର ଅନ୍ୟାନ୍ୟ ଚୋରି, ଗୁରୁତର ଆଘାତ, ହଙ୍ଗାମା ଓ ଅନ୍ୟ କୌଣସି ଗୁରୁତର ସ୍ୱାଭାବିକ ଅପରାଧ ରିପୋର୍ଟ କରିବା ବେଳେ ଉତ୍ତର ଦେଲଶିବାକୁ ଥିବା ପ୍ରଶ୍ନମାନ । ଅନ୍ୟ ପୃଷ୍ଠାରେ ମୁଦ୍ରିତ ଉପଦେଶମାନଙ୍କ 3 ୟ ଦଫା ଦେଖ । — ଉତ୍ତର

1. କେଉଁ ତାରିଖରେ, କେଉଁ ସମୟରେ କେଉଁ ସ୍ଥାନରେ ଓ କେଉଁ ବ୍ୟକ୍ତି ଦେଇ ତୁମ୍ଭେ ପ୍ରଥମ ସମ୍ବାଦ ପ୍ରାପ୍ତ ହେଲ?

୨. ଅପରାଧଟି କଅଣ? (ଗୋଟିଏ କଥାରେ, ଯଥା, "ହତ୍ୟା," "ଡକାଇତି,")

୩. କେଉଁ ତାରିଖରେ, କେତେ ଘଣ୍ଟାବେଳେ, କେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ, ଓ କେଉଁ ଗ୍ରାମରେ ବା ପଲ୍ଲିରେ ଅପରାଧଟି ଚାଲିଲା

୪. ମୁଦ୍ଦେଇ କିଏସେ

5. ଅସାମୀମାନେ ଚିହ୍ନା ଗଲେ କି? ଚିହ୍ନା ଯାଇଥିଲେ ସେମାନେ କିଏସେ? ପ୍ରତି ଅସାମୀକୁ କିଏ ଚିହ୍ନିଲା? ଅସାମୀମାନଙ୍କ ବିବରଣ ଓ ସେମାନଙ୍କ ଗ୍ରାମମାନ ଜାଣିଥିଲେ ତାହା ଲେଖ ।

6. କୌଣସି ଅସାମୀ ଚିହ୍ନା ଯାଇ ନଥିଲେ, କେଉଁମାନଙ୍କୁ ସନ୍ଦେହ କରାଗଲା ଓ କାହିଁକି?

7. କୌଣସି ବ୍ୟକ୍ତି ଧୃତ କରା ଯାଇଥିଲେ ଅପରାଧକୁ ସମ୍ବନ୍ଧ ଥିବା କି ସମ୍ପତ୍ତି ତାହା ପାଖରେ ମିଳିଲା?

8. ହଜି ଯାଇଥିବା ସମ୍ପତ୍ତିର ଗୋଟିଏ ତାଲିକା, ଯେତେ ଦୂର ସମ୍ଭବ ଚିହ୍ନ ଓ ମୂଲ୍ୟ ଓ ବିବରଣ ଚିହ୍ନମାନଙ୍କ ସହିତ ଲେଖ ।

୨. କେଉଁ ତାରିଖରେ, କେତେ ଘଣ୍ଟା ସମୟରେ, କେଉଁ ସ୍ଥଳରେ ଏବଂ କାହାଦ୍ୱାରା ଏହି ରିପୋର୍ଟ ଲେଖାଗଲା?

10. କେଉଁ ଗ୍ରାମ ଚୌକିଦାର ଦେଇ, କେଉଁ ସମୟରେ ଏବଂ କେଉଁ ସ୍ଥଳରୁ ଏହି ରିପୋର୍ଟ ପଠାଗଲା?

ଏଠାରେ ଉଲ୍ଲେଖ କରିବାର ବିଷୟ ଏହି ଯେ ୧୯୩୦ ଖ୍ରୀଷ୍ଟାବ୍ଦରେ ମଧ୍ୟ ସରକାରୀ ଭାଷା ରୂପେ ଓଡ଼ିଆର ପ୍ରଚଳନ ରହିଥିଲା । ସଂଗୃହୀତ ଏକ ଡାକଘର ରସିଦ୍‌ରୁ ଏହାର ପ୍ରମାଣ ମିଳିଥାଏ (ଏଥି ସହ ସଂଲଗ୍ନ) ପୁନଶ୍ଚ ଏକମାତ୍ର ରସିଦ୍‌ରେ ବିମା-ଦ୍ରବ୍ୟ, ରେଜିଷ୍ଟରୀ ପାର୍ଶେଲ ଓ ମନି ଅର୍ଡର ମଧ୍ୟ ହୋଇ ପାରୁଥିଲା । ବର୍ଣ୍ଣ ଅଶୁଦ୍ଧି ତଥା ଇଂରାଜୀ ଭାଷାର ବ୍ୟବହାର (ଅର୍ଥାତ୍ 'ବିମା' "ରେଟ୍") ଏଥିରୁ ସୁସ୍ପଷ୍ଟ ।

ସେହିପରି ଅନ୍ୟ ଏକ ମୁଦ୍ରିତ ସରକାରୀ କାଗଜରୁ ଏହି ଶବ୍ଦଗୁଡ଼ିକ ପ୍ରଣିଧାନଯୋଗ୍ୟ :—"କରଇଃ" "ଦିଆଯିବା" "ହସ୍ତାଦେଇ", "କହଣ" ? "ଡ଼କାଇତୀ", "ଅପରାଧଟି ଚଳାଇ", "ଧୃତ", "ମିଳାଏ",?

ସୁତରାଂ ଏହା ସ୍ଥିର ନିଶ୍ଚିତ ଯେ ଭାଷା କ୍ଷେତ୍ରରେ ମଧ୍ୟ ବିବର୍ତ୍ତନ ସଂଘଟିତ ହେବାରେ ଲାଗଛି, କେତେକ କ୍ଷେତ୍ରରେ ଇଂରାଜୀର ପ୍ରଭାବ ଗଡ଼ଜାତି ଶାସନର ପ୍ରଭାବ ଓ ଅନ୍ୟ କେତେକ କ୍ଷେତ୍ରରେ ଛପା ବହି ପତ୍ର, ସ୍କୁଲ୍ ଓ ରେଡ଼ିଓ, ସମ୍ବାଦପତ୍ର ମାଧ୍ୟମରେ ଆଦିବାସୀମାନଙ୍କର ଭାଷାର ମୂଳପିଣ୍ଡକୁ ସ୍ପର୍ଶ କରୁଥିବାର ଉପଲବ୍ଧି କରାଯାଇଛି । ଅପରପକ୍ଷେ କହିବାକୁ ଗଲେ ଆଦିବାସୀ ଭାଷା କ୍ଷେତ୍ରରେ ଏକ ବୈପ୍ଳବିକ ପରିସ୍ଥିତି ସୃଷ୍ଟି ହେବାରେ ଲାଗିଛି । ଓଡ଼ିଆକୁ ସେମାନେ ଆପଣା କରିବାରେ ଚେଷ୍ଟିତ । ହେଲେ ସେଥିରେ ସଫଳକାମୀ ହେବା ନିମନ୍ତେ ରହିଛି ଆମ୍ଭମାନଙ୍କର ଗୁରୁ-ଦାୟିତ୍ୱ । କାରଣ ସେମାନଙ୍କର ପାରିପାର୍ଶ୍ୱିକ ପରିବେଶ ତଥା ସେମାନଙ୍କର ସମାଜର ଚଳଣୀକୁ ଦୃଷ୍ଟି ଆଗରେ ରଖି ତଦନୁରୂପ ସୁଖ ପାଠ୍ୟ ଓଡ଼ିଆ ପୁସ୍ତକ ପ୍ରଣୟନ କରାଗଲେ ଆଦିବାସୀ ଓ ଅଣ-ଆଦିବାସୀମାନଙ୍କ ମଧ୍ୟରେ ଗଢ଼ି ଉଠିଥିବା ପ୍ରାଚୀର ଲୋପ ପାଇ ଯୋଗାଯୋଗ ତଥା ସମନ୍ୱୟ ରକ୍ଷା କରାଯାଇ ପାରିବ ବୋଲି ଗଭୀର ବିଶ୍ୱାସ । ଏଥିନିମନ୍ତେ ଆବଶ୍ୟକ ସହାନୁଭୂତି, ସହଯୋଗିତା ଏବଂ ନିଃସ୍ୱାର୍ଥ ଭାବେ ମାନସିକ ପ୍ରସ୍ତୁତି ।

ନୃତତ୍ତ୍ୱ ବିଭାଗ
ସରକାରୀ ମହାବିଦ୍ୟାଳୟ, ଫୁଲବାଣୀ



# ସରକାରୀ ସ୍ତରରେ ଓଡ଼ିଆ ଭାଷା ପ୍ରଚଳନ

— ଅଧ୍ୟାପକ ଚନ୍ଦ୍ରାମଣି ଭାରତୀ —

ଅତ୍ୟନ୍ତ ଆନନ୍ଦର ବିଷୟ ଆମ୍ଭମାନଙ୍କର ବହୁ ଆକାଂକ୍ଷିତ ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସୁବର୍ଣ୍ଣ ଜୟନ୍ତୀ ଅବସରରେ ସରକାରୀ ସ୍ତରରେ ପ୍ରଚଳନ କରାଯାଇଛି । ଏଥିପାଇଁ ବହୁ ପୂର୍ବରୁ ସରକାରୀ ସ୍ତରରେ ତତ୍ପରତା ପ୍ରକାଶ ପାଇଥିଲା । ମୁଖ୍ୟମନ୍ତ୍ରୀଙ୍କ ଅଭିଳାଷ ମତେ ମୁଖ୍ୟ ଶାସନ ସଚିବ ସରକାରଙ୍କ ସଚିବାଳୟରେ ବିଭିନ୍ନ ବିଭାଗ ଓ ବିଭାଗୀୟ ମୁଖ୍ୟ ଦପ୍ତରମାନଙ୍କୁ ପୂର୍ବରୁ ନିର୍ଦ୍ଦେଶ ଦେଇ ପରୀକ୍ଷାମୂଳକ ଭାବେ ଓଡ଼ିଆ ଭାଷାକୁ ସରକାରୀ କାର୍ଯ୍ୟରେ ମାଧ୍ୟମ ରୂପେ ପ୍ରଚଳନ କରାଇଥିଲେ । ଏଥିପାଇଁ ପର୍ଯ୍ୟାପ୍ତ ପରିମାଣର ଓଡ଼ିଆ ମୁଦ୍ରାକ୍ଷରୀ ଯନ୍ତ୍ର ଯୋଗାଣ ପୂର୍ବକ ସ୍ୱକୀୟ ସହାୟକ ଓ ମୁଦ୍ରକମାନଙ୍କୁ ତାଲିମ ଦିଆଯାଇଛି ।

ପ୍ରତ୍ୟେକ ଜାତିପକ୍ଷରେ ଦୁଇଟି ମୁଖ୍ୟ ଉପାଦାନ ସର୍ବଦା ସ୍ୱୀକୃତ । ପ୍ରଥମଟି ମାତୃଭୂମି ଓ ଦ୍ୱିତୀୟଟି ମାତୃଭାଷା । ଜାତି ପକ୍ଷରେ ମାତୃଭୂମି ଯେଉଁଳି ଗୁରୁତ୍ୱପୂର୍ଣ୍ଣ, ମାତୃଭାଷାର ସ୍ୱୀକୃତି ମଧ୍ୟ ଅପେକ୍ଷାକୃତ ପରିମାଣରେ ଗୁରୁତ୍ୱପୂର୍ଣ୍ଣ । ପୃଥିବୀର ସବୁ ଉନ୍ନତ ଜାତି ଓ ଦେଶର ନିଜସ୍ୱ ମାତୃଭାଷା ରହିଛି । ଋଷିଆ, ଆମେରିକା, ଜାପାନ, ଜର୍ମାନ ଓ ଫ୍ରାନସ ପ୍ରଭୃତି ଦେଶର ମାତୃଭାଷା ଅଭିମାନ ଅତ୍ୟଧିକ । ଏମାନେ ଇଂରେଜୀ ଭାଷାରେ କାର୍ଯ୍ୟକରିବାକୁ ପରାଙ୍ମୁଖ । ସେମାନଙ୍କର ଭାଷାକୁ ସେମାନେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାସମ୍ମତ କରିଛନ୍ତି । ସୁତରାଂ ସ୍ୱାବଲମ୍ବୀ ହେବାରୁ ଅସୁବିଧାର ସମ୍ମୁଖୀନ ସେମାନେ ହେଉନାହାନ୍ତି । ଆୟାରଲାଣ୍ଡ ସ୍ୱାଧୀନ ହେବାର ପରଦିନ ଗାଲିକ୍ ଭାଷାରେ କାର୍ଯ୍ୟ ଚାଲିଲା, ଇଜ୍ରାଇଲ୍ ସ୍ଥାପନ ହେବାପରେ ହିବ୍ରୁ ଭାଷାରେ ସେମାନେ ନିଜର କାର୍ଯ୍ୟ ସଂପାଦନ କଲେ । ଏ ଭାଷାଦ୍ୱୟ ପୂର୍ବରୁ ମୃତବତ୍ ପଡ଼ିଥିଲେ । ଯଦି ଏହା ସମ୍ଭବ ହୋଇ ପାରୁଛି ତେବେ ଏକ ସକ୍ରିୟଭାଷା ଓଡ଼ିଆ କାହିଁକି ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାର ୫୦ ବର୍ଷ ପରେ ମଧ୍ୟ ତାର ଜାତିର ଗଣ-ମାଧ୍ୟମ ହୋଇ ନପାରିବ ? ପୁନଶ୍ଚ ବଙ୍ଗଳା ଓ ହିନ୍ଦି ଆଦି ପ୍ରାଦେଶିକ ଭାଷାରେ ଯଦି ସେ ପ୍ରଦେଶର ରାଜକାର୍ଯ୍ୟ ସଂପାଦିତ ହୋଇପାରୁଛି, ତେବେ ଓଡ଼ିଶାରେ ଓଡ଼ିଆ ଭାଷାରେ ତାହା କାହିଁକି ହୋଇ ନପାରିବ? ଓଡ଼ିଆଭାଷା କୌଣସି ପ୍ରାଦେଶିକ ଭାଷା ଓ ସାହିତ୍ୟ ଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ ।

ଏଥିପାଇଁ ଆମର ମନୋବୃତ୍ତିର ଆବଶ୍ୟକ । ଏହି ମନୋବୃତ୍ତିକୁ ଆମେ ନ ଆଣିଲେ ଅଣ-ଓଡ଼ିଆମାନଙ୍କଠାରୁ ଆଶା କରିବା ବୃଥା । ଦିନଥିଲା ଯେତେବେଳେ ବଙ୍ଗଳା ଜାତିର ରାଧାନାଥ, ରାମଶଙ୍କର, ଗୌରୀଶଙ୍କର, ଉମେଶଚନ୍ଦ୍ର ସରକାର, ଅନ୍ନଦାଶଙ୍କର ଓ ଶରତଚନ୍ଦ୍ର ମୁଖାର୍ଜୀ ଏବଂ ମରାଠୀ ଜାତିର ମଧୁସୂଦନ ରାଓ ଆଦି ସାହିତ୍ୟ-ରଥୀମାନେ ଓଡ଼ିଶାକୁ ନିଜର ମାତୃଭୂମି ଓ ଓଡ଼ିଆକୁ ନିଜର ମାତୃଭାଷା ଭାବେ ଗ୍ରହଣକରି ସ୍ୱଜୀବନ ଓଡ଼ିଆ ସାହିତ୍ୟ ସୃଷ୍ଟିରେ ନିୟୋଜିତ କରିଥିଲେ । ଓଡ଼ିଶାରେ ବସବାସ ବା ଚାକିରୀ କରୁଥିବା ପ୍ରତ୍ୟେକବ୍ୟକ୍ତି ଏହାକୁ ଏକ ପବିତ୍ର ଜାତୀୟ କାର୍ଯ୍ୟରୂପେ ମାନସିକ ସ୍ତରରେ ଦୃଢ଼ଭାବେ ଗ୍ରହଣ କଲେ ଏହା ନିଶ୍ଚୟ ସଫଳ ହେବ । ସର୍ବଦା ଆମକୁ ମନେ ରଖିବାକୁ ହେବ ଯେ ଏ ଯେଉଁ ଛିନ୍ନମସ୍ତା, ଛିନ୍ନହସ୍ତା, ଛିନ୍ନପଦା, ବିକଳାଙ୍ଗ ଓଡ଼ିଶାଭୂମି ଆମେ ପାଇଲେ, ତାହା କେବଳ ଓଡ଼ିଆ ଭାଷାକୁ ଭିତ୍ତିକରି ଯଦି ମାତୃଭାଷା ନ ରହିବ ତେବେ ଏ ଭୂମି ପରେ କୌଣସି ପ୍ରଦେଶସହ ମିଶିଯିବା କିଛି ବିଚିତ୍ର ନୁହେଁ ।

ଯେଉଁମାନେ ଏ କାର୍ଯ୍ୟରେ ଅନ୍ତରାୟ ସୃଷ୍ଟି କରୁଛନ୍ତି, ସେଉଳି ଶିଖିମନାଇ ଯୁଗେ ଯୁଗେ ଥିଲେ ଏବଂ ରହିବେ । ସେମାନଙ୍କର ଏହା ବିରୁଦ୍ଧରେ ନିମ୍ନଲିଖିତ ମତମାନ ପରି-ପ୍ରକାଶିତ ହୁଏ :—

(୧) ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ ଚାଲିଲେ ଠିକ୍‌ଭାବେ ଆମେ ନିଜକୁ ପ୍ରକାଶ କରି ପାରିବା ନାହିଁ;

(୨) ଓଡ଼ିଆ ଭାଷା ମାଧ୍ୟମରେ ପାଠ୍ୟକ୍ରମରେ ପିଲ-ମାନଙ୍କର ଜ୍ଞାନ ସୀମିତ ହୋଇଯିବ ଏବଂ ସେମାନେ ପ୍ରଯୁକ୍ତିବିଦ୍ୟା ସମ୍ବନ୍ଧରେ ଉପଯୁକ୍ତଭାବେ ଅବହିତ ହୋଇ ପାରିବେ ନାହିଁ;

(୩) ଜାତୀୟ ସ୍ତରରେ ଭାବଧାରାର ବିନିମୟ ହୋଇ ପାରିବ ନାହିଁ;

(୪) ବିଦେଶ ଯାତ୍ରା କରୁଥିବା ଛାତ୍ର ଓ ଗବେଷକମାନେ ଅସୁବିଧାର ସମ୍ମୁଖୀନ ହେବେ ଏବଂ ;

(୫) ଜାତୀୟ ସଂହତି ବ୍ୟାହତ ହେବ, ଇତ୍ୟାଦି ।

ଏହାର ଉତ୍ତରରେ କୁହାଯାଇପାରେ ଯେ ଯଦି ମାତୃ-ଭାଷାରେ ଆମେ ନିଜର ଭାବବ୍ୟକ୍ତ କରିପାରୁନାହୁଁ, ଏକ ଶୁକବତ୍ ଘୋଷା ହୋଇଥିବା ବିଦେଶୀ ଭାଷାରେ ଆମେ ଭବ-ବ୍ୟକ୍ତ ଠିକ୍‌ଭାବେ କରିପାରିବା କି ? ଆମେ ଯାହା ଇଂରେଜୀରେ କହୁ ତାହା ଆମ ମନରେ ଖୁବ୍ ଶୀଘ୍ର ଅନୂଦିତ ହୋଇ ପ୍ରକାଶିତ ହୋଇଥାଏ । ଏହା ଏତେ ଶୀଘ୍ର ଘଟେ ଯେ ଆମେ ତାହା ଜାଣିପାରୁନାହିଁ । ଆମେ ଚିନ୍ତା କରୁ ଓ ସ୍ୱପ୍ନଦେଖୁ ମାତୃ-ଭାଷାରେ । ୨୦୦ ବର୍ଷ ପୂର୍ବେ ଯେତେବେଳେ ଇଂରେଜମାନେ ଏ ଭୂମିକୁ ଆସିନଥିଲେ, ସେତେବେଳେ କ'ଣ ଆମେ ନିଜର ମନୋଭାବ ପ୍ରକାଶ କରିପାରୁ ନଥିଲେ ? ଯଦି ସେମାନେ ଆସିବା ସଙ୍ଗେ ସଙ୍ଗେ ଇଂରେଜୀ ଶିକ୍ଷାଦେଇ, ଆମ ମାତୃ-ଭାଷାରେ ବାଇବେଲ ପ୍ରକାଶ କରି ପାରିଲେ ଏବଂ ଆମ ଭାଷା ଶିକ୍ଷା କରି ପାରିଲେ, ତେବେ ଆମେ କାହିଁକି ନିଜଭାଷାରେ କିଛିଦିନ ପରେ ଭାବ ପ୍ରକାଶ କରିନପାରିବା ? ଇଂରେଜୀରେ ଓଡ଼ିଆଭାଷାର କେତେକ ଉପଯୁକ୍ତ ପାରିଭାଷିକ ଶବ୍ଦ ନାହିଁ, ଫଳରେ ସେଗୁଡ଼ିକ ବିକୃତଭାବେ ଅନୂଦିତ ହୋଇଛି । ଅଦାଲତରେ ସେଥିପାଇଁ କେତେକ ମୂଳ ଓଡ଼ିଆ ଶବ୍ଦକୁ ଇଂରେଜୀ ଲିପିରେ ଅନୁରୂପ ଭାବେ ରଖାଯାଏ । ଇଂରେଜୀ ଶବ୍ଦର ଓଡ଼ିଆ ପରିଭାଷା ସେଇଭଳି ବିକୃତ ହେବା ବଚିତ୍ର ନୁହେଁ, କାରଣ ଏହା ଅନୁବାଦର ଅନୁବାଦ ।

ବଙ୍ଗଳାର ଅଧ୍ୟାପକ ସତ୍ୟେନ୍ ବୋଷ କହିଥିଲେ ଯେ ପରମାଣୁ ତତ୍ତ୍ୱ ଭଳି ଜଟିଳ ବିଦ୍ୟାକୁ ସେ ବିନା ଇଂରେଜୀ ଭାଷା ସହାୟତାରେ ପିଲମାନଙ୍କୁ ବୁଝାଇ ଦେବେ । ତେବେ ଓଡ଼ିଆ ପାଠ୍ୟକ୍ରମର ମାଧ୍ୟମ ପାଇଁ ଅସୁବିଧା କାହିଁକି ? ଏଥିପାଇଁ ଓଡ଼ିଆ ଭଷାରେ ଥିବା ପରିଭାଷାର ଦୈନ୍ୟ ଦୂର କରିବାକୁ ହେବ । ସତ୍ୟେନ୍ ବୋଷଙ୍କ ଭଳି ଉଭୟ ଇଂରେଜୀ ଓ ମାତୃଭାଷାରେ ଦକ୍ଷତା ଥିବା ସବ୍ୟସାଚୀ ଅଧ୍ୟାପକ ଓ ଶିକ୍ଷକ ସୃଷ୍ଟି ହେବା ଆବଶ୍ୟକ ।

ଜାତୀୟ ଭାବଧାରର ଆଦାନ ପ୍ରଦାନ ପାଇଁ ରାଷ୍ଟ୍ରଭାଷା ହିନ୍ଦୀ ରହିଛି । ଏହାର ଓଡ଼ିଆ ଭାଷାସହ ଏପରି ସାମ୍ୟ ରହିଛି ଯେ ପ୍ରାୟ ସାଧାରଣ ଅଶିକ୍ଷିତ ଓଡ଼ିଆ ଲୋକ ମଧ୍ୟ ହିନ୍ଦୀ ବୁଝନ୍ତି ଓ କୁହନ୍ତି । ପାଶ୍ଚାତ୍ୟ ଉନ୍ନତ ଦେଶମାନଙ୍କରେ ଯାହାକୁ ଦେଶାନ୍ତର ଯାତ୍ରା କରିବାକୁ ହୁଏ ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ଓ କାରିଗରୀ କୌଶଳ ଶିକ୍ଷା କରିବାପାଇଁ, ସେମାନେ ସେ ଦେଶର ଭାଷା ଶିକ୍ଷା କରିଥାନ୍ତି । ବହୁ ଭାଷା ଶିକ୍ଷା କରିବାରେ ପ୍ରତିବନ୍ଧକ ନାହିଁ । ଏଣୁ ବିଦେଶଗାମୀ ଛାତ୍ର ଓ ଗବେଷକମାନେ ଇଂରେଜୀରେ ପ୍ରବୀଣ ହେବା ଅର୍ଥନୁହେଁ ଯେ ସେମାନେ ଓଡ଼ିଆରେ ଭାବ ପ୍ରକାଶ କରିପାରିବେ ନାହିଁ । କିନ୍ତୁ ଏମାନଙ୍କ ସଂଖ୍ୟା ଶତକଡା ୫ ଭାଗ । ଯେଉଁମାନେ ଉଭୟ ଭାଷାରେ ଦୁର୍ବଳ, ସେମାନେ ବିକୃତ ସଙ୍କର ଭାଷା ବ୍ୟବହାର କରନ୍ତି । ଅବଶ୍ୟ ଭିନ୍ନ ଭାଷାଭାଷୀମାନଙ୍କ ମଧ୍ୟରେ କଥୋପକଥନ ଭାବ ପ୍ରକାଶନ ନିମିତ୍ତ ଏହାର ବ୍ୟବହାର ଦୋଷାବହ ନୁହେଁ ।

ଇଂରେଜୀଭାଷା ଆମର ଜାତୀୟ ସଂହତିକୁ ରକ୍ଷା କରିଛି କହିବା ଏକ ମାନସିକ ବିକୃତି । ଭାରତର ପ୍ରାୟ ସବୁଲୋକ ନିଜ ମାତୃଭାଷାରେ ମତବ୍ୟକ୍ତ କରନ୍ତି । ଇଂରେଜୀକୁ ଆମ୍ଭେମାନେ ସୌଖିନ ଭାଷା, ଅଭିଜାତ ଭାଷାରୂପେ ବ୍ୟବହାର କରୁ । ଯାହାଙ୍କ ହୃଦୟରେ ମାତୃଭାଷା ପ୍ରୀତି ନାହିଁ, ତା ଅନ୍ତରରେ ଜାତୀୟ ପ୍ରୀତି ସୃଷ୍ଟି ହେବ କିପରି ? ଯଦି ଇଂରେଜୀଭାଷା ଆମର ମାତୃଭାଷାର ସ୍ଥାନ ଅଧିକାର କରେ ତାହେଲେ ଭାରତ କଳାମୁଣ୍ଡିଆଙ୍କ ବିଲାତଭୂଇଁ ହୋଇଯିବ ପରା! ଯେଉଁ ଦେଶର ଶତକଡ଼ା ୩୪ ଭାଗ ଲୋକ ସାକ୍ଷର, ସେଠାରେ ଇଂରେଜୀଭଳି ଏକ ବିଦେଶୀଭାଷାକୁ ଶିକ୍ଷାମାଧ୍ୟମ ଓ ସରକାରୀ ସ୍ତରରେ ପ୍ରଚଳନ ଫଳରେ ଲୋକମାନଙ୍କର ମାତୃଭାଷା ଓ ଶିକ୍ଷାପ୍ରୀତି କିଭଳି ବୃଦ୍ଧି ହେବ, ତାହା ସହଜରେ ଅନୁମେୟ । ସମୂହ ଜନତାକୁ ଶିକ୍ଷାଦେବାପାଇଁ ମାତୃଭାଷାହିଁ ସର୍ବୋତ୍କୃଷ୍ଟ ମାଧ୍ୟମ

ମାତୃଭାଷା ପ୍ରୀତିହୀନ ଓଡ଼ିଆଜାତି ଉଦ୍ଦେଶ୍ୟରେ ଜାତୀୟ କବ ଅଭିମାନରେ କହିଛନ୍ତି:–

"କୁକୁର କିମ୍ବାଇ ଗୋଟେ ବନାଇବ ଘର
ଗଞ୍ଜିବୁଲେ ବାରମିଶା ଅଇଁଠା ପତର" ।

ମାତୃଭାଷା ପ୍ରତି ସ୍ୱାଭିମାନ ସମସ୍ତଙ୍କର ଜାଗ୍ରତ ହେବା ଉଚିତ । ଓଡ଼ିଶାର ନିର୍ଦ୍ଦିଷ୍ଟ ସଂସ୍କୃତି ଆଉ ପରିଦୃଶ୍ୟ ହେଉନାହିଁ । ମାତୃଭୂମି ପାଇଁ ପ୍ରାଣପାତ ଉଦ୍ୟମ କଲେ ସୁଦ୍ଧା ବିଚ୍ଛିନ୍ନାଞ୍ଚଳ ଆଉ ଓଡ଼ିଶାରେ ମିଶାଇ ହେବନାହିଁ । ଏହା ସପକ୍ଷରେ ସ୍ୱର ଉତ୍ତୋଳନ ଅର୍ଥ ଅରଣ୍ୟ–ରୋଦନ ପରନ୍ତୁ ଏଭୂମିର ଭାଷାକୁ ବିକଳାଙ୍ଗ, ବିକୃତ ଏବଂ ପରେ ମୂଳପୋଛ କରିବାକୁ ଦିଆ ନଯିବାପାଇଁ ସଂଗ୍ରାମ ହେବା ଆବଶ୍ୟକ । ଏ ସଂଗ୍ରାମର ସ୍ଫୂର୍ତ୍ତି ସାରଳା ଦାସଙ୍କ ସମୟର ସଂସ୍କୃତ-ପ୍ରାନ୍ତୀୟ ଭାଷା ସଂଘର୍ଷ, ୧୮୬୯ ଖ୍ରୀଷ୍ଟାବ୍ଦରେ ଭାଷା ବିଲୋପ ଆନ୍ଦୋଳନଠାରୁ ଅଧିକ ହେବା ଆବଶ୍ୟକ । କାରଣ ଏ ସମୟ ମଧ୍ୟ ଓଡ଼ିଆ ଭାଷା ପକ୍ଷରେ ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ଇଂରେଜୀପାଠ ନିମିତ୍ତ ଆମେ ଯେତିକି ପରିଶ୍ରମ କରୁଛୁ ତାହାର କିୟଦଂଶ ପ୍ରଚେଷ୍ଟାରେ ମାତୃଭାଷା ପରିଶୁଦ୍ଧ ହୋଇ ପାରିବ ।

ଏଜାତିର ଜାତିସ୍ମରମାନେ ଯେଉଁ ପ୍ରାଣପାତ ଉଦ୍ୟମ କରି ଭାଷା-ଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିଛନ୍ତି, ସେମାନଙ୍କର ଜୟନ୍ତୀ, ଶ୍ରାଦ୍ଧ-ବାର୍ଷିକୀ ପାଳନ ପୂର୍ବକ ଶୁଷ୍କ ଅଶ୍ରୁପାତ ଅପେକ୍ଷା ସେମାନଙ୍କର ନିର୍ଦ୍ଦେଶିତ ପଥରେ ଗତିକଲେ ଏବଂ ସେମାନଙ୍କର ସୃଷ୍ଟଭାଷାର ରକ୍ଷଣାବେକ୍ଷଣ କରିବାକୁ ଉନ୍ନତି ପଥରେ ଅଗ୍ରଗାମୀ କରାଇଲେ ସେମାନଙ୍କର ଆତ୍ମା ଶାନ୍ତିରେ ସହାବସ୍ଥାନ

କରି ଆମକୁ ଆଶିଷ ପ୍ରଦାନ କରିବ । ପରପୁରୁଷମାନେ ମଧ୍ୟ ଆମ ସମୟରେ ଭାଷା ନିଶ୍ଚିହ୍ନ ହୋଇଛି ବୋଲି ଦୋଷାରୋପ କରି ଆମକୁ ନିନ୍ଦା କରିବେ ନାହିଁ ।

ଇଂରେଜ ହାକିମମାନେ ଓଡ଼ିଆ ଭାଷା ଶିକ୍ଷା କରି ସାଧାରଣ ଲୋକଙ୍କ ଅସୁବିଧା ବୁଝିବାକୁ ତତ୍ପର ହେଉଥିଲେ । ସେହି କାଇଦାରେ ଗଢ଼ା ସ୍ୱାଧୀନ ଭାରତର ହାକିମମାନେ ସାଧାରଣ ମଣିମୁଣ୍ଡିଆଙ୍କୁ ବେଶୀ ଇଂରେଜୀ କହନ୍ତି ତାଙ୍କର ହାକିମ ପଣକୁ ଜାହିର କରିବା ପାଇଁ, ବୁଝୁ ନବୁଝୁ ଇଂରେଜୀ ଭାଷା "କାଇ ଆଗରେ ମୂଳା ଝୁଲାଇଲା" ପରି ଆମକୁ କିଭଳି ଲାଗେ, ସମ୍ବିଧାନ ସ୍ୱୀକୃତି ଭାଷା କହିବାକୁ ଯଦି ଏତେ ସଙ୍କୋଚ, ତା'ହେଲେ ସମ୍ବିଧାନ ଅସ୍ୱୀକୃତ ଅନ୍ୟାନ୍ୟ ଭାଷା ଅବସ୍ଥା କ'ଣ ହୋଇପାରେ ? ରାଜକାର୍ଯ୍ୟ ମାତୃଭାଷାରେ ସଂପାଦନ କରିବା ପାଇଁ ପରାଂମୁଖ ହେବାର ମୁଖ୍ୟ କାରଣ ହେଲା ଆମର 'ଅଛୁ' ଶକ୍ତି ଖୁବ୍ ବେଶୀ, 'ହେବୁ' ଶକ୍ତି ନାହିଁ । ଏଥିପାଇଁ ଆମେ ଇଂରେଜମାନଙ୍କୁ ଶେଷ ପର୍ଯ୍ୟନ୍ତ ବିରୋଧ କରିଥିଲୁ । ଏବେ ଇଂରେଜୀ ଭାଷାକୁ ଉଠାଇ ନଦେବାକୁ ମଧ୍ୟ ଶେଷ ପର୍ଯ୍ୟନ୍ତ ବିରୋଧ କରୁଛୁ । ବଥ ସିନା ବିନ୍ଧେ, କିନ୍ତୁ ତାହା ଆବୁରେ ପରିଣତ ହୋଇଗଲେ ସହିହୋଇଯାଏ । ଏଣୁ ଇଂରେଜ ଶାସନ ଓ ଇଂରେଜୀଭାଷା କେବେ ସିନା ଆମର ଶିରୋପୀଡ଼ାର କାରଣ ହେଉଥିଲା କିନ୍ତୁ ଆଜି ନୁହେଁ । ଏ ପ୍ରକାର ଚିନ୍ତାଧାରା ପ୍ରଗତିଶୀଳ ଜାତିପକ୍ଷରେ କ୍ଷତିକାରକ ।

ଏଣୁ ଓଡ଼ିଆ ଭାଷାକୁ ସରକାରୀ ଓ ବେସରକାରୀ ସ୍ତରରେ ପ୍ରଚଳନ କରିବା ସଙ୍ଗେ ସଙ୍ଗେ ଭାଷା ଓ ସାହିତ୍ୟର ଉନ୍ନତି କଳ୍ପେ ଆମକୁ ନିମ୍ନଲିଖିତ କାର୍ଯ୍ୟକ୍ରମମାନ ହାତକୁ ନେବା ଆବଶ୍ୟକ—

ସରକାରୀ ଉଦ୍ୟମରେ:—

(୧) ପରିଭାଷା ବିଜ୍ଞାନ, ଶୁଦ୍ଧ ବ୍ୟାକରଣ, ଅଭିଧାନ ଓ ବ୍ୟାବହାରିକ ଶବ୍ଦାବଳୀର ପ୍ରଚଳନ କରାଯିବା ଉଚିତ ।

(୨) ପୂର୍ଣ୍ଣଚନ୍ଦ୍ର ଭାଷାକୋଷ, ଓଡ଼ିଆ ଜ୍ଞାନମଣ୍ଡଳର ବହୁଳ ପ୍ରକାଶନ ଓ ସୁଲଭ ମୂଲ୍ୟରେ ବିତରଣ କରାଯିବା ଉଚିତ ।

(୩) ବହୁସଂଖ୍ୟକ ଉନ୍ନତ ବିଶ୍ୱସାହିତ୍ୟକୁ ଓଡ଼ିଆରେ ଅନୁବାଦ କରାଯିବା ଉଚିତ ।

(୪) ବହୁସଂଖ୍ୟକ ସମ୍ମାନ ଓ କର୍ମଶାଳାରେ ଏବିଷୟ ଆଲୋଚିତ ହେଉ ।

(୫) ଆକାଶବାଣୀ ଓ ଦୂରଦର୍ଶନରେ ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମରେ ଇଂରେଜୀ ଶିକ୍ଷାଦାନ ଭଳି ଓଡ଼ିଆ ବ୍ୟାକରଣ ଓ ପରିଭାଷା ବିଷୟରେ ଶିକ୍ଷାଦାନ କରାଯାଉ । ଓଡ଼ିଶାର ଗୌରବମଣ୍ଡିତ ଐତିହ୍ୟ ଓ ପରମ୍ପରା ବିଷୟରେ ସର୍ବସାଧାରଣଙ୍କୁ ଏହାମାଧ୍ୟମରେ ଅବହିତ କରାଯାଉ । ବିଭିନ୍ନ ପାଠ୍ୟକ୍ରମରେ ମଧ୍ୟ ଏ ବିଷୟକୁ ଯୋଗକରି ଶିକ୍ଷା ଦିଆଯାଉ ।

(୬) ଅନ୍ୟାନ୍ୟ ଭାରତୀୟ ପ୍ରଦେଶମାନଙ୍କ ଭଳି ମାତୃଭାଷାରେ ଶିକ୍ଷାଦାନ ପଦ୍ଧତିକୁ ତ୍ୱରାନ୍ୱିତ କରାଯାଉ ।

(୭) ଅଣ-ଓଡ଼ିଆମାନଙ୍କ ପାଇଁ ହେଉଥିବା ମଧ୍ୟ ଇଂରେଜୀମାନଙ୍କର ଓଡ଼ିଆ ପରୀକ୍ଷାକୁ ଅପେକ୍ଷାକୃତ କଟିନ କରାଯାଉ । କାରଣ ଓଡ଼ିଶାରେ ପ୍ରଯୁକ୍ତି ବିଜ୍ଞାନୀଙ୍କ ଦାରିଦ୍ର୍ୟ ଆଉ ନାହିଁ । ଫଳରେ ସେମାନଙ୍କ ଅଭାବରେ ଓଡ଼ିଶାର ଉନ୍ନତି ଆଉ ବ୍ୟାହତ ହେବନାହିଁ ।

(୮) ବିଭିନ୍ନ ଅଭିଜ୍ଞ, ତାଲିମପ୍ରାପ୍ତ କମକର୍ତ୍ତା ଏବଂ ଅମଲାମାନଙ୍କ ଦ୍ୱାରା ଅନ୍ୟାନ୍ୟଙ୍କୁ ଓଡ଼ିଆରେ ସରକାରୀ ଓ ବେସରକାରୀ କାର୍ଯ୍ୟ ସଂପାଦନ ନିମିତ୍ତ ଉପଯୁକ୍ତ ତାଲିମ ପ୍ରଦାନ କରାଯାଉ ।

(୯) ଓଡ଼ିଆରେ ସୁସ୍ତୁରୂପେ କାର୍ଯ୍ୟ ସଂପାଦନ କରୁଥିବା କର୍ମକର୍ତ୍ତାମାନଙ୍କୁ ପ୍ରୋତ୍ସାହନ ପ୍ରଦତ୍ତ ହେଉ ।

ସର୍ବସାଧାରଣଙ୍କ ଉଦ୍ୟମରେ—

(୧) ଇଂରେଜୀ ଓ ଓଡ଼ିଆରେ ଦକ୍ଷତା ଥିବା ପ୍ରତ୍ୟେକ ବ୍ୟକ୍ତି ପ୍ରତ୍ୟହ କିଛି କିଛି ପରିଭାଷା ସୃଷ୍ଟି କରନ୍ତୁ । ଆବଶ୍ୟକ ସ୍ଥଳେ ମୂଳ ଇଂରେଜୀ ଶବ୍ଦକୁ ଓଡ଼ିଆ ଲିପିରେ ଉଦାର ହୃଦୟରେ ବ୍ୟବହାର କରାଯାଇ ପାରେ । ଏହାଦ୍ୱାରା ଭାଷାର ଶବ୍ଦକୋଷ ପରିପୁଷ୍ଟ ହେବ। ନିତ୍ୟ-ବ୍ୟବହାରିକ କାର୍ଯ୍ୟରେ ଓଡ଼ିଆ ବ୍ୟବହାର କରନ୍ତୁ—ଚଠପତ୍ର, ଠିକଣା, ନାମ ଫଳକ, ନିମନ୍ତ୍ରଣ ପତ୍ର ଆଦି ଓଡ଼ିଆରେ ଲେଖନ୍ତୁ ।

(୩) ଓଡ଼ିଶାର ବରପୁତ୍ର ଓ ଦେବଦେବୀଙ୍କର ଚତ୍ରପଟ ଘରେ ରଖନ୍ତୁ ।

(୪) ଓଡ଼ିଆ ଭାଷା ଓ ସାହିତ୍ୟର ସାଧାରଣ ଓ ବିଶିଷ୍ଟ କୃତିକୁ କିଣନ୍ତୁ, ପଢନ୍ତୁ ଓ ଆଲୋଚନା କରନ୍ତୁ ।

(୫) ଓଡ଼ିଆ ଲେଖକମାନେ ଗଣଭାଷାରେ ଗଣଜୀବନର ଚିତ୍ର ପ୍ରଦାନ କରି ସାହିତ୍ୟକୁ ଗଣାଭିମୁଖୀ କରନ୍ତୁ । ଫଳରେ ପତ୍ରପତ୍ରିକା ସର୍ବସାଧାରଣଙ୍କର ବୋଧଗମ୍ୟ ହେବ ଏବଂ ସେଗୁଡ଼ିକର ଚାହିଦା ମଧ୍ୟ ବୃଦ୍ଧି ପାଇବ ।

(୬) ଓଡ଼ିଶାର କବି ଏବଂ ଲେଖକମାନେ ବିଦେଶୀ-ଭାଷା ଅପେକ୍ଷା ଓଡ଼ିଆରେ ଉନ୍ନତ ସାହିତ୍ୟ ସୃଷ୍ଟି କରନ୍ତୁ । କାରଣ ଆଣ୍ଟିସ୍ଥିରିଲ ଘର ଆମଦେଶକୁ ଜଳସେଚିତ କରି ନପାରିବାଭଳି ବିଦେଶୀ ଭାଷାରେ ସାହିତ୍ୟ ସୃଷ୍ଟି ଦ୍ୱାରା ଆମ ସାହିତ୍ୟ ପରିପୁଷ୍ଟ ହୋଇପାରିବ ନାହିଁ ।

(୭) ଦୈନନ୍ଦିନ କଥାବାର୍ତ୍ତାରେ ଯଥାସମ୍ଭବ କମ୍ ବିଦେଶୀ ଶବ୍ଦ ବ୍ୟବହାର କରନ୍ତୁ ଓ ଅଣଓଡ଼ିଆ କର୍ମଚାରୀଙ୍କ ସହ ଓଡ଼ିଶାରେ ଓଡ଼ିଆରେ କଥାବାର୍ତ୍ତା

କରନ୍ତୁ । ଫଳରେ ସେମାନେ ଓଡ଼ିଆ ଶିଖି ପାରିବେ ଓ ଓଡ଼ିଶାର ଜନସାଧାରଣଙ୍କ ଭାଷା ବୁଝି ସେମାନଙ୍କ ସେବାରେ ନିଜକୁ ନିୟୋଜିତ କରିପାରିବେ ।

(୮) ସାମାଜିକ ଅନୁଷ୍ଠାନ ଓ ଉତ୍ସବାଦିରେ ଓଡ଼ିଆ ସଙ୍ଗୀତ ଗାନ କରାଯାଉ ଓ ଓଡ଼ିଆ ଚଳଚିତ୍ର ପ୍ରଦର୍ଶିତ ହେଉ । ଏ ଗୁଡ଼ିକରେ ଓଡ଼ିଆ ପୁସ୍ତକମାନ ଉପହାର ରୂପେ ପ୍ରଦାନ କରାଯାଉ ।

(୯) ସର୍ବସାଧାରଣ ଓଡ଼ିଆ ଚଳଚିତ୍ର, ନାଟକ, ଯାତ୍ରା ସୁଆଙ୍ଗ, ଗୀତିନାଟ୍ୟ, ପାଲା, ଦାସକାଠିଆ ଓ ଅନ୍ୟାନ୍ୟ ଲୋକନୃତ୍ୟ ପ୍ରଦର୍ଶନ ଓ ଉପଭୋଗ କରି ଏହାକୁ ଉତ୍ସାହିତ କରନ୍ତୁ ।

(୧୦) ପିଲମାନଙ୍କୁ ଇଂରେଜୀ ମାଧ୍ୟମ ବିଦ୍ୟାଳୟକୁ ନପଠାଇ ବହୁ ସଂଖ୍ୟାରେ ଓଡ଼ିଆ-ମାଧ୍ୟମ ବିଦ୍ୟାଳୟ-ମାନଙ୍କୁ ପଠାଯାଉ ଓ ଓଡ଼ିଆ-ମାଧ୍ୟମ ବିଦ୍ୟାଳୟ ଗୁଡ଼ିକର ଶିକ୍ଷାମାନ ପ୍ରତି ବିଶେଷ ଧ୍ୟାନ ଦିଆଯାଉ ।

(୧୧) ଆଦିବାସୀ ଭାଷାଗୁଡ଼ିକର ଲିଖିତ ରୂପ ପ୍ରକାଶ ପାଉ ଓ ତାହା ସାହିତ୍ୟରେ ମଧ୍ୟ ପ୍ରକାଶିତ ହେଉ ।

(୧୨) ବିଭିନ୍ନ ଆଞ୍ଚଳିକ ଭାଷା ଓ ଆଦିବାସୀ ଭାଷାକୁ ଶୁଦ୍ଧ, ଲିଖିତ ଓ କଥିତ ଓଡ଼ିଆ ଭାଷାରେ ପରିଣତ କରିବା ପାଇଁ ଚେଷ୍ଟା ଆରମ୍ଭ କରାଯାଉ ।

(୧୩) ଭାଷା ଓ ସାହିତ୍ୟର ବାହକ ଓ ଅଗ୍ରଦୂତ ପତ୍ର-ପତ୍ରିକା, ସମ୍ବାଦପତ୍ର, ନେତୃବର୍ଗ, ସାହିତ୍ୟିକ, ଶିକ୍ଷକ ଓ ଅଧ୍ୟାପକମାନେ ଏହାର ନେତୃତ୍ୱ ନିଅନ୍ତୁ ।

ଉପର୍ଯ୍ୟୁକ୍ତ କାର୍ଯ୍ୟକ୍ରମମାନ କେତେକଙ୍କ ପାଇଁ ଅପ୍ରିୟ ହେଲେହେଁ ଜାତିର ଉନ୍ନତି ନିମନ୍ତେ ସତ୍ୟ ଓ ଅପରିହାର୍ଯ୍ୟ । ପ୍ରତ୍ୟେକ ମଙ୍ଗଳ କାର୍ଯ୍ୟରେ ବାଧା ଦେଖାଦିଏ । କିନ୍ତୁ ମାନସିକ ଦାସତ୍ୱ, ମତାନୈକ୍ୟ ଓ ମନାନ୍ତର ଦୂର କରି ପ୍ରତ୍ୟେକ ଏ କାର୍ଯ୍ୟକ୍ରମକୁ ଅବ୍ୟାହତି ରଖିଲେ ଧୀରେ ଧୀରେ ଅସୁବିଧା ଅପସରି ଯିବ । ଉତ୍କଳ ଭାରତୀ ଆତ୍ମପ୍ରତିଷ୍ଠା ଲାଭ କରିବେ ।

ବନ୍ଦେ ଉତ୍କଳ ଜନନୀ ॥

---

ରାଜେନ୍ଦ୍ର ମହାବିଦ୍ୟାଳୟ
ବଲାଙ୍ଗିର-୭୬୭୦୦୨



# ପଶ୍ଚିମ ଓଡ଼ିଶାର ନବାନ୍ନ

ଶ୍ରୀ ଅଚଲେଖ ପ୍ରଧାନ

> ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞ ଭାବିତଃ
> ତୈର୍ଦ୍ଦତ୍ତାନ ପ୍ରଦାୟୈଂଭ୍ୟୋଯୋ ଭୁଙ୍କ୍ତେ ସ୍ତେନ ଏ ବସଃ–୧୨
> ଯଜ୍ଞ ଶିଷ୍ଟା ଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବ କିଲ୍ବିଷୈଃ
> ଭୁଞ୍ଜନ୍ତେ ତେଁ ତ୍ୱଘଂ ପାପାଯେ ପଚନ୍ତ୍ୟାତ୍ମ କାରଣାତ୍–୧୩
> ଅନ୍ନାଭବନ୍ତି ଭୂତାନି ପର୍ଜ୍ଜନ୍ୟା ଦନ୍ନ ସମ୍ଭବଃ
> ଯଜ୍ଞ ଭବତି ପର୍ଜ୍ଜନ୍ୟୋ ଯଜ୍ଞକର୍ମ ସମୁଦ୍ଭବଃ–୧୪
> କର୍ମଯୋଗ–ଗୀତା

ଗୀତାର ଏଇ ତାତ୍ତ୍ୱିକପଂକ୍ତି ଗୁଡ଼ିକର ଉଦ୍‌ଘୋଷଣକରି ...ତି ପ୍ରାଚୀନ-କାଳରୁ ପଶ୍ଚିମ ଓଡ଼ିଶାର ବିସ୍ତୃତ ଅଞ୍ଚଳରେ କୃଷି-...ିକ ନବାନ୍ନ ଭକ୍ଷଣ ମହୋତ୍ସବ ସହସ୍ରାବ୍ଦୀ ବ୍ୟାପୀ ଇତିହାସର ...ତ୍ଥାନ ପତନ ଭିତରେ ଗତିକରି ମଧ୍ୟ ଏ ଯାବତ୍ ଯେ କେବଳ ...ି ରହିଛି ତାନୁହେଁ ବରଂ ପୂର୍ବାପେକ୍ଷା ଆହୁରି ଉତ୍ସାହ ଓ ...ୀପନାର ସହ ପାଳିତ ହେଉଛି ମଧ୍ୟ ।

ପଶ୍ଚିମ ଓଡ଼ିଶା ବୋଲିଲେ ଓଡ଼ିଶାର ପଶ୍ଚିମାଂଶରେ ...ା ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, କଳାହାଣ୍ଡି ଓ ବୌଦ-...ଲବାଣୀ ପ୍ରଭୃତି ଜିଲ୍ଲାମାନଙ୍କୁ ବୁଝାଉଥାଏ । ଏ ଅଞ୍ଚଳର ...ଧିକାଂଶ ଜମି ଉଚ୍ଚଭିପ ମାଳଭୂମି ଶ୍ରେଣୀର ଅନ୍ତର୍ଗତ ହୋଇ ...ାରୁ ଏ ଅଞ୍ଚଳରେ ଛୋଟ ଛୋଟ ଧାନଗୁଡ଼ିକ ଅଧିକ ଚାଷ ...ିଆଯାଉଥାଏ । ଭାଦ୍ରବ ମାସରେ ସାଧାରଣତଃ ଏହି ଅଳ୍ପ ...ନରେ ଅମଳ ହେଉଥିବା ଧାନଗୁଡ଼ିକ ପାଚି ପବନ ସହିତ ...ଚକାଳି ଖେଳି ଅସଂଖ୍ୟ ସୁନାର ଢେଉ ଛୁଟାଇ ଦେବା ସଙ୍ଗେ ...ଙ୍ଗେ କୃଷକ ମନରେ ମଧ୍ୟ ଅଶେଷ ଆନନ୍ଦର ଲହରୀ ଖେଳାଇ ...ଏ । ସମଗ୍ର ବିଶ୍ୱର ବୋଝକୁ ନିଜର କାନ୍ଧରେ ବହନ କରି ...ିଥିବା ବିଚରା କୃଷୀ ଏଇ ଧାନ ଗଣ୍ଡାକ ଉତ୍ପାଦନ କରିବା ପାଇଁ ...କେତେ ଲହୁ ଲୁହାଣ ହୋଇନଥାଏ ? ବୈଶାଖର ଟାଣଖରା ...ଶ୍ରାବଣର ମୁଷଳଧାରାକୁ ତାର ହାଡେ ହାଡେ ଅନୁଭବ କରିଥାଏ । ...ର କଠୋର କର୍ମଯୋଗକୁ ଦେଖି ଶେଷରେ ମା ଅନ୍ନପୂର୍ଣ୍ଣା ଯେତେବେଳେ ସତ୍ୟରେ ତା କ୍ଷେତକୁ ଶସ୍ୟ ବା ଅନ୍ନରେ ପୂର୍ଣ୍ଣ କରି ଦିଅନ୍ତି । ତାର ସେତିକି ବେଳର ମନୋଭାବକୁ ପ୍ରକାଶ କରିବା ପାଇଁ ଭାଷା କାହିଁ ? ଏପରି କଷ୍ଟ ଲବ୍‌ଧ ନବାନ୍ନକୁ ସେ କଣ ଯେମିତି ସେମିତି ଭାବରେ ତରତର ହୋଇ ଶାହୁକେନ୍ତୁ-ଙ୍କ ଅମୃତ ଖାଇଲା ପରି ଖାଇ ପକାଇବ ? ଏହା ହେବ ବା କେମିତି ? ସେତ ଆଉ ଦେବ ନୁହେଁ କି ଦାନବ ନୁହେଁ ମାନବ । ଏଣୁ ଶୁଭଲଗ୍ନ ଦେଖି ଗ୍ରାମବାସୀ ତଥା ଅଞ୍ଚଳବାସୀଙ୍କ ସହିତ ଗ୍ରାମଦେବତା, କୁଳଦେବତା, ପିତୃପୁରୁଷ ପ୍ରଭୃତିଙ୍କୁ ଅର୍ପଣପୂର୍ବକ ପରିବାରର ସମସ୍ତଙ୍କ ଗହଣରେ ଏକା ସାଥୀରେ ଖାଇଲେ ସିନା ତା କୃଷକ ଜୀବନ ସାର୍ଥକ ହେବ । ସତ୍ୟରେ ଏଇ ନବାନ୍ନ ଭକ୍ଷଣ ଉତ୍ସବ ଏ ଅଞ୍ଚଳର ପୁରେ ପୁରେ ଘରେ ଘରେ କି ଅପୂର୍ବ ଉନ୍ମାଦନା ସୃଷ୍ଟି ନ କରେ ?

ପଶ୍ଚିମ ଓଡ଼ିଶାରେ ମହାସମାରୋହରେ ପାଳିତ ହେଉଥିବା ଏଇ ନବାନ୍ନ ଭକ୍ଷଣ ଗଣପର୍ବ ଭାଦ୍ରବ ମାସ ଶୁକ୍ଳ ପକ୍ଷରେ ପଡ଼େ । ବର୍ଷାର ପ୍ରକୋପ ଦିନକୁ ଦିନ ହ୍ରାସ ହେଉଥିବା ସଙ୍ଗେ ସଙ୍ଗେ ଜଳସ୍ଥଳ ଓ ଆକାଶରେ ଆଦ୍ୟ ଶରତର ଶୁଭ୍ରତା କ୍ରମଶଃ ପ୍ରକାଶିତ ହେଉଥାଏ । ଗଣନାୟକ ଶ୍ରୀ ଗଣେଶ ସମସ୍ତ ପୁରପଲ୍ଲୀରେ ଶୁକ୍ଳ ଚତୁର୍ଥୀ ଦିନଠୁ ବିରାଜିତ ହୋଇ ଯଥାବିଧିରେ ପୂଜିତ ହେଉଥାନ୍ତି । ଏହିପରି ଏକ ଶୁଭମୁହୂର୍ତ୍ତରେ ଆସିଥାଏ ନୂଆଖାଇ । ପ୍ରାଚୀନ କାଳରେ ସମଗ୍ର ଅଞ୍ଚଳଟି ଏକାଦିନରେ ନୂଆ ଖାଉଥିଲେ

ମାତ୍ର ଆଜିକାଲି ଆଉ ସେପରି ଧରାବନ୍ଧା ନିୟମ ନାହିଁ । ନିଜ ନିଜର ସୁବିଧା ଅନୁଯାୟୀ ବିଭିନ୍ନ କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳର ଲୋକେ ଶୁଭଲଗ୍ନ ଥିବା ଭିନ୍ନ ଭିନ୍ନ ଦିନମାନଙ୍କରେ ନୂଆ ଖାଇଥାନ୍ତି । ପଶ୍ଚିମାଞ୍ଚଳ ମହିମା ସମାଜ ଏଇ ନବାନ୍ନ ଭକ୍ଷଣ ଉତ୍ସବକୁ ଶ୍ରାବଣ ପୂର୍ଣ୍ଣିମା ଦିନ ପାଳନ କରିଥାନ୍ତି । ଏମାନେ ସମସ୍ତେ ସମ୍ବଲପୁର ଜିଲ୍ଲାର ମଧ୍ୟପ୍ରଦେଶ ସୀମାନ୍ତରେ ଥିବା ବିଶ୍ରେଳି-ଭେଣ୍ଡ ମହିମା ଶ୍ରମରେ ସମବେତ ହୋଇ ପ୍ରଭୁ ପୂର୍ଣ୍ଣିମା ପାଳନ ପୂର୍ବକ ନବାନ୍ନ ଭକ୍ଷଣ କରିଥାନ୍ତି । କିନ୍ତୁ ପଶ୍ଚିମ ଓଡ଼ିଶାକୁ ଲାଗିଥିବା ମଧ୍ୟପ୍ରଦେଶର ଛତିଶଗଡ ଅଞ୍ଚଳରେ ଆଶ୍ୱିନ ଶୁକ୍ଳ ଦଶମୀ ଦିନ ନବାନ୍ନ ଭକ୍ଷଣ ଉତ୍ସବ ଅନୁଷ୍ଠିତ ହୁଏ ।

ପଶ୍ଚିମ ଓଡ଼ିଶାରେ ବିଭିନ୍ନ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନେ ନିଜ ନିଜ ଇଲାକାରେ ଏକତ୍ରିତ ହୋଇ ନବାନ୍ନ ଭକ୍ଷଣ ପାଇଁ ପୁରୋହିତମାନଙ୍କର ପରାମର୍ଶ ଲୋଡ଼ିଥାନ୍ତି ଓ ସମସ୍ତଙ୍କ ସୁବିଧା ଅନୁଯାୟୀ ତିଥୀ ଓ ଲଗ୍ନ ନିର୍ଦ୍ଧାରଣ କରିଥା'ନ୍ତି । ଗ୍ରାମଦେବତା ପୂଜକ ଝାଙ୍କରମାନେ ନିର୍ଦ୍ଧାରିତ ହୋଇଥିବା ତିଥି ଓ ସମୟ କଥା ନିଜ ନିଜ ଗ୍ରାମରେ ଡ଼ାକରା ପକାଇ ଘୋଷଣା କରି ଦିଅନ୍ତି । ଆଗରୁ ତ ସମସ୍ତେ ନୂଆଖାଇ ପାଇଁ ଭିତରେ ଭିତରେ ପ୍ରସ୍ତୁତ ହେଉଥାନ୍ତି । ଡାକରା ଶୁଣିବା ମାତ୍ରେ ସଜବାଜ ହେବାରେ ଲାଗି ପଡନ୍ତି । ଧୋବା ସମସ୍ତଙ୍କ ଲୁଗାପଟା କାଚି ସଫାସଫା କରିଦିଏ । ବାରିକ ସମସ୍ତଙ୍କୁ ଖିଅର ଉଦର କରିଦିଏ । କୁମ୍ଭାର ସମସ୍ତଙ୍କୁ ନୂଆ ହାଣ୍ଡି ମାଠିଆ ଯୋଗାଇ ଦିଏ । ହାଡ଼ି ଝାଡୁକରି ଗା ଦାଣ୍ଡ ସଫା ସୁତରା କରି ପକାଏ । ଗୃହିଣୀ ଘରର ଅଳନ୍ଧୁ ବୁଢ଼ିଆଣୀ ଜାଲ ଆଦି ସଫାକରି ଘରଦ୍ୱାରକୁ ଘଷାଲିପା କରି ପକାଏ । ଗୃହସ୍ଥ ହାଟବଜାରକୁ ଯାଇ ସଉଦା ପତ୍ର କିଣିଆଣେ ଓ ତା ବିଲବାଡ଼ିରେ ଫଳିଥିବା ପନିପରିବା ତୋଳି ଆଣି ଘରେ ଗଦେଇଦିଏ । ଦୂର ସ୍ଥାନମାନଙ୍କରେ ଚାକିରି ବାକିରି କରୁଥିବା ଲୋକଙ୍କ ସମେତ ଯିଏ ଯେଉଁଠି ଥାଆନ୍ତୁନା କାହିଁକି ଦିନକ ପୂର୍ବରୁ ସମସ୍ତେ ନିଜ ନିଜ ଘରକୁ ଫେରନ୍ତି । ନୂଆଖାଇ ଦିନର ପୂର୍ବ ରାତିରେ ଝାଙ୍କର ଗ୍ରାମରେ ପୂଜା ପାଉଥିବା ସିନ୍ଦୁରବୋଳା ପଥର ଠାକୁରାଣୀଙ୍କ ପାଖରେ ଭୋଗ ଲଗାଏ । ସମ୍ବଲପୁର ଇଲାକାରେ ପ୍ରତି ଗାଁ ଗଣ୍ଡାରେ ସମଲେଶ୍ୱରୀ ପୂଜିତ ଓ ପ୍ରଥମେ ତାଙ୍କୁହିଁ ନବାନ୍ନ ଭୋଗ ଲଗାଯାଏ । ସେହିପରି ବଲାଙ୍ଗୀରରେ ପାଟଣେଶ୍ୱରୀ ଓ, କଳାହାଣ୍ଡିରେ ମାଣିକେଶ୍ୱରୀ ତଥା ଅନ୍ୟାନ୍ୟ ସ୍ଥାନ ମାନଙ୍କରେ ନିଜ ନିଜ ଗ୍ରାମର ଗ୍ରାମ ଦେବତାଙ୍କଠାରେ ନୂଆ ଲଗାନ୍ତି ।

ନୂଆଖାଇ ଦିନର ସକାଳୁ ସକାଳୁ ଝାଙ୍କର ଗ୍ରାମର ପ୍ରତି ଛାଉଣିରେ ନୂଆଧାନ ଗୋଛାଏ ଲେଖାଏଁ ବାଣ୍ଟି ଦେଇଆସେ । ଏହି ଧାନର ଚାଉଳରେ ସମସ୍ତେ ଗୁଡ଼ ଘିଅ ପ୍ରଭୃତି ପଞ୍ଚାମୃତ ମିଶାଇ ନବାନ୍ନ ବନାନ୍ତି । ଏହି ଦିନ ପୂଜକମାନେ ମଧ୍ୟ ଗ୍ରାମରେ ପୂଜିତ ଠାକୁରମାନଙ୍କ ଠାରେ ନୂଆ ଲଗାନ୍ତି । ପ୍ରତି ପରିବାରର ଗୃହସ୍ଥ ଓ ଗୃହିଣୀମାନେ ନିର୍ଜ୍ଜଳା ଉପବାସ କରନ୍ତି । ଗୃହିଣୀ ସକାଳୁ ସକାଳୁ ଘରଦ୍ୱାର ଓ ଗୁହାଳ ଆଦି ସଫା ସୁତରା କରି ତେଲ ହଳଦୀ ମାଖି ଚଞ୍ଚଳ ଚଞ୍ଚଳ ବୁଡ ପକାଇ ଗାଧୋଇ ଆସେ । ପର୍ବ ପର୍ବାଣୀରେ ପିନ୍ଧିବା ପାଇଁ ଘରେ ସାଇତି ରଖିଥିବା ଲୁଗା ଖଣ୍ଡିକୁ ପେଡ଼ିରୁ ବାହାର କରି ପିନ୍ଧି ପକାଇ ଝୋଟିକାଟି ମା ଲକ୍ଷ୍ମୀଙ୍କର ପୂଜା ଆରମ୍ଭ କରେ ଓ ଅନ୍ନ ବ୍ୟଞ୍ଜନ, ପିଠାପଣା ପ୍ରଭୃତି ବନାଇବାରେ ଲାଗିପଡ଼େ । ଗୃହର ଅନ୍ୟାନ୍ୟ ଝିଅ ବୋହୂମାନେ ମଧ୍ୟ ଏଥିରେ ଲାଗି ପଡ଼ନ୍ତି । ଛୋଟ ଛୋଟ ଛୁଆମାନେ ଏସବୁ ଆୟୋଜନ ଦେଖି ମନଖୁସିରେ ଘରେ ବାହାରେ ଡ଼ିଆଁ ଡେଇଁ କରୁଥାନ୍ତି । ଗୃହସ୍ଥ ଗାଈ ଗୋରୁ ବିଲବାଡ଼ି ବିଷୟ ବୁଝି ସଅଳ ସଅଳ ଗାଧୋଇ ଆସି ଧୂପ ଦୀପ ଫୁଲ ଚନ୍ଦନ ନେଇ ଧାନକ୍ଷେତ ଓ ଆଖୁବାଡ଼ିରେ ମା ଲକ୍ଷ୍ମୀଙ୍କର ପୂଜା ଆରାଧନା କରି ମୁଣ୍ଡିଆମାରେ । ତାର ଦୃଢ଼ ବିଶ୍ୱାସ ଲକ୍ଷ୍ମୀ ଠାକୁରାଣୀ ପ୍ରସନ୍ନ ହେଲେ ପ୍ରଚୁର ଫସଲ ଦେବେ । ଖେତଖଳାରେ ପୂଜାସାରି ଘରକୁ ଫେରି କୋଡ଼ି, ଫାଉଡା, ଟାଙ୍ଗିଆ, ଫାର୍ଶା, ଦାଆ, ବାରିସୀ ପ୍ରଭୃତି ହାତ ହତିଆରକୁ ଧୋଇମାଜି ଏକତ୍ର ଠୁଳକରି ଫୁଲ ଚନ୍ଦନ, ଧୂପଦୀପ, ଦେଇ ପୂଜା କରେ ଓ ସବୁଥିରେ ନୂଆ ରାକ୍ଷୀ ବାନ୍ଧେ । ଘରେଥିବା ପୋଥିପୁରାଣକୁ ମଧ୍ୟ ପୂଜା କରି ନୂଆ ରାକ୍ଷୀ ଚଢ଼ାଏ । ଗାଈ ଗୁହାଳରେ ମଧ୍ୟ ପୂଜାକରି ଗାଈଗୋରୁଙ୍କ ଶିଙ୍ଗରେ ନୂଆ ରାକ୍ଷୀ ବାନ୍ଧେ । ପରିବାରର ସମସ୍ତେ ଏହି ଦିନ ମଧ୍ୟ ରାକ୍ଷୀ ବାନ୍ଧନ୍ତି । ଇତିମଧ୍ୟରେ ଗୃହିଣୀ ଅନ୍ନ ବ୍ୟଞ୍ଜନ ଓ ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରି ସାରିଥାଏ । ଧୂପଦୀପ ଓ ଲୋଭନୀୟ ଖାଦ୍ୟ ସାମଗ୍ରୀର ମହକରେ ଘରଦ୍ୱାର ପୂରି ଉଠୁଥାଏ । ଗୃହିଣୀ ପ୍ରଥମେ ଲକ୍ଷ୍ମୀ ଠାକୁରାଣୀଙ୍କୁ ନବାନ୍ନ ଲଗାଏ । ଗୃହର କୁଳଦେବତା ଓ ଅନ୍ୟାନ୍ୟ ଦେବାଦେବୀଙ୍କୁ ପାରମ୍ପରିକ ରୀତିରେ ନୂଆ ଲଗାଏ । ପରେ ପରେ ଆରମ୍ଭ ହୁଏ ନୂଆଖିଆ । ଏହିଦିନ ସମସ୍ତେ ତଳେ ଭୂଇଁରେ ବସି ପତର ତିଆରି ଖଲିଦନାରେ ଭୋଜନ କରିଥାନ୍ତି । ପରିବାରର ସମସ୍ତେ ଏକତ୍ର ପତ୍ର ପକାଇ ଧାଡ଼ିହୋଇ ବସନ୍ତି । ଗୃହିଣୀ ସମସ୍ତଙ୍କର ପତ୍ରରେ ନବାନ୍ନ ବାଢ଼ିଦିଏ । ପରେ ପରେ ଅତି ସୁସ୍ୱାଦୁ ଖିରିପୁରୀ ସହ ଦିବ୍ୟଶାଳୀ ଅନ୍ନବ୍ୟଞ୍ଜନ ପରଶିଦିଏ । ଏହିଦିନ ସମସ୍ତେ ତୃପ୍ତ ଭୋଜନ କରନ୍ତି । ଭାଇ ଭାଇ ମଧ୍ୟରେ ବା ପରିବାରର ଅନ୍ୟ କାହା ସହିତ ଥିବା ବର୍ଷଟା ଯାକର କଳି-ଗୋଳକୁ ଏହିଦିନ ସମସ୍ତେ ହୃଦୟରୁ ପୋଛି ଦିଅନ୍ତି ଓ ନବବର୍ଷରେ ପୁନର୍ବାର ସ୍ନେହ ସୌହାର୍ଦ୍ଦ୍ୟର ବନ୍ଧନରେ ଆବଦ୍ଧ ହୁଅନ୍ତି । କବିଙ୍କ ଭାଷାରେ ଭୂସ୍ୱର୍ଗରେ ପରିଣତ ହୁଏ ।

"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର "

ନବାନ୍ନ ଭକ୍ଷଣ ପରେ ପରେ ପରିବାରର କନିଷ୍ଠମାନେ ଜ୍ୟେଷ୍ଠମାନଙ୍କର ପାଦତଳେ ମୁଣ୍ଡିଆମାରି ପାଦଧୂଳି ମୁଣ୍ଡରେ ଲଗାନ୍ତି । ଏଥିରେ ଜ୍ୟେଷ୍ଠମାନେ ନିଜକୁ କୃତାର୍ଥ ମଣି ହସି ହସି ଆର୍ଶୀବାଣୀ ଶୁଣାଇଥାନ୍ତି । ଏହା ପରେ ଗ୍ରାମର ସମସ୍ତେ ନିଜ ନିଜ ଘରୁ ବାହାରି ସ୍ୱାନବତ ଯଥାମାନ୍ୟ ଜୁହାର ଭେଟ୍ ହୁଅନ୍ତି । ପରେ ଗ୍ରାମର ଦେବାଳୟ, ଭାଗବତ ଟୁଙ୍ଗୀ, ବୈଠକ-ଘର ପ୍ରଭୃତିରେ ଗୋଷ୍ଠୀଗତ ଭାବରେ ବସି ପୁରାଣପାଠ, ଭାଗ-ବତ ଭଜନ କୀର୍ତ୍ତନ୍ୟ, କୃଷ୍ଣଗୁରୁ ଭଜନ ପ୍ରଭୃତିରେ ମାତିଶହି ଏହି ଦିନଟିକୁ ଯାକ ଜମକରେ ପାଳନ କରନ୍ତି । ଗୀତବାଦ୍ୟରେ ଗାଁ ଦାଣ୍ଡ ଉଛୁଳି ପଡୁଥାଏ । ଏଇ ଅବସରରେ ଗ୍ରାମର ସମ-ବୟସ୍କା କୁମାରୀମାନେ ପରସ୍ପର ମଧ୍ୟରେ ସହି ସଙ୍ଗାତ ଭଳି ଭୁଜୁଳି ବସିଥାନ୍ତି । ଏମାନେ ଗ୍ରାମର ଅନ୍ୟାନ୍ୟ ମହିଳା-ମାନଙ୍କ ଗହଣରେ ଲରିଆ ବୋଲିରେ ଭୁଜୁଳି ଗୀତ ଗାଇଥାନ୍ତି । ଜଣେ ପୌଢ଼ା ପ୍ରଥମେ ଗୀତ ଆବୃତ୍ତି କରନ୍ତି ଓ ଅନ୍ୟମାନେ

ସ୍ୱରକୁ ସ୍ୱର ମିଳାଇ ପାଳି ଧରନ୍ତି । ଘୋଷା ପଦଟିରେ ଏମାନେ "ଆହୋ ଦେବୀଗଙ୍ଗା" ବୋଲି ସମ୍ବୋଧନ କରୁଥାନ୍ତି । ଏହାଯେ କିଭଳି ଏକ ଅପୂର୍ବ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟି କରୁଥିବ ତାହା ଅନୁଭବୀ ମାତ୍ରେହିଁ ଅନୁଭବ କରି ପାରୁଥିବେ । ଏଭଳି ଭାବରେ ଦିନଟି କଟିଯାଏ ।

ରାତିରେ ମଧ୍ୟ ସମସ୍ତେ ବାହାରି ଅଧରାତିଯାଏ ଗୀତ-ବାଦ୍ୟର ଲହରି ଛୁଟାଇ ଦିଅନ୍ତି । କି ଧନୀ କି ନିର୍ଦ୍ଧନ ସମସ୍ତେ ଏଇ ଦିନଟିକୁ ହସଖୁସିରେ କଟାଇ ଦିଅନ୍ତି । ପଲ୍ଲୀଗାଁ ଗଣ୍ଡାର ଏଇ ଦୃଶ୍ୟ ଏବେବି ପଲ୍ଲୀ ଜୀବନର ଉତ୍କର୍ଷତାର ଉଦ୍‌ଘୋଷଣ କରି ଆଗେଇ ଚାଲିଛି । ଏଭଳି ଶାନ୍ତ ଓ ପବିତ୍ରତାର କୋମଳ ପରଶରେ ଯେ କେହି ହୃଦୟବାନ ବ୍ୟକ୍ତି ନିଜକୁ ହଜାଇ ନଦେଇ ରହି ପାରିବ ନାହିଁ । ଏଇ ସ୍ୱର୍ଗୀୟ ରସାଳ ମାଧୁରୀ ଯୋଗୁଁ ତ ସରଳ ପଲ୍ଲୀ ଜୀବନ, କୃତ୍ରିମତା ପୂର୍ଣ୍ଣ ସହରୀ ସଭ୍ୟତା ଅପେକ୍ଷା ଅଧିକ ପ୍ରୀତିପ୍ରଦ ହୋଇ ଏଯାବତ୍ ସହରବାସୀଙ୍କୁ ଆକୃଷ୍ଟ କରିବାରେ ଲାଗିଛି । ସ୍ନେହ ସୌହାର୍ଦ୍ଦ୍ୟ ପୂର୍ଣ୍ଣ କୃଷିଭିତ୍ତିକ ଏହି ନବାନ୍ନ ଭକ୍ଷଣ ମହୋତ୍ସବ ପ୍ରାଚୀନ ଦକ୍ଷିଣକୋଶଳ ବା ପଶ୍ଚିମ ଓଡ଼ିଶା ଓ ଛତିଶଗଡ ଅଞ୍ଚଳର କେତେକ ପୁରପଲ୍ଲୀରେ ପାଳିତ ହୋଇ ଆମକୁ କଣ ଚେତାଇ ଦେଉନାହିଁ ଯେ:—

"ଘୃଣା କୃଷିକର୍ମକୁ ନ କରରେ ଭାଇ
ଯାରଣାଇ ଜୀବନେ ତାର ଗୁଣଗାଇ
କୃଷିକଲେ ଉନ୍ନତ ସକଳ ଉନ୍ନତି
କୃଷି ବିନା ନା କନ୍ଥା ନା ପନ୍ଥା ନାହିଁବା ଅନ୍ୟଗତି"

ଗ୍ରା: ଓ ପୋ:—ଭରମ
ଜି:—ସମ୍ବଲପୁର
ପିନ୍—୭୬୮୦୭୧







ଜ୍ଞାନ ଭବନ ଠାରେ ଜାତୀୟ ଉନ୍ନୟନ ପରିଷଦ ବୈଠକରେ ପ୍ରଧାନ ମନ୍ତ୍ରୀଙ୍କ ଉଦ୍‌ବୋଧନ,



ରାଷ୍ଟ୍ରପତି ଭବନରେ ରାଷ୍ଟ୍ରପତି ବାଣିଜ୍ୟ ମନ୍ତ୍ରୀ ଶ୍ରୀ ଅର୍ଜୁନ ସିଂହଙ୍କୁ ଶପଥ ପାଠ କରାଉଛନ୍ତି



କେନ୍ଦ୍ର ପେଟ୍ରୋଲିୟମ୍ ମନ୍ତ୍ରୀ ଶ୍ରୀ ଶର୍ମାଙ୍କ ସହିତ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ-
-ପଟ୍ଟନାୟକ ଆଲୋଚନା କରୁଛନ୍ତି ।






ଗଞ୍ଜାମ ଜିଲ୍ଲା ଲିଙ୍ଗରାଜେଶ୍ୱର ଗ୍ରାମର ସମନ୍ୱିତ ଗ୍ରାମାଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ ରେ
ଉପକୃତ ବ୍ୟକ୍ତିଙ୍କ ଗହଣରେ ମୁଖ୍ୟମନ୍ତ୍ରୀ .

JUSTICES OF HIGH COURTS CHIEF MINISTE

31st AUGUST - 1st SEPTEMBER 1985





ଉତ୍ତର ପ୍ରଦେଶ ବନ୍ୟା ବିଧ୍ୱସ୍ତ ଅଞ୍ଚଳ ପରିଦର୍ଶନ . . . . . P.M. TOURS U.P. FLOOD-HIT AREAS








ଗୋପାଳପୁର ଠାରେ 'କୋଇଲିବଦାଣି' ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ।



କାଳିଆ ପାଣି ପୋଲିସ ଫାଣ୍ଡି ଉଦ୍‌ଘାଟନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ଉଦ୍‌ବୋଧନ ।



ବନ୍ୟାର୍ତ୍ତଙ୍କୁ
ସାହାଯ୍ୟ ପୁଡ଼ିଆ ଦେଉଛନ୍ତି ......



ବନ୍ୟା ଘେରରେ ଗ୍ରାମାଞ୍ଚଳ .....

ବନ୍ୟାପରେ ....





ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଜନଗହଳିରେ .....



ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ
ବିଜ୍ଞାନ ଅନୁସନ୍ଧାନକାରୀ ଦଳଙ୍କ ସହିତ ଆଲୋଚନା କରୁଛନ୍ତି ।

# ଓଡ଼ିଆ ଶିଶୁ ସାହିତ୍ୟ ପ୍ରାକ୍ ସ୍ୱାଧୀନତା ପର୍ଯ୍ୟାୟ

— ଶ୍ରୀ ରତମଣି ଚନ୍ଦ୍ର ଦାସ —

ଭାବର ପରିପ୍ରକାଶ ପାଇଁ ଭାଷାର ସୃଷ୍ଟି । ହୃଦୟର ତରଙ୍ଗାୟିତ ବାଣୀ 'ଲିପି' ମାଧ୍ୟମରେ ପରିପ୍ରକାଶ ହେବା ପୂର୍ବରୁ ଅଙ୍ଗଭଙ୍ଗୀ ଓ କଣ୍ଠଧ୍ୱନି ରୂପେ ପ୍ରକାଶ ପାଇଲା । ଏହା କ୍ରମେ ଶୃଙ୍ଖଳିତ ଅର୍ଥଯୁକ୍ତ କଣ୍ଠଧ୍ୱନିରେ ପରିଣତ ହେଲା । ତାହା ହେଲା ଭାଷା । ଭାଷା ମାଧ୍ୟମରେ ମଣିଷ ହୃଦୟର ସୁଚିନ୍ତିତ ବଳିଷ୍ଠ ଭାବୋଚ୍ଛ୍ୱାସ ସାହିତ୍ୟର ରୂପ ନେଲା ।

ସାହିତ୍ୟ ରାଜ୍ୟରୁ ଯେଉଁ ବିଭାଗଟି ଶିଶୁମାନଙ୍କ ପାଇଁ ନିର୍ଦ୍ଦିଷ୍ଟ, ତାହା ଶିଶୁ ସାହିତ୍ୟ । ଶିଶୁ ସାହିତ୍ୟର ସ୍ୱରୂପ ବିଷୟରେ ମତ ପାର୍ଥକ୍ୟ ରହିଥିଲେ ମଧ୍ୟ ମୁଖ୍ୟତଃ ବୟସ୍କମାନଙ୍କ ଦ୍ୱାରା ରଚିତ ଶିଶୁ ଉପଯୋଗୀ ରଚନାବଳୀକୁ ଶିଶୁ ସାହିତ୍ୟ ରୂପେ ଅଭିହିତ କରାଯାଏ ।

ଓଡ଼ିଆ ଶିଶୁ ସାହିତ୍ୟର ପ୍ରାଥମିକ ପର୍ଯ୍ୟାୟରେ ଶିଶୁମାନଙ୍କ ଉପଯୋଗୀ କୌଣସି ବିଧିବଦ୍ଧ ସାହିତ୍ୟ ନଥିଲା । ମୌଖିକ ସାହିତ୍ୟ ବା ଲୋକ ସାହିତ୍ୟ ଓ ଲୋକଗୀତିର ଯେଉଁ ଅଂଶତକ ଶିଶୁମାନଙ୍କର ଉପଯୋଗୀ ତାହା ମୌଖିକ ଶିଶୁ ସାହିତ୍ୟ ରୂପେ ଅଭିହିତ ହେଉଥିଲା । ଶିଶୁର ମନୋରଞ୍ଜନ ପାଇଁ, ଶିଶୁମାନଙ୍କୁ ଖୁଆଇ ଦେବା, ଶୁଆଇ ପକାଇବା, କାନ୍ଦରୁ ନିବୃତ୍ତ କରିବା ଓ ମନ ଭୁଲାଇବା ପାଇଁ ମା' ମାନେ ଅନେକ ଅର୍ଥହୀନ କବିତା ବା ସଂଗୀତ ଗାନ କରନ୍ତି । ଯଥା—

"ଆ ଜହ୍ନମାମୁଁ ଶରଦ ଶଶୀ
ମୋ କାହ୍ନୁ ହାତରେ ପଡରେ ଖସି" ।

କିମ୍ବା

"ଧୋରେ ବାଇଆ ଧୋ
ଯେଉଁ କିଆରୀରେ ଗହଳ ମାଣ୍ଡିଆ
ସେଇ କିଆରୀରେ ଶୋ" ।

କିମ୍ବା

"ନେ ବଳଦ ଟାଣି ଟୁଣି
ଆଉ ନାହିଁରେ ଦୋଖଡ଼ା ପାଣି" ।

ଏହା ବ୍ୟତୀତ ଅନେକ ଢଗଢମାଳୀ, ପ୍ରବଚନ ଓ ଲୀଁ ଦିଆ ଇତ୍ୟାଦିକୁ ମଧ୍ୟ ଶିଶୁ ସାହିତ୍ୟ ପରିସରଭୁକ୍ତ କରାଯାଏ । ଯଥା—

"ସରଗରୁ ଅଇଲା ଟୋକାଟିଏ
ତା ମୁଣ୍ଡରେ ଠେକା ଟିଏ" ।

ବା

"ବାରମାଣ ପଡ଼ିଆରେ ବୁଣିଗଲି ସୋରିଷ" ।

ବା

"ଟିକି ଚଢ଼େଇ, ଟିକିଏ ପାଣିରେ ବୁଡ଼ି ମରଇ" ।

ସଞ୍ଜହେଲେ ପିଲାମାନେ ଗପ ଶୁଣିବା ପାଇଁ ମାଆ, ବୁଢ଼ୀମା, ଜେଜେ ଓ ଭାଇଭଉଣୀଙ୍କ ପାଖରେ ରୁଣ୍ଡ ହୁଅନ୍ତି । ସେମାନେ ପିଲାମାନଙ୍କୁ ନାନାପ୍ରକାର କାହାଣୀ ଓ ଲୋକଗଳ୍ପ ଇତ୍ୟାଦି କହିଥାନ୍ତି । ଏଥିରୁ ସେମାନେ ଉଭୟ ଶିକ୍ଷା ଲାଭ ଓ ଆନନ୍ଦ ପାଇଥାନ୍ତି । ବଗଲା ବଗୁଲୀ କଥା, ଦୁଇ ସଙ୍ଗାତ କଥା, ବେତାଳ କଥା, ରାଜା ପୁଅ, କଟୁଆଳ ପୁଅ, ସାଧବ ପୁଅ, ସାଧବ ଝିଅ, ମନ୍ତ୍ରୀ ପୁଅ, ଚଅପୋଇ, ତନ୍ତୀ ପୁଅ, ବାଘ ମାମୁଁ, ମନ ପବନ ଘୋଡ଼ା, ଅଗନା ଅଗନି ବନସ୍ତର ଅସୁର ଅସୁରୁଣୀ, ବୁଢ଼ୀ ଅସୁରୁଣୀ ଚୁଲୀରେ ଗୋଡ଼ ମୁହାଁଇ ଭାତ ରାନ୍ଧିବା, ସାହାଜା ସୁନ୍ଦରୀ, କଲୁରେଇ ବେଙ୍ଗ, ଚଂପାପୁରର ରାଜକନ୍ୟା ପାଇଁ

ରାଜପୁତ୍ରର ଯୋଗୀବେଶ ଇତ୍ୟାଦି କାହାଣୀ ପିଲାମାନଙ୍କୁ ଖୁବ୍ ଆନନ୍ଦ ଦେଉଥାଏ । ଏହି ଗଳ୍ପଗୁଡିକ ମଧ୍ୟରେ ଶିଶୁମାନଙ୍କ ମନକୁ ମୋହି ପାରିବା ଭଳି ସଂଗୀତର ଯେଉଁ ମୂର୍ଚ୍ଛନା ଥାଏ, ତାହା ଶିଶୁମାନଙ୍କ ପାଇଁ ଉତ୍କୃଷ୍ଟ କବିତା । ଯଥା–

"ଲଉ ଧୁଡିକି ଲୋ ଲଉ ଧୁଡିକି
ବୁଢୀକି ଦେଖିଛୁ କି ?
ମୁଁତ ଯାଉଛି ଗଡ଼ି ଗଡ଼ି
ମୁଁ କି ଜାଣେ ବୁଢୀ ଫୁଢି" ।

କିମ୍ବା

"ସ୍ୱର୍ଗେ ଲଗେ ଡାଳ ଭାଇ ମଝେ ଲଗେ ଡାଳ,
ଆମେ ଥାଉଁ ଥାଉଁ ଆମର ମା' ପୋଛେ ଘୋଡାଶାଳ" ।

କିମ୍ବା

"ଥିରି ଥିରି କରି ତୋଳରେ ବାରିକ
ଗଛରୁ ପତର ୯ଟେଟି
ସାନଭାଇ ଆମ ଖଣ୍ଡାରେ ହାଣିଲା
ତହିଁ କି ମୋ ଦେହ ଥରେ ଟି" ।

କିମ୍ବା

"ଆସ ଆସଲୋ କଇରେଇ ଫୁଲ
ବେଦୀରେ ବର ଯେ ବୁଢା ହେଉଛି
ହଳଦୀ କାଠୁଆ ଫିମ୍ପି ମାରୁଛି
ଢଳଢପାଟିରେ ଘୁଣି ପଡୁଛି" । ଇତ୍ୟାଦି ।

ବର୍ଣ୍ଣ ପରିଚୟ ପରେ ଶିଶୁମାନଙ୍କୁ ଚଉତିଶା, ଗୀତି କବିତା, ଘଟବୋଲି, ଚୁରାଣ ଓ ଛାନ୍ଦ ମାଧ୍ୟମରେ ଚଟଶାଳୀମାନଙ୍କରେ ଶିକ୍ଷା ଦିଆଯାଉଥିଲା । ଏହି ସମୟରେ ଶିଶୁମାନଙ୍କ ପାଇଁ ପାଠ୍ୟପୁସ୍ତକ ରଚିତ ହୋଇ ନଥିଲା କିମ୍ବା କୌଣସି ନିର୍ଦ୍ଦିଷ୍ଟ ପାଠ୍ୟ ଖସଡା ମଧ୍ୟ ନଥିଲା । ତେଣୁ ଉପରୋକ୍ତ ଚଉତିଶା, ଗୀତି କବିତା ଇତ୍ୟାଦି ବୟସ୍କମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲେ ମଧ୍ୟ ଶିଶୁପାଠ୍ୟ ଓ ଶିଶୁ ସାହିତ୍ୟର ଅଭାବରୁ ଏଗୁଡ଼ିକ ଶିଶୁମାନଙ୍କ-ଦ୍ୱାରା ଆଦୃତ ହେଉଥିଲା । ଏଗୁଡ଼ିକ ଗାନ ଯୋଗ୍ୟ କବିତା ହୋଇଥିବାରୁ ଶିଶୁମାନେ ଏହାକୁ ସହଜରେ ଗ୍ରହଣ କରି ନେଉଥିଲେ । ଯଥା—

"କହଇ ମନ ଆରେ ମୋ ବୋଲ କର,
କଳା ଶ୍ରୀମୁଖ ବାରେ ଦେଖିବା ଲଲ" ।

(ମନବୋଧ ଚଉତିଶା)

ବା

"କଳା କଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ
କରନ୍ତି ମଥୁରା ବିଜୟେ ଦାଣ୍ଡେ ଦେଖ ସଙ୍ଗାତ ।
ଖସି ପଡୁଛି କି ଆକାଶୁ ସତେ ଗଙ୍ଗା ଯମୁନା
କ୍ଷୀର ସଙ୍ଗେ ପ୍ରାଣ ଶୋଷିଲେ ନାଶ ଗଲା ପୁତନା" ।

ଓଡ଼ିଆ ସାହିତ୍ୟରେ ରାଧାନାଥ ଯୁଗର ଆରମ୍ଭ ପର୍ଯ୍ୟନ୍ତ ଆମ ଦେଶରେ ମୁଦ୍ରାଯନ୍ତ୍ରର ପ୍ରଚଳନ ହୋଇ ନଥିଲା । ତେଣୁ ସାରଳା ଦାସଙ୍କଠାରୁ କାବ୍ୟ ଯୁଗର ଶେଷ ପର୍ଯ୍ୟନ୍ତ ଆମ ସାହିତ୍ୟ ଓ ଶିକ୍ଷାର ପ୍ରସାର ସାଧାରଣତଃ ଘୋଷା ବା ମୁଖସ୍ଥ ଦ୍ୱାରା ସମ୍ଭବ ହେଉଥିଲା । ତେଣୁ ମୁଖସ୍ଥ ପଦ୍ଧତିକୁ ସହଜ ଓ ଆୟାସହୀନ କରିବା ପାଇଁ ସାହିତ୍ୟରେ ସଙ୍ଗୀତର ପ୍ରାଧାନ୍ୟ ଅଧିକ ଦିଆଯାଉଥିଲା । ତେଣୁ ସାରଳା ଦାସଙ୍କ 'ମହାଭାରତ' ଦନେଇ ଦାସଙ୍କ 'ଗୋପୀ ଭାଷା', ବଳରାମ ଦାସଙ୍କ 'ରାମାୟଣ' ଜଗନ୍ନାଥ ଦାସଙ୍କ 'ଭାଗବତ' ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ ପ୍ରଭୃତିଙ୍କର ବହୁ ବୈଷ୍ଣବୀୟ ଚୌପଦୀ, ଚଉତିଶା, ଖଣ୍ଡ କବିତା, ଭକ୍ତ କବି ଭୀମ ଭୋଇଙ୍କ "କପଟ-ପାଶା' ଦୀନକୃଷ୍ଣ ଦାସଙ୍କ 'ଆର୍ତ୍ତତ୍ରାଣ ଚଉତିଶା', 'ନାବକେଳି', ଅଳଙ୍କାର ବୋଲି ଓ 'ରସକୋଲ୍ଲ', ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ', ରାମଦାସଙ୍କ ଦାର୍ଢ୍ୟତା ଭକ୍ତି', ଅଚ୍ୟୁତାନନ୍ଦ ଦାସଙ୍କ ଗୋପାଳଙ୍କୁ ଆଳ', ଉପେନ୍ଦ୍ର ଭଞ୍ଜଙ୍କ' 'ଚୌପଦୀ ଭୂଷଣ' କବି-ସୂର୍ଯ୍ୟଙ୍କ କିଶୋର ଚନ୍ଦ୍ରାନନ ଚଂପୂ' ଓ ବ୍ରଜନାଥଙ୍କ 'ସମର ତରଙ୍ଗ ଓ ଚତୁର ବିନୋଦ' ଇତ୍ୟାଦି ସାଙ୍ଗୀତିକ ଦୃଷ୍ଟିରୁ ଶିଶୁମାନଙ୍କ ପାଠ୍ୟରୂପେ ବ୍ୟବହାର କରାଯାଉଥିଲା ।

କାବ୍ୟ, ଚଉତିଶା ଓ ଚୌପଦୀକୁ ବାଦ ଦେଲେ ଓଡ଼ିଆ ସାହିତ୍ୟର 'କୋଇଲି ସାହିତ୍ୟ' ଶିଶୁମାନଙ୍କର ସୁଖ ପାଠ୍ୟ ଥିଲା । ଯେପରି–

"କୋଇଲି ଲୋ, କେଶବ ଯେ ମଥୁରାକୁ ଗଲା
କାହା ବୋଲେ ଗଲପୁତ୍ର ବାହୁଡ଼ି ନଇଲା
ଲୋ କୋଇଲି ।"

ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି', ଶଙ୍କର ଦାସଙ୍କ 'ବାରମାସୀ କୋଇଲି', ବଳରାମ ଦାସଙ୍କ 'କାନ୍ତ କୋଇଲି' ଓ ଲୋକନାଥ ଦାସଙ୍କ 'ଜ୍ଞାନୋଦୟ କୋଇଲି'କୁ ପିଲାମାନେ ମଖସ୍ଥ କରି ଗାନ କରୁଥିଲେ ।

ଚଟଶାଳୀରେ ଗୁରୁ ବା ଅବଧାନେ ପିଲାମାନଙ୍କୁ ପଞ୍ଚତନ୍ତ୍ର, ବେତାଳ କଥା, ହିତୋପଦେଶ ଇତ୍ୟାଦି ଶୁଣାଉଥିଲେ । ଏହି ଗଳ୍ପ ମାଧ୍ୟମରେ ପିଲାମାନଙ୍କୁ ବିଭିନ୍ନ ନୀତି ଶିକ୍ଷା ଦିଆଯାଉଥିଲା । ଅର୍ଥନୀତି ରାଜନୀତି ଠାରୁ ଆରମ୍ଭକରି ବିଭିନ୍ନ ନୀତି ଆଦର୍ଶ ଓ ଧର୍ମ ସମ୍ବନ୍ଧରେ ଧାରଣା ଦିଆଯାଉଥିଲା । ଏଗୁଡ଼ିକ ଗଳ୍ପ ବା କାହାଣୀ ମାଧ୍ୟମରେ କୁହାଯାଉଥିବାରୁ ପିଲାମାନେ ସେଗୁଡ଼ିକୁ ମନଯୋଗ ସହକାରେ ଶୁଣୁଥିଲେ ।

ଓଡ଼ିଆ ଭାଷାରେ ଲିଖିତ ଶିଶୁ ସାହିତ୍ୟର ସୃଷ୍ଟି ହେଲା ୧୮୬୮ରୁ ୧୮୭୦ ମସିହା ମଧ୍ୟରେ । ଏହି ସମୟରେ ଓଡ଼ିଶାରୁ ଓଡ଼ିଆ ଭାଷାର ବିଲୋପ ଏବଂ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ପ୍ରତିପାଦିତ କରିବା ପାଇଁ ପଡ଼ୋଶୀ ରାଜ୍ୟବାସୀଙ୍କର ହୀନ ଚକ୍ରାନ୍ତର ମୁକାବିଲା ପାଇଁ ଓଡ଼ିଆ ଭାଷା ଆନ୍ଦୋଳନର ପୁରୋଧାଗଣ ଫକୀର ମୋହନ ସେନାପତି, ରାଧାନାଥ ରାୟ, ମଧୁସୂଦନ ରାଓ,

ଗୋବିନ୍ଦ ରଥ, ଚନ୍ଦ୍ର ମୋହନ ମହାରଣା, ସୀତାନାଥ ରାୟ, ଓ ଗୋପାଳ ପ୍ରହରାଜ ପ୍ରମୁଖ କର୍ତ୍ତବ୍ୟର ଅନୁରୋଧରେ କିଛି ଶିଶୁ ସାହିତ୍ୟ ସୃଷ୍ଟି କରିଥିଲେ । କାରଣ ସେତେବେଳେ ପ୍ରାଥମିକ ବିଦ୍ୟାଳୟ ସ୍ତରରେ କୌଣସି ଓଡ଼ିଆ ପାଠ୍ୟ ପୁସ୍ତକ ନଥିଲା । ୧୮୯୫ ମସିହାରେ ଭକ୍ତ କବି ମଧୁସୂଦନ ରାଓ ଶିଶୁମାନଙ୍କ ପାଇଁ 'ବର୍ଣ୍ଣ ବୋଧ' ରଚନା କରି ବିଦ୍ୟାଳୟମାନଙ୍କରେ ପାଠ୍ୟ ପୁସ୍ତକ ରୂପେ ଚଳାଇଥିଲେ । 'ବର୍ଣ୍ଣବୋଧ' ରଚନା ହେବା ପୂର୍ବରୁ ଗୋବିନ୍ଦ ରଥଙ୍କ 'ବର୍ଣ୍ଣ ବୋଧକ' ଓ ସର୍ଟନ ସାହେବଙ୍କ 'ଓଡ଼ିଆ ପ୍ରାଇମର' ରଚିତ ହୋଇଥିଲା । ଗୋବିନ୍ଦ ରଥଙ୍କ 'ବର୍ଣ୍ଣବୋଧକ' ଓଡ଼ିଆ ଭାଷାରେ ରଚିତ ସର୍ବ ପ୍ରଥମ ଶିଶୁ ଉପଯୋଗୀ ପାଠ୍ୟ ପୁସ୍ତକ । 'ବର୍ଣ୍ଣବୋଧ' ବ୍ୟତୀତ ଭକ୍ତ କବି ମଧୁସୂଦନ 'ଶିଶୁବୋଧ', 'ବାଳବୋଧ', 'ସାହିତ୍ୟ ପ୍ରସଙ୍ଗ' ସାହିତ୍ୟ କୁସୁମ' ଇତ୍ୟାଦି ରଚନା କରିଥିଲେ ପ୍ରଭାତ ସଂନ୍ଧ୍ୟା, ସୁନ୍ଦର ସଂସାର, ଗ୍ରୀଷ୍ମ ବର୍ଷା ଇତ୍ୟାଦି ଷଡ଼ ଋତୁ ପ୍ରଭୃତି ତାଙ୍କ ଦ୍ୱାରା ରଚିତ ଶିଶୁ କବିତା । ତାଙ୍କ ଦ୍ୱାରା ଲିଖିତ—

"ତୁ ତୁ କରି ଡାକିଲି ମୁହିଁ
ଦଉଡ଼ି ଆସିଲୁ କୁକୁର ତୁହି ।"
ଅବା
"ଅରଣା ମହିଷ ରହିଛି ଅନାଇ
ମହିଷର ପାଶ ନଯାଅ ଦନାଇ ।"

ଶିଶୁ ମନରେ ଚିରାଚରିତ କୌତୁକ ଉଦ୍ରେକ କରେ ।

ଫକୀର ମୋହନ ସେନାପତି ଶିଶୁମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଭାବରେ କୌଣସି ଲେଖା ଲେଖି ନାହାନ୍ତି । କି ତାଙ୍କ 'ଅବସର ବାସରେ' କବିତା ଗ୍ରନ୍ଥର ବେଙ୍ଗ ଭାଇ, କୋଇଲି ରାନୀ, ବଣ ଚଢ଼େଇ, ଶଂଖି ବିରାଡ଼ି ଡାଆଣୀ ଆଲୁଅ, ସାହାଡ଼ାଗଛ, ଭୁଆ ବିରାଡ଼ି, କାଳିଆ କୁକୁର ପ୍ରଭୃତିକୁ ଶିଶୁ କବିତା ଅନ୍ତର୍ଭୁକ୍ତ କରାଯାଇ ପାରିବ । ଏଗୁଡ଼ିକର ଭାଷା ଓ ଭାବ ଅତ୍ୟନ୍ତ ସରଳ ।

ସ୍ୱର୍ଗତଃ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ଶିଶୁ ସାହିତ୍ୟକୁ ଯଥେଷ୍ଟ ଅବଦାନ ରହିଛି । ତାଙ୍କର 'ଉତ୍କଳ କାହାଣୀ' 'ଆମ ଜେଜେ ବାପାଙ୍କ କାହାଣୀ' ଏବଂ ଶିଶୁ କବିତା "ଧୋରେ ବାୟା ଧା" ଶିଶୁ ସାହିତ୍ୟକୁ ଶ୍ରେଷ୍ଠ ଅବଦାନ । ତାଙ୍କର ଶିଶୁ ଗୀତିକା—

"ହାତୀ ଝୁଲୁଥାଉ     ରାଜା ବଗିଚାରେ
କିଆ କନ୍ଦା ଖାଇବାକୁ

କହ୍ନେଇ ଝୁଲଉ     ମୋହରି କୋଳରେ
ଦୁଧ କଳେ ଖାଇବାକୁ"

ତାଙ୍କ ଜନପ୍ରିୟତାର ପରିଚୟ ଦିଏ ।

ପଲ୍ଲୀକବି ନନ୍ଦକିଶୋର ବଳ ଶିଶୁ ସାହିତ୍ୟର ରଚୟିତା ଭାବରେ ବେଶ୍ ସୁନାମ ଅର୍ଜ୍ଜନ କରିପାରିଛନ୍ତି । ତାଙ୍କର 'ନାନାବାୟା ଗୀତ' ଏକ ସଫଳ ଶିଶୁ କବିତା ସଂକଳନ । ସହଜ, ସରଳ, ଅର୍ଥହୀନ ଓ କୌତୁହଳ ଉଦ୍ଦୀପକ ଏହି କବିତାଗୁଡ଼ିକ ବେଶ୍ ଶ୍ରୁତି ମଧୁର ।

ଯେପରି—"କାଶୀରାଜା ଝିଅ ଲୋ ତୁ ନଳରଜା ବୋହୂ
ନଳରାଜା ବୋହୂ ଲୋ ତୁ ନଈକି ଗାଧୋଇ ଯାଉ,
ନଈକି ଗାଧୋଇ ଯାଉ ଯାଉ ପାଇଲୁ ଗୋଡ ବଳା,
ଛେଳି କିଣିବାକୁ ତୁହି ନେଇଗଲୁ ସେହି ବଳା"

(ସୁନା ପଇତା)

ତାଙ୍କର କବିତାଗୁଡ଼ିକ ଅବୋଧ ଶିଶୁ ମନରେ ଆନନ୍ଦ ସଂଚାର କରିଥାଏ । ଏବେ ବି ଓଡ଼ିଶାର ଗାଆଁ ଗହଳିରେ ପିଲମାନେ ତାଙ୍କର ଅଧିକାଂଶ କବିତା ମୁଖସ୍ଥ କରି ଗାଇ ବୁଲୁଛନ୍ତି । ଯଥା—

ମେଘ ବରଷିଲା     ଟୁପୁରୁ ଟୁପୁରୁ
କେଣ୍ଟୁର ମାରିଲା ଗଳା,

କେଉଁ ରାଇଜରେ     ରହିଲେ ମୋ ରଜା
ତେଲିଙ୍ଗି ବାଇଦ ବଜା ।"

କିମ୍ବା

"ବାଇଆ ମାଆଲେ ନ ଖାଏ କୁଣ୍ଡା
ପୁଅ ନେଇଛି ନଙ୍ଗଳ ମୁଣ୍ଡା
ପୁଅକୁ ଶୋଇଲା ହିଡ଼ ମୁଣ୍ଡରେ,
ପିମ୍ପୁଡ଼ି ଖାଇଲା ନାଇ ମୁଣ୍ଡରେ

କିମ୍ବା

"ଆସ ଆସ     ପାରା ଯୋଡ଼ିକ
ମୋ ପିଣ୍ଡାରେ ବସ,

ଖାଇବାକୁ     ଦେବି ତୁମକୁ
ନଡ଼ିଆର ରସ,

ପିଇବାକୁ     ଦେବି ତୁମକୁ
ପଉଡ଼ର ପାଣି

ଶୋଇବାକୁ     ଦେବି ତୁମକୁ
ସୁନା ଖଟ ଆଣି ।"

୧୯୨୫ ମସିହା ମଧ୍ୟରେ ରଚିତ ଶିଶୁ ସାହିତ୍ୟମାନଙ୍କ ମଧ୍ୟରେ ସ୍ୱର୍ଗତଃ ମୃତ୍ୟୁଞ୍ଜୟ ରଥଙ୍କ 'ରସାବଳୀ' କବିତା ସଂକଳନ ବେଶ୍ ପରିଚିତ । ଏହି ସମୟ ମଧ୍ୟରେ ନୀଳକଣ୍ଠ ଦାସଙ୍କ ପିଲଙ୍କ ମହାଭାରତ (୧୯୨୩) 'ପିଲଙ୍କ ରାମାୟଣ' ମଧୁସୂଦନ ଦାଶଙ୍କ 'ବାଳ ମହାଭାରତ', ପଦ୍ମଚରଣ ପଟ୍ଟନାୟକଙ୍କ 'ସୁନାଭ ଦେଶ', ବାଳକୃଷ୍ଣ କରଙ୍କ 'ହନୁମାନ୍', 'ସଚିତ୍ର ଶିଶୁ ରାମାୟଣ', ଫୁଲ ଝୁଙ୍କୁଡ଼ି', ଚନ୍ଦ୍ରଶେଖର ନନ୍ଦଙ୍କ 'ଚିତ୍ର', 'ନୂଆ ଶିଶୁ ଗୀତ',

**ଜାନକୀନାଥ** ରାଉତରାୟ ମହାପାତ୍ରଙ୍କ 'ପୁଷ୍ପାଞ୍ଜଳି', ବାଳକୃଷ୍ଣ **ପଟ୍ଟନାୟକଙ୍କ** 'ସ୍ୱର୍ଣ୍ଣ ଲବଙ୍ଗ ଲତା', 'ଫୁଲ ବଉଳବେଣୀ', **କାଳିଚରଣ** ପଟ୍ଟନାୟକଙ୍କ 'କଳା ହାଣ୍ଡିଆ ମେଘ', ହରେକୃଷ୍ଣ ଦାସଙ୍କ 'ଶିଶୁ ରଂଜନ ଗୀତିକା', ବ୍ରହ୍ମାନନ୍ଦ ଷଡ଼ଙ୍ଗୀଙ୍କ 'ଶିଶୁ ସଂଗୀତ',ଦ୍ୱିଜେନ୍ଦ୍ର ଲାଲ ବସୁଙ୍କ 'ଚିଡ଼ିଆଖାନା', ବଳରାମ ଦାସଙ୍କ 'ଶିଶୁବୋଧ ରାମାୟଣ', ମଣିଚରଣ ମହାପାତ୍ରଙ୍କ 'ନୂତନ ଶିଶୁ ଖେଳ ଗୀତ', ବାଙ୍କନିଧି ପଟ୍ଟନାୟକଙ୍କ "ସାବିତ୍ରୀ', 'କଥା ଶତକ', ଗୀତି', ମିର୍ଜା ମହମ୍ମଦ ୟାକୁବ୍ ବେଗଙ୍କ 'ଅପ୍‌ସରୀ କାହାଣୀ' ସଦାନନ୍ଦ ଦାସଙ୍କ ସହଧର୍ମିଣୀଙ୍କ ରଚିତ 'କଥା ଲହରୀ', ଶ୍ରୀନିବାସ ସିଂହଙ୍କ 'ଶିଶୁମେଳା ଗୀତ', ମୁନ୍‌ସି ଜାନ୍‌ସାହାଙ୍କ 'ଶୈଶବ ଗୀତିକା', ରାମଚନ୍ଦ୍ର ଆଚାର୍ଯ୍ୟଙ୍କ 'ହିତକଥା ୧ମ ଓ ୨ୟ', 'ଶିଶୁ ଭକ୍ତି', ଓ ଦୟାନିଧି ମିଶ୍ରଙ୍କ 'କଥା କଦମ୍ବ', ଇତ୍ୟାଦି ଶିଶୁମାନଙ୍କ ପାଇଁ ରଚିତ ପୁସ୍ତକ ।

ଏହି ପର୍ଯ୍ୟାୟରେ ଭବନାଥ ମୁଖାର୍ଜୀଙ୍କ 'ପ୍ରଥମ ପାଠ' (୧୯୨୯) ଓ ଏହା ପରେ ପରେ ବୈଦ୍ୟନାଥ ରଥଙ୍କ 'ଅକ୍ଷର ଶିକ୍ଷା' ଚକ୍ରଧର ମାହାପାତ୍ରଙ୍କ 'ହସଖେଳ' ଓ ଭାବଗ୍ରାହୀ ମହାନ୍ତିଙ୍କ 'ପାଠ ମଞ୍ଜରୀ' ଶିଶୁ ମାନଙ୍କ ପାଇଁ ଉଲ୍ଲେଖଯୋଗ୍ୟ ପାଠ୍ୟ ପୁସ୍ତକ ବୋଲି ଗ୍ରହଣ କରାଯାଏ । ଏ କ୍ଷେତ୍ରରେ ଜାତୀୟ କବି ବୀରକିଶୋର ଦାସଙ୍କ 'ମୋ ବହି' ମଧ୍ୟ ଉଲ୍ଲେଖନୀୟ ।

୧୯୨୬ ରୁ ୧୯୪୭ ମସିହା ମଧ୍ୟବର୍ତ୍ତୀ ସମୟର ଓଡ଼ିଆ ଶିଶୁ ସାହିତ୍ୟ ଏକ ଉଜ୍ଜ୍ୱଳ ସମ୍ଭାବନା ନେଇ ଋଦ୍ଧିବନ୍ତ । ଏହି ସମୟ ମଧ୍ୟରେ କେତୋଟି ଶିଶୁ ପତ୍ରିକାର ପ୍ରକାଶନ ଏହାର ଅଗ୍ରଗତିର ପ୍ରଧାନ ପରିଚାୟକ । ୧୯୧୮ ମସିହାରେ ଓଡିଆ ଭାଷାରେ ସର୍ବପ୍ରଥମ ଶିଶୁ ସାହିତ୍ୟ ପତ୍ରିକା 'ପଞ୍ଚାମୃତ' ପ୍ରକାଶ ପାଇଥିଲା, ଏହା ସ୍ୱର୍ଗତଃ ଚିନ୍ତାମଣି ଆଚାର୍ଯ୍ୟ ଓ ଅଗଣି ଦାସଙ୍କ ଯୁଗ୍ମ ସଂପାଦନାରେ କଟକ ଟ୍ରେଡ଼ିଂ କଂପାନୀ ତରଫରୁ ପ୍ରକାଶିତ ହୋଇଥିଲା । ଏହା ଦୀର୍ଘ ପାଞ୍ଚବର୍ଷ ଧରି ପ୍ରକାଶିତ ହୋଇଥିଲା । ଗୋପାଳ ଚନ୍ଦ୍ର ପ୍ରହରାଜ, ପୀତାମ୍ବରୀ ଦେବୀ, ସୁପ୍ରଭା ଦେବୀ, ପ୍ରତିଭା ଦେବୀ, ଦୟାନିଧି ମିଶ୍ର, ଗୋଦାବରୀଶ ମିଶ୍ର ପ୍ରମୁଖ ଏଥିରେ ଶିଶୁ ଉପଯୋଗୀ ଗଳ୍ପ ଏବଂ ପଦ୍ମଚରଣ ଅଜୟ ଚନ୍ଦ୍ର ଦାସ, ଉପେନ୍ଦ୍ର ତ୍ରିପାଠୀ ଓ କୃଷ୍ଣ ଚନ୍ଦ୍ର କର ଇତ୍ୟାଦି ଶିଶୁ କବିତାମାନ ରଚନା କରୁଥିଲେ । ଏହାପରେ ୧୯୩୧ ମସିହାରେ ସ୍ୱର୍ଗତଃ ବାଳକୃଷ୍ଣ କରଙ୍କ ସଂପାଦନାରେ 'ଜହ୍ନମାମୁଁ' ପ୍ରକାଶ ପାଇଲା । ପିଲାମାନଙ୍କ ଜ୍ଞାନର ପରିସୀମା ବୃଦ୍ଧି ନିମିତ୍ତ ଗଳ୍ପ କବିତା ବ୍ୟତୀତ ଏଥିରେ ଆହୁରି ଅନେକ ଜିନିଷ ଯଥା–ଜ୍ଞାନ ବିଜ୍ଞାନ, ଗୋଲକ ଧନ୍ଦା, ପ୍ରଶ୍ନ ଉତ୍ତର, ଚୁପ୍ ଚାପ୍, ସୁନାଫରୁଆ, ରଙ୍ଗରସ ଇତ୍ୟାଦି ସ୍ଥାନ ପାଇଥିଲା । ବଳିଷ୍ଠ ସଂପାଦନା ପାଇଁ ଏହି ପତ୍ରିକାଟି ୧୨।୧୩ ବର୍ଷ କାଳ ବର୍ତ୍ତି ପାରିଥିଲା । ଲକ୍ଷ୍ମୀକାନ୍ତ ମହାପାତ୍ର, ପଦ୍ମଚରଣ ପଟ୍ଟନାୟକ, ଉପେନ୍ଦ୍ର ତ୍ରିପାଠୀ, କୃଷ୍ଣ ଚନ୍ଦ୍ର କର, ହରିହର ମିଶ୍ର, ଅନନ୍ତ-ଚରଣ ଶତପଥୀ, ଗୋଦାବରୀଶ ମହାପାତ୍ର, ରାମ ପ୍ରସାଦ ସିଂହ, ସତ୍ୟାନନ୍ଦ ବେହୁରା, କୁବେର ଦଲାଇ, ଭୁବନେଶ୍ୱର ମିଶ୍ର ଓ କୁଞ୍ଜବିହାରୀ ଦାଶ ପ୍ରଭୃତି ବିଶିଷ୍ଟ ସାହିତ୍ୟିକଗଣ ଏଥିରେ ନିୟମିତ ଭାବେ ଲେଖୁଥିଲେ । ସ୍ୱର୍ଗତଃ କରଙ୍କ ସଂପାଦନାରେ 'ଶିଶୁ ସଂଖାଳି' ଓ 'ମଧୁ କୋଷ' ନାମକ ଅନ୍ୟ ଦୁଇଟି ଶିଶୁ ପତ୍ରିକା ମଧ୍ୟ ପ୍ରକାଶ ପାଇଥିଲା । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସଂପାଦନାରେ ୧୯୩୭ ମସିହାରେ ପ୍ରକାଶିତ ସାହିତ୍ୟ ପତ୍ରିକା 'ଡଗର' ରେ ଶିଶୁମାନଙ୍କ ପାଇଁ „ନାଗବଗ' ବିଭାଗ ରହିଥିଲା । ଏଥିରେ ମୁଖ୍ୟତଃ ତରୁଣ ଲେଖକ ଲେଖିକାମାନେ ଗଳ୍ପ କବିତା-ମାନ ରଚନା କରୁଥିଲେ । ୧୯୪୬ ମସିହାରେ ଜାତୀୟ କବି ବୀରକିଶୋରଙ୍କ ସଂପାଦନାରେ 'ମୋ ଦେଶ' ପ୍ରକାଶିତ ହୋଇ ଉଚ୍ଚାଙ୍ଗ ଶିଶୁ ସାହିତ୍ୟ ସୃଷ୍ଟିରେ ସାହାଯ୍ୟ କରିଥିଲା ।

ଏହି ସମୟରେ ବିଭିନ୍ନ ଶିଶୁ ପତ୍ର ପତ୍ରିକାରେ ରମାରଞ୍ଜନ ମହାନ୍ତି, କୈଳାସ ତ୍ରିପାଠୀ, ଜଗନ୍ନାଥ ପଢ଼ିଆରୀ, ବାମଦେବ ମିଶ୍ର, ହରିହର ମିଶ୍ର, ଭଗବାନ ପତି, ବଂଶୀଧର ସାମନ୍ତରାୟ, ଡମ୍ବରୁଧର ପରିଡ଼ା, କୃଷ୍ଣ ଚନ୍ଦ୍ର ତ୍ରିପାଠୀ, ହରିହର ମହାପାତ୍ର, ସତ୍ୟାନନ୍ଦ ମହାନ୍ତି, କାଳନ୍ଦି ଚରଣ ପାଣିଗ୍ରାହୀ, ଉଦୟନାଥ ଷଡ଼ଙ୍ଗୀ, ମାୟାଧର ମ ନସିଂହ, ଲକ୍ଷ୍ମୀଧର ଦାନ୍ ପ୍ରଭୃତି ସାହିତ୍ୟିକଗଣ ଶିଶୁମାନଙ୍କ ପାଇଁ ଗଳ୍ପ କବିତାଦି ରଚନା କରୁଥିଲେ ।

୧୯୪୭ ମସିହାରେ ପ୍ରକାଶିତ ନିତ୍ୟାନନ୍ଦ ସିଂହଙ୍କର 'ଗାନ୍ଧୀ ଗଳ୍ପ' ଏକ ଉତ୍‌କୃଷ୍ଟ ଶିଶୁ ଗଳ୍ପ ପୁସ୍ତକ । ମହାତ୍ମା ଗାନ୍ଧୀଙ୍କ ଜୀବନର କେତେକ ସତ୍ୟ ଘଟଣାକୁ ନେଇ ଏହି ଗଳ୍ପଗୁଡ଼ିକ ରଚନା କରାଯାଇଛି । ପଣ୍ଡିତ ନୀଳକଣ୍ଠ ରଥଙ୍କ 'ହରିଜନ ଗାଥା ୧୯୪୭ ମସିହାରେ ଓଡ଼ିଶା ପବ୍ଲିଶିଂ ହାଉସଦ୍ୱାରା ପ୍ରକାଶିତ ହୋଇଥିଲା । ପୁରାଣ ଓ ଇତିହାସର ଚରିତମାନଙ୍କ ଅବଲମ୍ବନରେ ରଚିତ ବିଭିନ୍ନ ଆଠ ଗୋଟି ଗଳ୍ପ ପିଲାମାନଙ୍କ ପାଇଁ ବେଶ୍ ଉପାଦେୟ । ଚକ୍ରଧର ମହାପାତ୍ରଙ୍କ 'ଗୋଲାପ ପରି' ଓ 'କଥା ଟିଏ କହୁଁ' ୧୯୪୬ ମସିହାରେ ପ୍ରକାଶିତ ହୋଇଥିଲା । କାଳ୍ପନିକ ବିଷୟ ବସ୍ତୁ ଉପରେ ରଚିତ ଏ ଦୁଇଟି ଉତ୍‌କୃଷ୍ଟ ଶିଶୁ ଗଳ୍ପ ପୁସ୍ତକ ।

୧୯୨୭ ମସିହାରେ ଇତିହାସର କଥା ବସ୍ତୁ ଅବଲମ୍ବନରେ ଶ୍ରୀକୃଷ୍ଣ ଶତପଥୀଙ୍କ ଦ୍ୱାରା ରଚିତ 'ଯଯାତୀ' ଏବଂ ୧୯୪୬ ମସିହାରେ ରାଧାମୋହନ ପୁସ୍ତକାଳୟ ଆନୁକୁଲ୍ୟରେ ପ୍ରକାଶିତ ଧନେଶ୍ୱର ଦାସଙ୍କ 'ଭଙ୍ଗା ଦେଉଳ' ଦୁଇଟି ଉଲ୍ଲେଖନୀୟ ଶିଶୁ ଉପନ୍ୟାସ ।

ସ୍ୱାଧୀନୋତ୍ତର ତଥା ଆଧୁନିକ ଯୁଗର ଓଡିଆ ଶିଶୁ ସାହିତ୍ୟ ପ୍ରଭୃତି ବିକାଶ ଓ ପ୍ରସାର ଲାଭ କରିଛି । ଏଥିପାଇଁ ସ୍ୱାଧୀନତା ପୂର୍ବବର୍ତ୍ତୀ ସାହିତ୍ୟ ଓ ସାହିତ୍ୟିକମାନଙ୍କର ଅବଦାନ ଏହି ବିକାଶ ଓ ପ୍ରସାରର ପଥକୁ ସୁଗମ କରିବାରେ ସାହାଯ୍ୟ କରିଛନ୍ତି, ଏହା ମୁକ୍ତ କଣ୍ଠରେ ସ୍ୱୀକାର କରାଯାଇ ପାରେ ।

ସଂପାଦକ, "ନାନାବାୟା",
ଭୁତମୁଣ୍ଡାଇ, କଟକ–୭୫୪୧୪୧ ।

# ଜାତୀୟ ଅଭ୍ୟୁତ୍ଥାନରେ ...... ଯୁବ ସମାଜର ଭୂମିକା

— ଶ୍ରୀ କାଳନ୍ଦୀ ଚରଣ ସେନାପତି —

ସମ୍ପ୍ରତି ମାନବ ସଭ୍ୟତା ଯୁକ୍ତିଗତ ବସ୍ତୁବାଦ ମଧ୍ୟଦେଇ ଅଗ୍ରସର ହେଉଛି । ପରିଦୃଶ୍ୟମାନ ଜଗତର ଅନ୍ତରାଳରେ ଥିବା ଏକ ସୂକ୍ଷ୍ମ ପ୍ରଚ୍ଛନ୍ନ ଆଧ୍ୟାତ୍ମିକ ଶକ୍ତି ଯେ ଏହି ଯାବତୀୟ ସୃଷ୍ଟିର ମୂଳକାରଣ, ଏହା ଜଡ଼ବାଦୀମାନେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁନ୍ତି । ଜଡ଼ବାଦୀ ଗୁହେଁ ଏକ ଅଭିନବ ସୃଷ୍ଟି, ଯାହାର ପୃଷ୍ଠଭୂମି ବସ୍ତୁବାଦ ଉପରେ ପର୍ଯ୍ୟବସିତ । ସେ ସମ୍ପୂର୍ଣ୍ଣରୂପେ ଆଧ୍ୟାତ୍ମବାଦକୁ ପ୍ରତ୍ୟାଖ୍ୟାନ କରେ । ହେଲେ ଏହି ବସ୍ତୁତାତ୍ତ୍ୱିକ ସଭ୍ୟତା ବେଶୀ ଦୂର ଅଗ୍ରସର ହୋଇପାରେ ନାହିଁ । ଏହାର ଦୁଃସମୟ ଉପସ୍ଥିତ ହୁଏ; ଦୁର୍ଗତି ମଧ୍ୟରେ ପଡ଼ି ପରିଶେଷରେ ବିଲୁପ୍ତ ହୋଇଯାଏ । ଏକଦା ଗ୍ରୀସ୍, ଇଜିପଟ, ରୋମ୍ ଓ ବେବିଲୋନ ପ୍ରଭୃତି ରାଷ୍ଟ୍ରଗୁଡ଼ିକ ସଭ୍ୟତାର ଚରମ ସୀମାରେ ପନୀତ ହୋଇଥିଲେ; କିନ୍ତୁ ଆଜି ସେହି ସଭ୍ୟତାର ଚିହ୍ନ ବର୍ଣ୍ଣ ଦ୍ଧା ଦେଖିବାକୁ ମିଳେ ନାହିଁ । ସେମାନଙ୍କର ଜାତୀୟ ଜୀବନ ତ ପ୍ରାୟ ପ୍ରତୀୟମାନ ହୁଏ । ଅତୀତରେ ଦେଖାଯାଇଛି ଯେ ପରି ସଭ୍ୟତା ଆଧ୍ୟାତ୍ମିକତାକୁ ପ୍ରତ୍ୟାଖ୍ୟାନ କରିଛି, ସେ ଚିରେ ପତନ ଅଭିମୁଖେ ଗତି କରିଛି; କିନ୍ତୁ ନାନା ଉତ୍ଥାନ, ତନ ଓ ବିଦେଶୀମାନଙ୍କ ଆକ୍ରମଣ ସତ୍ତ୍ୱେ ଭାରତର ଜାତୀୟ ତିଭା ସଦା ଅମ୍ଳାନ ଓ ଜୀବନ୍ତ ହୋଇ ରହି ଆସିଛି । ଭାରତର ାତୀୟ ସତ୍ତା ଚିରଦିନ ଅସୀମର ସନ୍ଧାନ କରିଛି ଓ ପାର୍ଥିବ ୀବନର ପଶ୍ଚାତ୍‌ରେ ଯେଉଁ ଅତ୍ୟୁଜ୍ଜ୍ୱଳ ସତ୍ତାର ପ୍ରକାଶ, ତାହାହିଁ ସେ ଚିରଦିନ ଲାଗି ଖୋଜି ଚାଲିଛି । ସେଥିପାଇଁ ଯେତେବେଳେ ଭାରତର ସଭ୍ୟତା ଉପରେ ଆକ୍ରମଣ ହୋଇଛି ଓ ତା'ର ଦେବ ମନ୍ଦିରଗୁଡ଼ିକୁ ଧ୍ୱଂସ କରାଯାଇଛି, ପରେ ପରେ ଦେଖା-ଯାଇଛି ଆଧ୍ୟାତ୍ମିକ ଶକ୍ତି ପ୍ରବଳ ବେଗରେ ପ୍ରବହମାନ ହୋଇ ମୁମୂର୍ଷୁ ଭାରତକୁ ପୁନରୁଜ୍ଜୀବିତ କରିଛି ଓ ନବଯୌବନର ତେଜ ନେଇ ତା'ର ସଭ୍ୟତା ପୁଣି ମୁଣ୍ଡ ଟେକି ଉଠିଛି । ଶ୍ରୀ ଅରବିନ୍ଦ ଭାରତର ନିୟତି ସମ୍ପର୍କରେ କହିଛନ୍ତି—

"ଭାରତ ଧ୍ୱଂସ ହୋଇ ନ ପାରେ, ଆମ୍ଭମାନଙ୍କ ଜାତି ଲୁପ୍ତ ହୋଇ ନପାରେ, କାରଣ ମାନବ ଗୋଷ୍ଠୀ ସମୂହ ମଧ୍ୟରେ ଭାରତ ସକାଶେ ନିର୍ଦ୍ଦିଷ୍ଟ ରହିଛି । ସମଗ୍ର ମାନବ ଜାତିର ଭବିଷ୍ୟତ ହିତପାଇଁ ଅପରିହାର୍ଯ୍ୟ ଏକ ଉଜ୍ଜ୍ୱଳତମ ଓ ମହତ୍ତମ ସିଦ୍ଧି ।"

ଆମେ ଯଦି ଭାରତର ଜାତୀୟ ଇତିହାସ ଅନୁଧ୍ୟାନ କରୁ, ତେବେ ସ୍ପଷ୍ଟ ରୂପେ ଜାଣିପାରୁ ଯେ ସାହିତ୍ୟ, ସଂସ୍କୃତି, ବିଜ୍ଞାନ ଓ ଜ୍ଞାନ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଭାରତ ସମଗ୍ର ବିଶ୍ୱକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରି ଆସିଛି । ଭାରତର ଦିବ୍ୟଦ୍ରଷ୍ଟା ଋଷିଗଣ ବେଦ, ବେଦାନ୍ତ ପରି ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବଳିତ ସାହିତ୍ୟ ରଚନା କରି ମାନବ ଚେତନାକୁ ଉଚ୍ଚତର ଦିବ୍ୟ ଚେତନା ଦିଗକୁ ଉନ୍ନୀତ କରିଥିଲେ । ବ୍ୟାସ, ବାଲ୍ମୀକି ଓ କାଳିଦାସ ପ୍ରଭୃତି କବିଗଣଙ୍କର ଅମର କୃତିତ୍ୱ ସର୍ବ ଯୁଗମୟୀ ସୌନ୍ଦର୍ଯ୍ୟରେ ଉଦ୍ଭାସିତ ହେବ, ଏଥିରେ ସନ୍ଦେହ ନାହିଁ ।

ଶିଳ୍ପ କ୍ଷେତ୍ରରେ ମଧ୍ୟ ଭାରତର ଅବଦାନ କମ୍ ନ ଥିଲା । ଆମ ଦେଶର ଶିଳ୍ପୀମାନଙ୍କର କଳ୍ପନାତୀତ ଶିଳ୍ପ ନୈପୁଣ୍ୟ ଏହି ଦେଶର ପ୍ରସିଦ୍ଧ ମନ୍ଦିର ଓ ପବିତ୍ର ଶିଳାଖଣ୍ଡମାନଙ୍କରେ ନିଖୁଣ ଭାବେ ଫୁଟି ଉଠିଥିଲା । ଗୁପ୍ତ ଯୁଗରେ ଭାରତୀୟ ଚିତ୍ରକଳାର ଯେଉଁ ଉତ୍କର୍ଷ ଘଟିଥିଲା, ତାହାର ପ୍ରମାଣ ଆମ୍ଭେ ଅଜନ୍ତା ଓ ଏଲୋରା ଗୁମ୍ଫାମାନଙ୍କରୁ ପାଇପାରିବା ।

ଏହି ଦେଶର ସଙ୍ଗୀତ ଓ ନୃତ୍ୟକଳା ଥିଲା ଆଧ୍ୟାତ୍ମିକ ଅଭିମୁଖୀ । ଏହା ମନୁଷ୍ୟକୁ ଇନ୍ଦ୍ରିୟଗତ ଆନନ୍ଦ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଅତୀନ୍ଦ୍ରିୟ ଭାବର ଉଦ୍ରେକ କରିଥିଲା ।

ଖ୍ରୀଷ୍ଟ ଜନ୍ମ ପୂର୍ବରୁ ଭାରତବର୍ଷର ବୀରତ୍ୱ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିଥିଲା । ଏପରିକି ବିଶ୍ୱବିଜେତା ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର ପଞ୍ଜାବ ଜୟ କରି ସାରିବା ପରେ ଭାରତର ପୂର୍ବ ଭାଗରେ ଗଢ଼ି ଉଠିଥିବା ବିଶାଳ ନନ୍ଦ ସାମ୍ରାଜ୍ୟର ବ୍ୟାପକତା ଓ ବୀରତ୍ୱରେ ଭୟଭୀତ ହୋଇ ଆଉ ଅଧିକଦୂର ଅଗ୍ରସର ହେବାକୁ ସାହସ କରି ନଥିଲେ । ମଧ୍ୟଯୁଗରେ ରାଜପୁତ-ମାନଙ୍କର ବୀରତ୍ୱ, ତ୍ୟାଗ, ଉଦାରତା ଓ ରାଜପୁତ ରମଣୀର

ସତୀତ୍ୱ ଓ ଗୌରବ ରକ୍ଷା ନିମନ୍ତେ ଆତ୍ମବଳି ବିଶ୍ୱ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଆରବ୍ୟ ରଜନୀର ଏକ କାହାଣୀରେ ବର୍ଣ୍ଣିତ ଅଛି ଯେ ତତ୍‌କାଳୀନ ପୃଥିବୀରେ ଯେଉଁ ଚାରିଜଣ ପ୍ରସିଦ୍ଧ ନରପତି ଥିଲେ, ସେମାନଙ୍କ ମଧ୍ୟରେ ପଶ୍ଚିମ ଭାରତରେ ଗଢ଼ି ଉଠିବା ରାଷ୍ଟ୍ରକୂଟ ରାଜ୍ୟର ନରପତି ଅନ୍ୟତମ । ଭାରତର ଏତାଦୃଶ ବୀରତ୍ୱ କଦାପି କୌଣସି ଦେଶ ବିରୁଦ୍ଧରେ ଉଦ୍ଦିଷ୍ଟ ନଥିଲା । ଇତିହାସରେ ଭାରତ କେବେ ଆକ୍ରମଣକାରୀର ଭୂମିକା ଗ୍ରହଣ କରିନାହିଁ ବରଂ ନିଜର ସମସ୍ତ ଶକ୍ତି ଦେଇ ଅନ୍ୟ ଜାତିର ହିତସାଧନ କରିଛି । ଶ୍ରୀ ଅରବିନ୍ଦ ଯଥାର୍ଥରେ କହିଥିଲେ–

"ଭାରତବର୍ଷ ଅନ୍ୟଦେଶ ତୁଲ୍ୟ ନିଜ ସକାଶେ ଜାଗ୍ରତ ହୋଇ ନାହିଁ ବା ଶକ୍ତିଶାଳୀ ହୋଇନାହିଁ, ଦୁର୍ବଳକୁ ଗୋଡ଼ରେ ଦଳି ଦେବାକୁ ଉଠି ନାହିଁ । ତାହା ପାଖରେ ନ୍ୟସ୍ତଥିବା ଶାଶ୍ୱତ ଜ୍ୟୋତିକୁ ଜଗତରେ ବିକୀର୍ଣ୍ଣ କରିବ ବୋଲି ତାହାର ଉତ୍‌ଥାନ ହୋଉଛି । ଭାରତ ଚିରଦିନ ବଞ୍ଚି ରହିଛି ବିଶ୍ୱ-ମାନବଙ୍କ ସକାଶେ, ନିଜ ସକାଶେ ନୁହେଁ । ଆଉ ଆଜି ତାକୁ ବଡ଼ ହେବାକୁ ପଡ଼ିବ ବିଶ୍ୱମାନବ ସମାଜ ପାଇଁ, ନିଜ ପାଇଁ ନୁହେଁ ।"

ଧର୍ମ କ୍ଷେତ୍ରରେ ମଧ୍ୟ ଭାରତ ବିଶ୍ୱରେ ଏକ ସୁଦୃଢ଼ ସମନ୍ୱୟ ସ୍ଥାପନ କରିପାରିଛି । ବିଶ୍ୱର ବିଭିନ୍ନ ଧର୍ମରୁ ସାର ସଂଗ୍ରହ କରି ଭାରତୀୟ ସଂସ୍କୃତି ନିଜକୁ ସୁସମୃଦ୍ଧ କରି ପାରିଛି । ଏହି ଭୂମିରେ ଦିନେ ହିନ୍ଦୁ, ବୌଦ୍ଧ ଓ ଜୈନ ଧର୍ମର ଅପୂର୍ବ ସମନ୍ୱୟ ଘଟିଥିଲା । ପରବର୍ତ୍ତୀ କାଳରେ ମୁସଲମାନ ଧର୍ମର ଏକେଶ୍ୱରବାଦ ଭାରତର ଏକେଶ୍ୱରବାଦ ତତ୍ତ୍ୱକୁ ଦୃଢ଼ୀଭୂତ କରିଥିଲା । ଶିଖ୍‌ଧର୍ମର ସହନଶୀଳତା ଓ ତ୍ୟାଗ ଏବଂ ଖ୍ରୀଷ୍ଟିୟାନ ଧର୍ମର ବିଶ୍ୱ ଭ୍ରାତୃତ୍ୱ ଭାରତୀୟ ସଂସ୍କୃତିକୁ ବହୁ ଭାବରେ ପ୍ରଭାବିତ କରିଛି ।

ଚିକିତ୍ସା ବିଜ୍ଞାନ, ଜ୍ୟୋତିଷ ବିଦ୍ୟା ଓ ପ୍ରାଚୀନ ବିଜ୍ଞାନର ଅଗ୍ରଗତି ଫଳରେ ଭାରତ ସମଗ୍ର ବିଶ୍ୱକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଥିଲା । ବର୍ତ୍ତମାନର ଗଣିତ ବିଜ୍ଞାନ ଭାରତର ସଂପୂର୍ଣ୍ଣ ନିଜସ୍ୱ । କାରଣ, ୧ ଠାରୁ ୯ ପର୍ଯ୍ୟନ୍ତ ସଂଖ୍ୟା, ଦଶମିକ ଓ ଶୂନ୍ୟ ତତ୍ତ୍ୱ ଆରବୀୟମାନେ ଆମ ଦେଶରୁ ଶିକ୍ଷା କରି ଇଉରୋପୀୟମାନଙ୍କୁ ଦାନ କରିଥିଲେ ।

ସର୍ବୋପରି ବିଶ୍ୱକୁ ଭାରତର ସର୍ବଶ୍ରେଷ୍ଠ ଦାନ ହେଉଛି ଆଧ୍ୟାତ୍ମିକ ଦାନ । ଏହି ଭୂମିରେ ଯୁଗ ଯୁଗ ଧରି ମହାପୁରୁଷ-ମାନଙ୍କର ଆବିର୍ଭାବ ଘଟିଛି । ସେମାନଙ୍କ ତପଃଶକ୍ତିରେ ଭାରତଭୂମି ଋଦ୍ଧିମନ୍ତ ହୋଇଛି । ମହାପୁରୁଷମାନଙ୍କ ଦିବ୍ୟ ଉଦାରବାଣୀ ସମଗ୍ର ବିଶ୍ୱବାସୀଙ୍କୁ ଚମତ୍କୃତ କରିଛି । ଆଜି ପାଶ୍ଚାତ୍ୟବାସୀ ଆଧ୍ୟାତ୍ମିକ ଅନୁପ୍ରେରଣା ଲାଭ କରିବା ପାଇଁ ଏହି ଦେବଭୂମି ଆଡ଼କୁ ମୁଖ ଫେରାଇଛନ୍ତି । ହେଲେ, ଭାରତବାସୀ ଆଜି ପାଶ୍ଚାତ୍ୟ ସଭ୍ୟତାର ଅନ୍ଧ ଅନୁଗାମୀ ହୋଇ ଆଦର୍ଶ ପଥରୁ ବିଚ୍ୟୁତ ହୋଇଛନ୍ତି । ଯାହାଫଳରେ ଭାରତର ପୂର୍ବ ଗୌରବ ଆଜି ଲୁପ୍ତପ୍ରାୟ । ଦେଶକୁ ଏହି ଦାରୁଣ ମୁହୂର୍ତ୍ତରୁ ରକ୍ଷା କରିବାକୁ ହେଲେ ଯୁବ ସମାଜର ଶକ୍ତି ଉପରେ ନିର୍ଭର କରିବାକୁ ହେବ କାରଣ, ଏହି ତରୁଣ-ମାନେହିଁ ସ୍ଥାପନ କରିପାରିବେ ଏକ ବିକାଶଶୀଳ ମାନବ ସମାଜର ଭିତ୍ତି । ଦ୍ୱିତୀୟ ଜନ୍‌ପଲ୍ ଯୁବକମାନଙ୍କ ଉଦ୍ଦେଶ୍ୟରେ କହିଥିଲେ ।–

"Looking at your faces we see the future. In the light of your eyes, the year 2000 shines."

ଏମାନେ ହେଲେ ସେହି ଯୁବସମାଜ ଯେଉଁମାନଙ୍କ ଚକ୍ଷୁର ଜ୍ୟୋତିରେ ଆଗାମୀ ଭବିତବ୍ୟର ବର୍ଷଗୁଡ଼ିକ ଫୁଟି ଉଠିବ । ବିଶ୍ୱ ଇତିହାସର ଏକ ଅଭୂତପୂର୍ବ ମୁହୂର୍ତ୍ତରେ ଆଜିର ଯୁବ ସମାଜ ଉପନୀତ ହୋଇଛନ୍ତି, ଯେଉଁ ସମୟରେ ଶିଳ୍ପ, ବିଜ୍ଞାନ, ସାହିତ୍ୟ ଓ ସଂସ୍କୃତି ସକଳ କ୍ଷେତ୍ରରେ ଏକ ଚରମ ବିଶୃଙ୍ଖଳା ଦେଖା ଦେଇଛି । ବସ୍ତୁତଃ ଏକ ବିଶ୍ୱବ୍ୟାପୀ ଅଶାନ୍ତି ସମଗ୍ର ଜଗତରେ ଆଜି କାୟା ବିସ୍ତାର କରି ରହିଛି । ମାନବ ଜୀବନ ହୋଇଯାଇଛି ଘୋର ଅଶାନ୍ତିମୟ । ଏହି ପରିସ୍ଥିତିକୁ କୌଣସି ରାଷ୍ଟ୍ରନୈତିକ ବା ସାମାଜିକ ବିପ୍ଳବ ଦ୍ୱାରା ଶାନ୍ତ କରାଯାଇ ନପାରେ । ଏହା କେବଳ ସମ୍ଭବ ହୋଇପାରେ ଏକ ଆନ୍ତର ବିପ୍ଳବ ଦ୍ୱାରା, ମାନବ ଅନ୍ତରରେ ଆଧ୍ୟାତ୍ମିକ ଭାବର ବିକାଶ ଦ୍ୱାରା । ଏକଦା ଆଧ୍ୟାତ୍ମିକ ଶକ୍ତି ଭାରତକୁ ସଞ୍ଜିବନୀ ସୁଧାରେ ଭସାଇ ମୃତ ଜାତିକୁ ଜୀବିତ, ବଳିଷ୍ଠ ଓ ତେଜସ୍ୱୀ କରି ଗଢ଼ି ତୋଳିଥିଲା । ପୁଣି ସେହି ତପୋବଳ ଅଦମ୍ୟ ଅଜେୟ ଶକ୍ତି ନେଇ ପ୍ରକାଶିତ ହେବ । ସୁତରାଂ ଯୁବଶକ୍ତି ସେହି ଦିବ୍ୟଶକ୍ତିର ଉତ୍ସ ଅନ୍ୱେଷଣ କରିବେ । ନିମ୍ନ ଚେତନାର କର୍ଦ୍ଦମ ମଧ୍ୟରୁ ନିଜକୁ ମୁକ୍ତ କରି ଦିବ୍ୟ ଚେତନା ଆଡ଼କୁ ଉନ୍ମୀଳିତ ହେବେ । ସେମାନଙ୍କ ଅନ୍ତରସ୍ଥ ସୁପ୍ତ ଦେବତ୍ୱର ଜାଗରଣ ଘଟିବ । ସେମାନେ ସ୍ୱୟଂ ହେବେ ଶକ୍ତି ଓ ଆଲୋକର ବିକୀରଣ କେନ୍ଦ୍ର । ଭାରତର ଆର୍ଯ୍ୟ-ସନ୍ତାନଗଣଙ୍କ ମଧ୍ୟରେ ଲୁପ୍ତ ଶିକ୍ଷା, ଚରିତ୍ର, ମେଧାଶକ୍ତି, ଭକ୍ତି, ଶ୍ରଦ୍ଧା, ତପସ୍ୟା ବ୍ରହ୍ମଚର୍ଯ୍ୟ ଓ ସତ୍ୟଜ୍ଞାନର ବିକାଶ ଘଟିବ । ଭାରତର ଭାଗ୍ୟା-କାଶର ରବି ପୁନଃ ଉଦିତ ହେବ ଏବଂ ତାହାର ତେଜୋଦୀପ୍ତ ଆଲୋକର ଦୃପ୍ତ ଶିଖାରେ ସମଗ୍ର ପୃଥିବୀକୁ ପ୍ଲାବିତ କରିବ । ଆନ୍ତର୍ଜାତିକ ଯୁବ ସମ୍ମହର ଅବକାଶରେ ଏକ ନୂତନ ଜାତିର ଅଭ୍ୟୁତ୍‌ଥାନ ପାଇଁ ଶ୍ରୀ ଅରବିନ୍ଦ ଯୁବ ସମାଜକୁ ଯେଉଁ ଆହ୍ୱାନ ଦେଇଥିଲେ, ତାହା ତରୁଣମାନଙ୍କର ବିଚାର ଓ ବିବେଚନା ପାଇଁ ନିମ୍ନରେ ପ୍ରଦତ୍ତ ହେଉଛି :

"ତରୁଣ-ଭାରତକୁ ଆମ୍ଭେମାନେ ଆହ୍ୱାନ କରୁଛୁ, ତରୁଣମାନେହିଁ ଏହି ନୂତନ ଜଗତର ନିର୍ମାତା ହେବେ, କିନ୍ତୁ ସେମାନେ ନୁହନ୍ତି ଯେଉଁମାନେ ପାଶ୍ଚାତ୍ୟ ଜଗତରେ ପ୍ରତିଯୋଗିତା ମୂଳକ ବ୍ୟକ୍ତିତନ୍ତ୍ର, ପୁଞ୍ଜିବାଦ ବା ବସ୍ତୁତାନ୍ତ୍ରିକ ସାମ୍ୟବାଦକୁ ଭାରତର ଭବିଷ୍ୟତ ଆଦର୍ଶ ରୂପେ ଗ୍ରହଣ କରନ୍ତି ବା ଯେଉଁ-ମାନେ ହୋଇଛନ୍ତି ପୁରାତନ ଧର୍ମନୀତିର କ୍ରୀତଦାସ, ଅଥବା ଯେଉଁମାନେ ଆଧ୍ୟାତ୍ମିକତା ଦ୍ୱାରା ଜୀବନର ରୂପାନ୍ତରରେ ବିଶ୍ୱାସ କରନ୍ତି ନାହିଁ । ବରଂ ଯେଉଁମାନେ ଏକ ପୂର୍ଣ୍ଣତର ସତ୍ୟ ଗ୍ରହଣ କରିବାକୁ ସମର୍ଥ ଏବଂ ଏକ ମହତ୍ତର ଆଦର୍ଶ ନିମିତ୍ତ ଅଧ୍ୟବସାୟ କରିବାକୁ ଯେଉଁମାନଙ୍କର ମନ ଓ ହୃଦୟ ଉନ୍ମୁକ୍ତ ସେହିମାନେହିଁ ଏହି ଜଗତର ନିର୍ମାତା ହେବେ । ସେମାନେ ଏପରି ବ୍ୟକ୍ତି ହେବେ ଯେଉଁମାନେ ଅତୀତ ଓ

ବର୍ତ୍ତମାନ ପାଇଁ ନିଜକୁ ଉତ୍ସର୍ଗ ନକରି ଭବିଷ୍ୟତ ପ୍ରତି ନିଜକୁ ଉତ୍ସର୍ଗ କରିବେ । ସେମାନେ ନିଜକୁ ପୂର୍ଣ୍ଣପ୍ରାଣରେ ଉତ୍ସର୍ଗ କରିବେ ନିଜର ନିମ୍ନ ପ୍ରକୃତିକୁ ଅତିକ୍ରମ କରିବା ନିମିତ୍ତ, ନିଜ ମଧ୍ୟରେ ତଥା ସକଳଙ୍କ ମଧ୍ୟରେ ଈଶ୍ୱରଙ୍କୁ ଅନୁଭବ କରିବା ନିମିତ୍ତ, ଦେଶ ଓ ମାନବ ସମାଜ ସକାଶେ ଅକ୍ଲାନ୍ତ ଅଧ୍ୟବସାୟ କରିବା ନିମିତ୍ତ । ଏ ପର୍ଯ୍ୟନ୍ତ ଏହି ଆଦର୍ଶ ରହିଛି ଏକ ସୂକ୍ଷ୍ମ ବୀଜରୂପେ ଏବଂ ଯେଉଁ ଜୀବନରେ ଏହା ଅଭିବ୍ୟକ୍ତ ତାହାହିଁ ହେଉଛି ଏକ ସୂକ୍ଷ୍ମ କେନ୍ଦ୍ର" ।

ଗ୍ରା: ବହଳପଡ଼ା
ପୋ. ଅ.-ବେଣ୍ଟକାର
ଜି : କଟକ



# ଆମର ପରିବେଶ ଓ ପ୍ରାକୃତିକ ସମ୍ପଦ

ଅଧ୍ୟାପକ ପ୍ରଫୁଲ୍ଲ କୁମାର ମହାନ୍ତି



ମନୁଷ୍ୟ ପରିବେଶର ଏକ ମୁଖ୍ୟ ଅଙ୍ଗ । ପରିବେଶ କହିଲେ ମନୁଷ୍ୟ ଚତୁଃପାର୍ଶ୍ବସ୍ଥ ଉଦ୍ଭିଦ ଓ ପ୍ରାଣୀ ସମୂହକୁ ବୁଝାଇଥାଏ । ଏହା ଏକ ପ୍ରାକୃତିକ ସୃଷ୍ଟି । ପରିବେଶ ଜୀବନ ପାଇଁ ଏକ ମୁଖ୍ୟ ଉପାଦାନ ଓ ନିଜେ ମଧ୍ୟ ଏକାଧାରରେ ବିଭବଶାଳୀ । କାରଣ ପରିବେଶର ମୌଳିକ ଉପାଦାନଗୁଡ଼ିକ ହେଉଛି ପ୍ରାକୃତିକ ସଂପଦ । ପ୍ରକୃତିର ଭଣ୍ଡାରରେ ଅନେକ ପ୍ରକାର ପ୍ରାକୃତିକ ସଂପଦ ରହିଛି । ସେଗୁଡ଼ିକ ହେଉ ମୃତ୍ତିକା ସଂପଦ, ଖଣିଜ ସଂପଦ, ଜଳ ସଂପଦ ଓ ଅରଣ୍ୟ ସଂପଦ । ଖଣିଜ ସଂପଦକୁ ସାମାନ୍ୟଭାବେ ବାଦଦେଲେ ଅବଶିଷ୍ଟ ତିନୋଟି ସଂପଦ ପ୍ରତ୍ୟକ୍ଷ ଭାବରେ ମନୁଷ୍ୟ ଜୀବନକୁ ନିୟନ୍ତ୍ରଣ କରିଥାଏ । ମନୁଷ୍ୟ ସେ ସବୁର ବିନିଯୋଗ କରି ସୁଖସ୍ବାଚ୍ଛନ୍ଦ୍ୟରେ ଜୀବନ ଯାପନ କରେ । ଆବଶ୍ୟକ ଖାଦ୍ୟପେୟ, ପରିଧେୟ, ବାସୋପକରଣ, ବିଳାସ ସାମଗ୍ରୀ, ଔଷଧପତ୍ର ଇତ୍ୟାଦି ସେ ତା'ର ଭୌତିକ ପରିବେଶରୁ ଏବଂ ଉଦ୍ଭିଦ ଓ ପ୍ରାଣୀ ଜଗତରୁ ପାଏ । ମନୁଷ୍ୟ ଆଜିକାଲି ଦରକାର ହେଲେ ପ୍ରାକୃତିକ ପରିବେଶକୁ ବଦଳାଇ ଦେଇ ପାରୁଛି । ମାତ୍ର ପ୍ରାକୃତିକ ସଂପଦ ହେଉଛି ତାର ସବୁପ୍ରକାର ଶକ୍ତି, ସାମର୍ଥ୍ୟ, ସୁଖ ଓ ସମୃଦ୍ଧିର କାରଣ ।





କଥାରେ ଅଛି ଖାଇଲେ ନଈବାଲି ସରେ । ସେହିପରି ପ୍ରାକୃତିକ ସଂପଦର ଭଣ୍ଡାର ଅସରନ୍ତି ନୁହେଁ; ବ୍ୟବହାର କଲେ ନିଶ୍ଚୟ ସରିବ । ମୃତ୍ତିକା, ଜଳ, ଉଦ୍ଭିଦ ଓ ପ୍ରାଣୀମାନଙ୍କର କ୍ଷୟ ଘଟୁଛି ଓ ତା ସଙ୍ଗେ ସଙ୍ଗେ ପୂରଣ ହେଉଛି ମଧ୍ୟ । ମାତ୍ର ପୂରଣ ପରିମାଣ କ୍ଷୟ ପରିମାଣ ତୁଳନାରେ ଯଥେଷ୍ଟ କମ୍ । ସୁତରାଂ ଏଥିରୁ ସ୍ପଷ୍ଟ ଯେ କିଛି ବର୍ଷପରେ ଯାହାବି ପ୍ରାକୃତିକ ସଂପଦ ଅଛି ସେଗୁଡ଼ିକର ବିଲୋପ ନିଶ୍ଚିତ ଯଦି ସେଗୁଡ଼ିକ ଉପଯୁକ୍ତ ରୂପେ ସଂରକ୍ଷଣ କରା ନ ଯାଏ, ତେଣୁ ମନୁଷ୍ୟ ବୁଦ୍ଧିବଳରେ ପ୍ରାକୃତିକ ସଂପଦର ସର୍ବାଧିକ ବିନିଯୋଗ କରୁଛି । ତାର ପ୍ରତିବଦଳରେ ସେହି ସଂପଦର ମାତ୍ରା ଠିକ୍ ରହିବା ବା ବୃଦ୍ଧି ହେବା ଦିଗରେ ଚିନ୍ତିତ ହେଲେ ନୂତନ ସଂପଦର ସୃଷ୍ଟି ବା ରକ୍ଷା ହୋଇପାରିବ । ବର୍ତ୍ତମାନ ଦେଖିବା ଏହି ସଂପଦର ସୁରକ୍ଷା ବା ସଂରକ୍ଷଣ କିପରି କରାଯାଇ ପାରିବ ।

## ୧-ମୃତ୍ତିକା ସଂରକ୍ଷଣ

ମୃତ୍ତିକା ସକଳ ପ୍ରକାର ଜୀବନର ଆଧାର ଏବଂ ପ୍ରାକୃତିକ ପରିବେଶର ପ୍ରଧାନ ଅଙ୍ଗ । ଏହା ଉଦ୍ଭିଦ ଓ ପ୍ରାଣୀ ଜଗତକୁ ଖାଦ୍ୟ ଓ ଆଶ୍ରୟ ଯୋଗାଏ । ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ମନୁଷ୍ୟ ତାର ଖାଦ୍ୟ, ବସ୍ତ୍ର, ବାସୋପକରଣ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ବସ୍ତୁ ମୃତ୍ତିକାରୁ ପାଏ । ଯେଉଁଠାରେ ମୃତ୍ତିକା ନାହିଁ ସେଠାରେ ଜୀବନ ବିପର୍ଯ୍ୟସ୍ତ । ପୁନଶ୍ଚ ଯେଉଁଠାରେ ମୃତ୍ତିକା ଥାଇ ତାହା କ୍ଷୟହୁଏ ସେ ସ୍ଥାନ ବି ମରୁଭୂମିରେ ପରିଣତ ହୋଇଥାଏ । ଆଫ୍ରିକା, ଚୀନ୍, ଭାରତ ଓ ଦକ୍ଷିଣ ଆମେରିକାର ଅନେକାଞ୍ଚଳ ଏହାର ଉଦାହରଣ । ବମ୍ବେ ଓ ପ୍ରେରୀ ଅଞ୍ଚଳର କୃଷ୍ଣ କାର୍ପାସ ମୃତ୍ତିକା, କାନାଡ଼ା ଓ ଋଷିଆର ଧୂସର ମୃତ୍ତିକା ଓ ଉଷ୍ଣ କ୍ରାନ୍ତୀୟ ମରୁଭୂମିରେ ଲୋହିତ ରଙ୍ଗର ମୃତ୍ତିକାହିଁ ଏସବୁ ସ୍ଥାନ ପକ୍ଷରେ ଆଶୀର୍ବାଦ ।

ଖାଦ୍ୟ ଉତ୍ପାଦନ ବୃଦ୍ଧି କରିବାକୁ ହେଲେ ମୃତ୍ତିକା-ସଂରକ୍ଷଣ ଆବଶ୍ୟକ । ମୃତ୍ତିକା ସଂରକ୍ଷଣ ପାଇଁ ଦୁଇଟି ପ୍ରଧାନ ଉପାୟ ଅବଲମ୍ବନ କରାଯାଇପାରେ । (କ) ମୃତ୍ତିକା କ୍ଷୟର ନିରୋଧ (ଖ) ମୃତ୍ତିକାର ଉର୍ବରତା ସଂରକ୍ଷଣ । ମୃତ୍ତିକାକ୍ଷୟ ରୋଧ କରିବାକୁ ହେଲେ ବଣ ଜଙ୍ଗଲର ସୁରକ୍ଷା ଆବଶ୍ୟକ । ଯେଉଁଠାରେ ମୃତ୍ତିକା କ୍ଷୟର ଆଶଙ୍କା ବେଶୀ, ସେଠାରେ ନୂତନ ଜଙ୍ଗଲ ସୃଷ୍ଟି କରିବାକୁ ହେବ । ବିଶେଷତଃ ନଦୀବନ୍ଧ ଯୋଜନା ନିକଟରେ ବଣ ଜଙ୍ଗଲ ନଥିଲେ ଜଳସ୍ରୋତରେ ବାଲିମାଟି ବୋହିଆସି ଜଳଭଣ୍ଡାରକୁ ପୋତି ପକାଇବ । ଏସବୁ ସ୍ଥାନରେ ଜଙ୍ଗଲ ବଢ଼ାଇବା ଦରକାର । ଜଳସ୍ରୋତକୁ ବନ୍ଧଦ୍ୱାରା ଅଟକାଇବାଦ୍ୱାରା ଓ ପାହାଡ଼ିଆ ଅଞ୍ଚଳରେ ସୋପାନ ପ୍ରଣାଳୀରେ ଜମିଖଣ୍ଡ କରିବା ଦ୍ୱାରା ମୃତ୍ତିକାକ୍ଷୟକୁ ରୋଧ କରାଯାଇପାରିବ । ଜମି ଯେତେ ସମତଳ ହେବ, ମୃତ୍ତିକା କ୍ଷୟ ସେତେ କମ୍ ହେବ ଏବଂ ଜମିର ଉର୍ବରତା ରକ୍ଷା କରାଯାଇ ପାରିବ ।



### ୨-ଜଙ୍ଗଲ ସଂରକ୍ଷଣ

ଜଙ୍ଗଲ ଆମର ଏକ ପ୍ରଧାନ ପ୍ରାକୃତିକ ସଂପଦ । ଉପଯୁକ୍ତ ପରିକଳ୍ପନା ଅନୁସାରେ ବ୍ୟବହାର କଲେ ଏହା ଦେଶର ଏକ ସ୍ଥାୟୀ ସଂପଦ ହୋଇପାରିବ । ବିଭିନ୍ନ ଉପାୟରେ ବର୍ତ୍ତମାନ ଜଙ୍ଗଲ ସଂପଦକୁ ନଷ୍ଟ କରିବାରେ ମନୁଷ୍ୟ ବ୍ୟସ୍ତ । ଆଜିର ମନୁଷ୍ୟ ଭବିଷ୍ୟତକୁ ଆଖିରେ ନ ରଖି ଜଙ୍ଗଲକୁ ଛିନ୍‌ଛିନ୍ କରି ସଫାକରି ପ୍ରାସାଦ ତୋଳିବାରେ, ଶିଳ୍ପାଞ୍ଚଳ ଗଢ଼ିବାରେ ନିୟୋଜିତ । ଅବଶ୍ୟ ଅନେକ ପରିମାଣରେ ଦରକାର ହେଲେ ବି ସେହି ଅନୁପାତରେ ଅନ୍ୟସ୍ଥାନରେ ବୃକ୍ଷରୋପଣ କରି ଜଙ୍ଗଲ ସୃଷ୍ଟି କରାଯାଉନାହିଁ । ପାହାଡ଼ିଆ ଅଞ୍ଚଳରେ ଲୋକମାନେ ପୋଡୁଚାଷ କରିବା ଦ୍ୱାରା ଜଙ୍ଗଲ ସଂପଦର ଅଶେଷ କ୍ଷତି ଘଟୁଛି । ଜଙ୍ଗଲ ଘର ତିଆରି କାଠ, ବାଉଁଶ, ସବାଇ ଘାସ, ବେତ, ଔଷଧ ବୃକ୍ଷ, ଫଳ ଫୁଲ ଇତ୍ୟାଦି ଯାବତୀୟ ଜିନିଷର ଉତ୍ସ । ତେଣୁ ତାକୁ ସଂରକ୍ଷଣ କରିବାକୁ ହେଲେ ଜଙ୍ଗଲ କାଟିବା ବନ୍ଦ କରିବା ସଙ୍ଗେ ସଙ୍ଗେ ବୃକ୍ଷରୋପଣ କରି ନୂତନ ଜଙ୍ଗଲ ସୃଷ୍ଟି କରିବାକୁ ହେବ ।

### ୩-ବନ୍ୟଜନ୍ତୁ ସଂରକ୍ଷଣ

ଅରଣ୍ୟସ୍ଥ ବୃକ୍ଷର ଫୁଲ ଓ ଫଳ ଯେପରି ଠିକ୍ ସେହିପରି ବୃକ୍ଷ ଓ ତନ୍ମଧ୍ୟସ୍ଥ ଜୀବଜନ୍ତୁ । ଏମାନେ ପରସ୍ପର ଅନୁପୂରକ । ବନ୍ୟଜନ୍ତୁମାନେ ଅରଣ୍ୟର ସୁରକ୍ଷା କରନ୍ତି ଓ ସୌନ୍ଦର୍ଯ୍ୟ ବର୍ଦ୍ଧନ କରନ୍ତି । ସେମାନେ ଅନିଷ୍ଟକାରୀ ଜୀବମାନଙ୍କୁ ମାରି ଆମକୁ ବହୁତ କ୍ଷତିରୁ ରକ୍ଷା କରନ୍ତି । ବନ୍ୟଜନ୍ତୁଗଣ ଯଦି ଶିକାରପ୍ରିୟ ବ୍ୟକ୍ତିମାନଙ୍କର ଅତ୍ୟାଚାରରେ ଅବଲୁପ୍ତ ହୁଅନ୍ତି, ତେବେ ମନୁଷ୍ୟ ସମାଜ ଏକ ମହାସଂପଦ ହରାଇ ବସିବ । ସେହି ହେତୁ ବନ୍ୟଜନ୍ତୁ ସଂରକ୍ଷଣ ମଧ୍ୟ ଏକାନ୍ତ ପ୍ରୟୋଜନୀୟ । ତେଣୁ ଉପଯୁକ୍ତ ସୁରକ୍ଷା ଦିଗରେ ଭାରତ ସରକାରଙ୍କ ସ୍ତରରେ ତତ୍ପରତା ଦେଖା ଦେଇଛି ।

ବନ୍ୟଜନ୍ତୁ ସଂରକ୍ଷଣ ନିମିତ୍ତ ଭାରତବର୍ଷରେ ବହୁ ଅଭୟାରଣ୍ୟର ବ୍ୟବସ୍ଥା କରାଯାଇଛି । କେନ୍ଦ୍ର ସରକାର ବନ୍ୟଜନ୍ତୁମାନଙ୍କ ପାଇଁ ଭାରତୀୟ ସମିତି (The Indian Board for wild life) ନାମକ ସଙ୍ଗଠନ ପ୍ରତିଷ୍ଠା କରିଛନ୍ତି । ବଂଶବୃଦ୍ଧିପାଇଁ ଜାତୀୟ ଉଦ୍ୟାନ (National Park), ଅଭୟାରଣ୍ୟ (Sanctuary) ଓ ଚିଡ଼ିଆଖାନା (Zoo) ମାନ ସ୍ଥାପନ କରାଯାଉଛି । ଜନସାଧାରଣଙ୍କ ଅବଗତି ନିମନ୍ତେ ପ୍ରତିବର୍ଷ ବନ୍ୟଜନ୍ତୁ ସଂରକ୍ଷଣ ସପ୍ତାହ ପାଳନ କରାଯାଉଛି ।ଆକାଶବାଣୀ, ଦୂରଦର୍ଶନ ଓ ସମ୍ବାଦପତ୍ର ମାଧ୍ୟମରେ ବନ୍ୟଜନ୍ତୁ ସଂରକ୍ଷଣ ବିଷୟକ ପ୍ରବନ୍ଧମାଳା, ପ୍ରଚାର ପତ୍ର ଇତ୍ୟାଦି ପ୍ରଚାର ଓ ପ୍ରକାଶ କରାଯାଉଛି ।



ଉତ୍ସବ ପ୍ରସଙ୍ଗ

ମନୁଷ୍ୟ ଆରାମରେ ଚଳିବାପାଇଁ ଶିକାର କରି, ଜଙ୍ଗଲ ନଷ୍ଟ କରି ପ୍ରାକୃତିକ ସୃଷ୍ଟିକୁ ବ୍ୟାଘାତ କରୁଛି । ସେ ଜାଣିପାରୁନାହିଁ ଯେ ପ୍ରାକୃତିକ ପରିବେଶରୁ ସୃଷ୍ଟି ଓ ତା'ର ଏକ ମୁଖ୍ୟ ଅଂଶ । ବିରାଟ ପରିପାର୍ଶ୍ୱର ଏକମାତ୍ର କ୍ଷୁଦ୍ର ଜୀବ । ଅହେତୁକ ଶିକାର ଯୋଗୁ ହିଁ ପାରିପାର୍ଶ୍ୱିକ ପରିସ୍ଥିତି ସହିତ ମିଳିମିଶି ନ ପାରି ବଂଶଲୋପ ଅବସ୍ଥାରେ ପହଁଚିଛନ୍ତି । ଅନେକ ପ୍ରାଣୀ ତ ଗଲେଣି—ଆଉ ନାହାନ୍ତି । ତେବେ ଯେତିକି ଅଛନ୍ତି ତାଙ୍କପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରାଇ ସେମାନଙ୍କୁ ରକ୍ଷା କରିବା ଏକାନ୍ତ ଶ୍ରେୟସ୍କର । ପରିବେଶ ନଷ୍ଟ କରିବା ସହଜ, ତିଆରି କରିବା କଷ୍ଟ । ତେଣୁ ପରିବେଶକୁ କ୍ଷୟ ନକରି ଆହୁରି ଉନ୍ନତତର କରିପାରିଲେ ଜଙ୍ଗଲ ସଂପଦ ରକ୍ଷା ହେବା ସଙ୍ଗେ ସଙ୍ଗେ ଜଙ୍ଗଲମଧ୍ୟସ୍ଥ ଜୀବଜନ୍ତୁମାନଙ୍କର ସୁରକ୍ଷା ହେବ ତଥା ଅଭିବୃଦ୍ଧି ଘଟିବ । ତେଣୁ ଜନସାଧାରଣ ସମସ୍ତେ ସତତ ସତର୍କ ଓ ଆଗଭର ହୋଇ ନିଜର ଚତୁଃପାର୍ଶ୍ୱକୁ ଉଜ୍ଜ୍ୱଳମୟ କରିବା ଉଚିତ । ତା ଦ୍ୱାରା ନିଜର ଉପକାର, ଦେଶର ଉପକାର ତଥା ସମଗ୍ର ବିଶ୍ୱର ମଧ୍ୟ ଉପକାର ।

---

ସ୍ନାତକୋତ୍ତର ପ୍ରାଣୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର, ଭୁବନେଶ୍ୱର-୪





# ଓଡ଼ିଶାରେ ସୋୟାବିନ୍

ଡକ୍ଟର ରମେଶ ଚନ୍ଦ୍ର ଦାଶ

ବିଂଶ ସୂତ୍ରୀ କାର୍ଯ୍ୟକ୍ରମରେ କୃଷିର ଉନ୍ନତି କଳ୍ପନା କରି ସୋୟାବିନ୍ ଫସଲକୁ ଅନ୍ୟାନ୍ୟ କୃଷିଜାତ ଫସଲ ମଧ୍ୟରେ ପ୍ରାଧାନ୍ୟ ଦିଆଯାଉଛି । କାରଣ ଆମ ଦେଶରେ ଖାଇବା ତେଲର ଅଭାବ ରହିଛି । ବର୍ତ୍ତମାନ ଦେଖାଯାଉଛି ଦେଶରେ ତେଲ ଓ ଘିଅର ଚାହିଦା ବଢ଼ୁଥିବା ହେତୁ କେତେକ ଶିଳ୍ପପତି ତଥା ବ୍ୟବସାୟୀ ଉତ୍ପାଦନ ହେଉଥିବା ତେଲ ଓ ଘିଅରେ ନାନା ପ୍ରକାରର ଭେଜାଲ୍ ତଥା ସ୍ୱାସ୍ଥ୍ୟ କ୍ଷତିକାରକ ପଦାର୍ଥମାନ ଏଥିରେ ମିଶାଇ ବଜାରକୁ ଛାଡୁଛନ୍ତି ଓ ଫଳରେ ନାନା ପ୍ରକାରର ନୂଆ ନୂଆ ରୋଗଦେଖାଦେଇ ଦେଶର ସ୍ୱାସ୍ଥ୍ୟରେ ଘୋର କ୍ଷତି ଘଟାଉଛି । ଏକଥା ସମସ୍ତେ ଊଣା ଅଧିକେ ଜାଣନ୍ତି । ତେଣୁ ଦେଶର ଏହି ଅଭାବକୁ ଠିକ୍ ଭାବେ ଦୂର କରିବାକୁ ହେଲେ ଅଧିକ ତୈଳବୀଜର ସଂଗ୍ରହ ନିତାନ୍ତ ଆବଶ୍ୟକ । ଏହା ଅନ୍ୟାନ୍ୟ ଦେଶରୁ କେତେ ପରିମାଣରେ ଆମଦାନୀ କରାଯାଉଛି କିନ୍ତୁ ଏପରି ବ୍ୟବସ୍ଥା ନିରାପଦ ନୁହେଁ । ସେଥିହେତୁ ଅଧିକା କୃଷି ଜାତୀୟ କଞ୍ଚାମାଲ ଅମଳ କରିବା ଉତ୍କୃଷ୍ଟ ଉପାୟ । କୃଷିର ଉନ୍ନତି, ଜମି, ଜଳବାୟୁ ଠିକ୍ ଭାବେ ଯୋଗାଣ, ବଣ୍ଟନ ତଥା ବିକ୍ରୀ ବଟା ଉପରେ ନିର୍ଭର କରେ । ବିଶେଷତଃ ଆମ ଭାରତୀୟ ଚାଷୀ କଠିନ ପରିଶ୍ରମ କରି ଫସଲ ଅମଳ କରି ଶସ୍ତାରେ ବେପାରିକୁ ବିକ୍ରୀ କରୁଥିବା ଦୃଷ୍ଟିରୁ ସେ ଦେଉଥିବା ପରିଶ୍ରମ, ଓ ଖର୍ଚ୍ଚ-ବହୁଳ ଖତ, ସାର, କୀଟ ଓ ରୋଗନାଶକ ଔଷଧ ଆଦି ନାନା ଖର୍ଚ୍ଚ ତୁଳନାରେ ଲାଭ ପାଇ ନଥାଏ । ତେଣୁ ଏପରି ଅବସ୍ଥାରେ କୃଷି ଉତ୍ପାଦନ ବୃଦ୍ଧି କରିବାକୁ ଯେତେ କହିଲେ ମଧ୍ୟ ପ୍ରକୃତରେ ତାହା ହେବା ସହଜ ନୁହେଁ । ଅନ୍ୟାନ୍ୟ ଫସଲ ପରି ସୋୟାବିନ୍ ଚାଷ ମଧ୍ୟ ସମଦଶା ବୋଲି କହିଲେ ଭୁଲ ହେବ ନାହିଁ । ତେଣୁ ଏଥି ପ୍ରତି ଦୃଷ୍ଟି ଦେବା ଆବଶ୍ୟକ ମନେ ହୁଏ ।

ସୋୟାବିନ୍ ଆମଦେଶରେ ବିଶେଷତଃ ଉତ୍ତର ଭାରତର କେତେକ ପାହାଡ଼ିଆ ଅଞ୍ଚଳରେ କିଛି ପରିମାଣରେ ଚାଷ ହେଉଥିବା ଦେଖିବାକୁ ମିଳେ । ଚୀନ ଦେଶରେ ୫ ହଜାର ବର୍ଷ ପୂର୍ବେ ଏହି ଉଦ୍ଭିଦର ବିଭିନ୍ନ ଅଂଶ ୩୦୦ ରୁ ଊର୍ଦ୍ଧ୍ୱ ପ୍ରକାରର ଔଷଧ ପ୍ରସ୍ତୁତ କରି ବା ସିଧା ବ୍ୟବହାର କରି ରୋଗ ଉପସମ ଲାଗି ବ୍ୟବହୃତ ହେଉଥିବା ଜଣାଯାଏ । ପ୍ରାୟ ଖ୍ରୀଷ୍ଟ ପୂର୍ବ ୩ହଜାର ପୂର୍ବେ ଚୀନ ଦେଶରେ କୃଷି ଅର୍ଥନୀତିରେ ସୋୟାବିନ୍ ଚାଷର ମହତ୍ୱ ଦର୍ଶାଯାଇଥିବା ଜଣାପଡ଼େ । ତେଣୁ ସେମାନେ ଏହି ଉଦ୍ଭିଦକୁ "ଆଶ୍ଚର୍ଯ୍ୟ ଉଦ୍ଭିଦ" (Miracle Plant) ବୋଲି କହିଥାନ୍ତି । ଯୁକ୍ତରାଷ୍ଟ୍ର ଆମେରିକାରେ ୧୯୫୦ ସାଲରୁ ଏହି ଫସଲ ପ୍ରତି ଦୃଷ୍ଟି ଦିଆଯାଇ ଏହାର ବହୁବିଧ ଉନ୍ନତି ଓ ବ୍ୟବହାର କରାଯାଉଥିବା ଜଣାଯାଏ । ଭାରତରେ ୧୯୮୦ ସାଲରୁ ଅଧିକ ତୈଳ ଉତ୍ପାଦନ କରିବା ଉଦ୍ଦେଶ୍ୟରେ ଏହାର ଚାଷ କାର୍ଯ୍ୟ ଲାଗି ଦୃଷ୍ଟି ଦିଆଯାଇଥିଲା ।

ଏହା ସମସ୍ତେ ଜାଣନ୍ତି ଯେ ଆମ ଦେଶରେ ସାଧାରଣତଃ ଖାଇବା ତେଲ ସୋରିଷ, ରାଶି, ଚିନାବାଦାମ, ଲିନ୍‌ସିଡ, ନଡ଼ିଆ ଓ ପାହାଡ଼ିଆ ଅଞ୍ଚଳଗୁଡ଼ିକରେ ଅନ୍ୟାନ୍ୟ ତୈଳଜାତୀୟ ଫସଲରୁ ତୈଳ ବ୍ୟବହାର କରାଯାଉଛି । ଏଇ କେତେ ବର୍ଷରୁ (Oil Palm) ତୈଳ ବାହାର କରି ବ୍ୟବହାର କରିବା ବିଷୟକୁ ନିଆଯାଇଛି ଓ ଏ ପ୍ରକାର ଉଦ୍ଭିଦର ଚାଷ କିଛି ପରିମାଣରେ ପରୀକ୍ଷାମୂଳକ ଭାବେ ହାତକୁ ନିଆଯାଇଥିବା ଜଣାଯାଏ । କିନ୍ତୁ ସୋୟାବିନ୍ ଚାଷକୁ ବର୍ତ୍ତମାନ ବହୁଳ ଭାବେ ହାତକୁ ନେବାର ଉଦ୍ଦେଶ୍ୟ ହେଉଛି ଯେ ଏହି ଫସଲରୁ କେବଳ ଯେ ତୈଳ ଆମଦାନୀ ହେଉଛି ତାହା ନୁହେଁ କିନ୍ତୁ ଏହି ଫସଲରୁ ପ୍ରୋଟିନ୍ ମଧ୍ୟ ଆମରି ବ୍ୟବହାର ଲାଗି ମିଳିଥାଏ । ସୋୟାବିନ୍ ବୀଜରେ ଶତକଡା ୧୭ ରୁ ୨୨ ଭାଗ ତୈଳ ଅଂଶ ମିଳିବା ସଙ୍ଗେ ସଙ୍ଗେ ୩୮ ରୁ ୪୨ ଭାଗ ପ୍ରୋଟିନ୍ ମଧ୍ୟ ମିଳିଥାଏ । ଏଥିରେ "ମିଥୋନାଇନ୍" ଓ "ସିଷ୍ଟିନ୍" ଏମିନୋ ଏସିଡ୍‌କୁ ବାଦ ଦେଲେ ଅନ୍ୟାନ୍ୟ ସ୍ୱାସ୍ଥ୍ୟ ଉପକାରୀ ଏମିନୋ ଏସିଡ୍ ଭରପୁର ହୋଇ ରହିଥିବା ଜଣାଯାଏ ।

ସୋୟାବିନ୍ ଫସଲର ବ୍ୟବହାର ଦୃଷ୍ଟିରୁ ଏହା ତିନିଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

୧ । କୃଷିରେ ବ୍ୟବହାର,

୨ । ଔଷଧରେ ବ୍ୟବହାର ଓ

୩ । ଶିଳ୍ପରେ ବ୍ୟବହାର ।

## ୧ । କୃଷିରେ ବ୍ୟବହାର

### (କ) ପ୍ରୋଟିନ୍ ଓ ତେଲ ଉତ୍ପାଦନ

କଳା ବିହନ ଜାତୀୟ ସୋୟାବିନ୍ ପ୍ରଥମେ ପ୍ରଥମେ ଚାଷ କରା ଯାଉଥିଲା । ଏହି କିସମର ସୋୟାବିନ୍ ବହୁ ଅଧିକ ସମୟ ଫସଲ ଅମଳ କରିବା ଲାଗି ନେଉଥିଲା । ଗଛ ଗୁଡ଼ିକ ଛୋଟ ଛୋଟ ହୋଇ ବଢ଼ିବା ଦ୍ୱାରା ଅଧିକ ଅମଳ ହେବାର ସହାୟକ ହେଉ ନ ଥିଲା । ପୁଣି ଛୁଇଁଗୁଡ଼ିକ ଅମଳ ଅବସ୍ଥାରେ ପହଞ୍ଚିବା ପୂର୍ବରୁ ମଞ୍ଜିଗୁଡ଼ିକ ଝଡ଼ି ପଡ଼ି ନଷ୍ଟ ହୋଇ ଯାଉଥିଲା । ତେଣୁ ଫସଲର ସାଧାରଣ ଅମଳ ପାଇବାରେ ବାଧା ହେଉଥିଲା; କିନ୍ତୁ ଆଧୁନିକ ଗବେଷଣା ଫଳରେ ହଳଦିଆ ରଙ୍ଗ ଜାତୀୟ ବିହନ ଆବିଷ୍କାର ହେବା ଫଳରେ ପୂର୍ବ ଲିଖିତ ଅସୁବିଧା ଦୂର ହୋଇ ଅଧିକ ଅମଳରେ ସହାୟକ ହୋଇ ପାରିଲା । ନାନା କିସମ ସୋୟାବିନ ବିହନ (ହଳଦିଆ ରଙ୍ଗର) ମଧ୍ୟରୁ ଖରିଫ୍ ଋତୁ (ଜୁଲାଇ–ଅକ୍ଟୋବର) ଲାଗି ଉନ୍ନତ ପେଲିକନ୍ କ୍ଲାର୍କ–୬୩ ପଞ୍ଜାବ–୧, ବ୍ରାଗ ଇତ୍ୟାଦି ଚାଷ କରାଯାଏ । ରବି ଋତୁ ଲାଗି (ଅକ୍ଟୋବର–ମାର୍ଚ୍ଚ) ଲାଗି ଉନ୍ନତ ପେଲିକନ୍, ପଞ୍ଜାବ–୧ ବ୍ୟବହାର କରାଯାଏ । ଏହା ଛଡ଼ା ଫେବୃଆରୀରୁ ଜୁନ୍ ମାସରେ ଜଳସେଚନ ସୁବିଧା ଥିବା ଜମିରେ ଏଗୁଡ଼ିକ ଚାଷ କରାଯାଇ ପାରେ । ଏହି ପ୍ରକାରର ବହୁଳ ଚାଷ ପ୍ରୋଟିନ ଓ ତେଲ ଅମଳ ଲାଗି ଚାଷ କରାଯାଏ ।

### (ଖ) ପନିପରିବା ଅମଳ

ଛୁଇଁ ଜାତୀୟ ପନି ପରିବା ମଧ୍ୟରେ ସୋୟାବିନ୍ ଅନ୍ୟତମ । ମଟର ଛୁଇଁ, ଶିମ, ଝଟା, କାଉପି, ଝୁଡୁଙ୍ଗ ପରି କେତେକ କିସମର ସୋୟାବିନ୍ କୋମଳ ଛୁଇଁ ଯୋଗାଇ ଥାନ୍ତି । ସେମାନଙ୍କ ମଧ୍ୟରୁ କିସମାଗନା, ବନ ସାଏ, ଡ଼େସୋନି ଇତ୍ୟାଦି ଅନ୍ୟତମ । ଛୁଇଁ ବ୍ୟତୀତ ଶୁଖିଲା ମଞ୍ଜି ମଧ୍ୟ ତରକାରୀରେ ବ୍ୟବହାର କରାଯାଏ ।

### (ଗ) ଗୋ ଖାଦ୍ୟ

ସୋୟାବିନ୍ ସବୁଜପତ୍ର, ଶୁଖିଲା ଡ଼ାଳପତ୍ର, ସବୁଜପତ୍ର ଆସ୍ତର (HaY), ସୋୟାବନ୍ ପିଡ଼ିଆ (Meal) ଗୋ ମହିଷାଦି ପଶୁ କୁକୁଡ଼ା ଆଦି ପକ୍ଷୀମାନଙ୍କ ଖାଦ୍ୟ ରୂପେ ବ୍ୟବହୃତ ହୁଏ । ଏଥିଲାଗି କେତେ ଗୁଡ଼ିଏ କିସମର ସୋୟାବିନ୍ ଉପଯୁକ୍ତ । ସେ ଗୁଡ଼ିକ ମଧ୍ୟରୁ ଓ୍ୱିସ୍କାନସିନ୍‌ବ୍ଲେକ୍, ଉଇଲସନ୍, ପେକିଙ୍ଗ୍, କିଙ୍ଗଓ୍ୱା, ଇକୋନି, ଭର୍ଜିନିଆ ଇତ୍ୟାଦି ଉପଯୁକ୍ତ ।

### (ଘ) ମଣିଷ ଖାଦ୍ୟ

ସୋୟାବିନ୍ ମଞ୍ଜି ତରକାରୀ ରୂପେ ବ୍ୟବହାର କରିବା ଛଡ଼ା ଅନ୍ୟ ପ୍ରକାର ଖାଦ୍ୟ ସାମଗ୍ରୀ ରୂପେ ବ୍ୟବହାର କରାଯାଏ । ଗହମ, ମଇଦା ବା ଗୁଣ୍ଡଳ ଅଟାରେ ସୋୟାବିନ୍ ଅଟା ମିଶ୍ରିତ କରି ବ୍ୟବହାର କରାଯାଏ । ଏହା ଦ୍ୱାରା ଅଟାରେ ଶ୍ୱେତସାର ପାଇବା ସଙ୍ଗେ ସଙ୍ଗେ ପ୍ରୋଟିନ୍ ମଧ୍ୟ ମିଶ୍ରିତ ଅଟାରୁ ମିଳିଥାଏ । ସୋୟାବିନ୍ ଦୁଧ, ସୋୟାବିନ୍ ଭେଜିଟେବୁଲ ମଟନ୍ (ନୁଗାଲୁ), ଶିଶୁଖାଦ୍ୟ, କେକ୍, ସାଇଲ୍ ଇତ୍ୟାଦି ସୋୟାବିନରୁ ହିଁ ପ୍ରସ୍ତୁତ କରାଯାଉଛି ।

## ୨ । ଔଷଧ ଲାଗି ବ୍ୟବହାର

ସୋୟାବିନ୍ ଉଦଭିଦର ତିନିଶହ ପ୍ରକାରର ରୋଗ ଉପଶମ ଶକ୍ତି ରହିଥିବା ଚୀନ୍ ଦେଶରୁ ଜଣା ପଡ଼େ । ଆମ ଦେଶରେ କେତେ ଗୁଡ଼ିଏ ରୋଗର ଉପଶମ ଲାଗି ଏହା ବ୍ୟବହୃତ ହୋଇଥାଏ । କେତେକ ପ୍ରକାରର ଔଷଧ ତିଆରିରେ ଏହା ବ୍ୟବହାର କରାଯାଉଛି । ସାଧାରଣତଃ ରକ୍ତଚାପ, ବହୁମୂତ୍ର ଆଦି କେତେକ ମାରାତ୍ମକ ରୋଗ ଉପଶମ ଲାଗି ସୋୟାବିନ୍ ବ୍ୟବହାର କରାଯାଏ ।

## ୩ । ଶିଳ୍ପରେ ବ୍ୟବହାର

(କ) ବିଶୋଧିତ ସୋୟାବିନ୍ ତେଲ (Refined Soyvean oil)

ଏହି ପ୍ରକାରର ତେଲରୁ ନାନା ରକମର ଶିଳ୍ପ ଜାତ ପଦାର୍ଥ ତିଆରି କରାଯାଏ ଯଥା:–ଓ୍ୱାଟର ପ୍ରୁଫ୍ ସିମେଣ୍ଟ, ଓ୍ୱାଲ ବୋର୍ଡ, ଭାର୍ନିସ୍, ସାବୁନ୍, ସେତ୍‌କପଡ଼ା, ରେସିନ୍, ପୁଟି, ପ୍ରିଣ୍ଟିଂ ଇଙ୍କ୍, ପେଇଣ୍ଟ, ଅଏଲ କପଡା, ଗ୍ରିଜ୍, ଲୁବ୍ରିକେଟିଂ ତେଲ, ଲିନୋଲିଏମ୍, ପୋକମରା ଔଷଧ, ଲାଇଟିଂ ଅଏଲ, ଏନ୍‌ମଇସ୍ ଇତ୍ୟାଦି ତିଆରି କରଯାଇଥାଏ ।

(ଖ) ଖାଦ୍ୟୋପଯୋଗୀ ବିଶୁଦ୍ଧ ତେଲ (Edible refined oil)

ଏହି ପ୍ରକାରର ପଦାର୍ଥରୁ ରନ୍ଧନ ତେଲ, ଷ୍ଟିରାଲ, ହରମୋନ, ଓଲିଓ ମାର୍ଗାରିନ୍, ମାୟୋନେଜ୍, ଫର୍ମାସ୍ୟୁଟିକାଲ ପ୍ରୋଡ଼ାକଟସ୍, ସାଲଡ୍ ଡ୍ରେସିଂ, ସେଣ୍ଡଓ୍ୱିଚ୍ ସ୍ପ୍ରେଡ଼ର, ଭେଜିଟେବୁଲ ସର୍ଟିଙ୍ଗ୍, ଭେଜିଟେବୁଲ ଅଏଲ, ଲାର୍ଡ କଂପାଉଣ୍ଡ ଇତ୍ୟାଦି ତିଆରି ହୁଏ ।

(ଗ) ସୋୟାବିନ୍ ଲିସିଥିନ୍ (Licithin)

ଖାଦ୍ୟୋପଯୋଗୀ ଲିସିଥିନ୍ ପଶୁଖାଦ୍ୟ, ବେକରି ପ୍ରଡ଼କ୍ଟସ୍, କେଣ୍ଡି, କନ୍‌ଫିକ୍‌ସନ୍, ଆଇସ୍‌କ୍ରିମ୍, ଚକ୍‌ଲେଟ୍ କୋଟିଂ ଇତ୍ୟାଦି ଲାଗି ବ୍ୟବହାର କରାଯାଏ ।

ସେହିପରି ଟେକ୍‌ନିକାଲ ଲିସିଥିନ୍‌ର ବ୍ୟବହାରରେ ଏଣ୍ଟି ଫୋମିଙ୍ଗ୍ ଏଜେଣ୍ଟ, କୀଟନାଶକ ଔଷଧ, ଟେକ୍‌ଷ୍ଟାଇଲ, ରବର, ପଟରୀ ଆଦି ନାନା କାର୍ଯ୍ୟରେ ଦରକାର ହୋଇଥାଏ ।

ମେଡ଼ିସେନାଲ୍ ଲିସିଥିନ୍ କସ୍‌ମେଟିକ୍‌ସ, ଫର୍ମାସ୍ୟୁଟିକାଲ ଇତ୍ୟାଦି ଇଣ୍ଡଷ୍ଟ୍ରିରେ ଦରକାର ହୋଇଥାଏ ।

(ଘ) ଗ୍ଲାଇସିନ୍ –ଏହା ଔଷଧ ପ୍ରସ୍ତୁତି ଓ ଏକ୍‌ସପୋଜିଭରେ ବ୍ୟବହୃତ ହୋଇଥାଏ ଯାହାକି ସୋୟାବିନ୍‌ରୁ ପ୍ରସ୍ତୁତ କରାଯାଇଥାଏ ।

(ଙ) କ୍ରୁଡ୍ ସୋୟାବିନ୍ ଫେଟି ଏସିଡ୍ (Crude fatty acid) ଏହା ଚାରି ପ୍ରକାରର ହୋଇଥାଏ ଓ ପ୍ରତ୍ୟେକ ବିଭିନ୍ନ ପ୍ରକାରର ଶିଳ୍ପରେ ବ୍ୟବହାର କରାଯାଏ ।

# ଓଡ଼ିଶାରେ ସୋୟାବିନ୍

ଡକ୍ଟର ରମେଶ ଚନ୍ଦ୍ର ଦାଶ

ବିଂଶ ସୂତ୍ରୀ କାର୍ଯ୍ୟକ୍ରମରେ କୃଷିର ଉନ୍ନତି କଳ୍ପନା କରି ସୋୟାବିନ୍ ଫସଲକୁ ଅନ୍ୟାନ୍ୟ କୃଷିଜାତ ଫସଲ ମଧ୍ୟରେ ପ୍ରାଧାନ୍ୟ ଦିଆଯାଇଛି । କାରଣ ଆମ ଦେଶରେ ଖାଇବା ତେଲର ଅଭାବ ରହିଛି । ବର୍ତ୍ତମାନ ଦେଖାଯାଉଛି ଦେଶରେ ତେଲ ଓ ଘିଅର ଚାହିଦା ବଢୁଥିବା ହେତୁ କେତେକ ଶିଳ୍ପପତି ତଥା ବ୍ୟବସାୟୀ ଉତ୍ପାଦନ ହେଉଥିବା ତେଲ ଓ ଘିଅରେ ନାନା ପ୍ରକାରର କେମିକାଲ୍ ତଥା ସ୍ୱାସ୍ଥ୍ୟ କ୍ଷତିକାରକ ପଦାର୍ଥମାନ ଏଥିରେ ମିଶାଇ ବଜାରକୁ ଛାଡୁଛନ୍ତି ଓ ଫଳରେ ନାନା ପ୍ରକାରର ନୂଆ ନୂଆ ରୋଗଦେଖାଦେଇ ଦେଶର ସ୍ୱାସ୍ଥ୍ୟରେ ଘୋର କ୍ଷତି ଘଟାଉଛି । ଏକଥା ସମସ୍ତେ ଭଲ ଭାବେ ଜାଣନ୍ତି । ତେଣୁ ଦେଶର ଏହି ଅଭାବକୁ ଠିକ୍ ଭାବେ ଦୂର କରିବାକୁ ହେଲେ ଅଧିକ ତୈଳବୀଜର ସଂଗ୍ରହ ନିତାନ୍ତ ଆବଶ୍ୟକ । ଏହା ଅନ୍ୟାନ୍ୟ ଦେଶରୁ କେତେ ପରିମାଣରେ ଆମଦାନୀ କରାଯାଉଛି କିନ୍ତୁ ଏପରି ବ୍ୟବସ୍ଥା ନିରାପଦ ନୁହେଁ । ସେଥିହେତୁ ଅଧିକା କୃଷି ଜାତୀୟ କଞ୍ଚାମାଲ ଅମଳ କରିବା ଉତ୍କୃଷ୍ଟ ଉପାୟ । କୃଷିର ଉନ୍ନତି, ଜମି, ଜଳବାୟୁ ଠିକ୍ ଭାବେ ଯୋଗାଣ, ବଣ୍ଟନ ତଥା ବିକ୍ରୀ ବଟା ଉପରେ ନିର୍ଭର କରେ । ବିଶେଷତଃ ଆମ ଭାରତୀୟ ଚାଷୀ କଠିନ ପରିଶ୍ରମ କରି ଫସଲ ଅମଳ କରି ଶସ୍ତାରେ ବେପାରିକୁ ବିକ୍ରୀ କରୁଥିବା ଦୃଷ୍ଟିରୁ ସେ ଦେଉଥିବା ପରିଶ୍ରମ, ଓ ଖର୍ଚ୍ଚ- ବହୁଳ ଖତ, ସାର, କୀଟ ଓ ରୋଗନାଶକ ଔଷଧ ଆଦି ନାନା ଖର୍ଚ୍ଚ ତୁଳନାରେ ଲଭ ପାଇ ନଥାଏ । ତେଣୁ ଏପରି ଅବସ୍ଥାରେ କୃଷି ଉତ୍ପାଦନ ବୃଦ୍ଧି କରିବାକୁ ଯେତେ କହିଲେ ମଧ୍ୟ ପ୍ରକୃତରେ ତାହା ହେବା ସହଜ ନୁହେଁ । ଅନ୍ୟାନ୍ୟ ଫସଲ ପରି ସୋୟାବିନ୍ ଚାଷ ମଧ୍ୟ ସମଦଶା ବୋଲି କହିଲେ ଭୁଲ ହେବ ନାହିଁ । ତେଣୁ ଏଥି ପ୍ରତି ଦୃଷ୍ଟି ଦେବା ଆବଶ୍ୟକ ମନେ ହୁଏ ।

ସୋୟାବିନ୍ ଆମଦେଶରେ ବିଶେଷତଃ ଉତ୍ତର ଭାରତର କେତେକ ପାହାଡ଼ିଆ ଅଞ୍ଚଳରେ କିଛି ପରିମାଣରେ ଚାଷ ହେଉଥିବା ଦେଖିବାକୁ ମିଳେ । ଚୀନ ଦେଶରେ ୫ ହଜାର ବର୍ଷ ପୂର୍ବେ ଏହି ଉଦ୍ଭିଦର ବିଭିନ୍ନ ଅଂଶ ୩୦୦ ରୁ ଊର୍ଦ୍ଧ୍ୱ ପ୍ରକାରର ଔଷଧ ପ୍ରସ୍ତୁତ କରି ବା ସିଧା ବ୍ୟବହାର କରି ରୋଗ ଉପସମ ଲାଗି ବ୍ୟବହୃତ ହେଉଥିବା ଜଣାଯାଏ । ପ୍ରାୟ ଖ୍ରୀଷ୍ଟ ପୂର୍ବ ୩ହଜାର ପୂର୍ବେ ଚୀନ ଦେଶରେ କୃଷି ଅର୍ଥ- ନୀତିରେ ସୋୟାବିନ୍ ଚାଷର ମହତ୍ୱ ଦର୍ଶାଯାଇଥିବା ଜଣାପଡ଼େ । ତେଣୁ ସେମାନେ ଏହି ଉଦ୍ଭିଦକୁ "ଆଶ୍ଚର୍ଯ୍ୟ ଉଦ୍ଭିଦ" (Miracle Plant) ବୋଲି କହିଥାନ୍ତି । ଯୁକ୍ତରାଷ୍ଟ୍ର ଆମେରିକାରେ ୧୯୫୦ ସାଲରୁ ଏହି ଫସଲ ପ୍ରତି ଦୃଷ୍ଟି ଦିଆଯାଇ ଏହାର ବହୁବିଧ ଉନ୍ନତି ଓ ବ୍ୟବହାର କରାଯାଉଥିବା ଜଣାଯାଏ । ଭାରତରେ ୧୯୮୦ ସାଲରୁ ଅଧିକ ତୈଳ ଉତ୍ପାଦନ କରିବା ଉଦ୍ଦେଶ୍ୟରେ ଏହାର ଚାଷ କାର୍ଯ୍ୟ ଲାଗି ଦୃଷ୍ଟି ଦିଆଯାଇଥିଲା ।

ଏହା ସମସ୍ତେ ଜାଣନ୍ତି ଯେ ଆମ ଦେଶରେ ସାଧାରଣତଃ ଖାଇବା ତେଲ ସୋରିଷ, ରାଶି, ଚିନାବାଦାମ, ଲିନ୍‌ସିଡ, ନଡ଼ିଆ ଓ ପାହାଡ଼ିଆ ଅଞ୍ଚଳଗୁଡ଼ିକରେ ଅନ୍ୟାନ୍ୟ ତୈଳଜାତୀୟ ଫସଲରୁ ତେଲ ବ୍ୟବହାର କରାଯାଉଛି । ଏଇ କେତେ ବର୍ଷରୁ (Oil Palm) ତୈଳ ବାହାର କରି ବ୍ୟବହାର କରିବା ବିଷୟକୁ ନିଆଯାଇଛି ଓ ଏ ପ୍ରକାର ଉଦ୍ଭିଦର ଚାଷ କିଛି ପରିମାଣରେ ପରୀକ୍ଷାମୂଳକ ଭାବେ ହାତକୁ ନିଆଯାଇଥିବା ଜଣାଯାଏ । କିନ୍ତୁ ସୋୟାବିନ୍ ଚାଷକୁ ବର୍ତ୍ତମାନ ବହୁଳ ଭାବେ ହାତକୁ ନେବାର ଉଦ୍ଦେଶ୍ୟ ହେଉଛି ଯେ ଏହି ଫସଲରୁ କେବଳ ଯେ ତୈଳ ଆମଦାନୀ ହେଉଛି ତାହା ନୁହେଁ କିନ୍ତୁ ଏହି ଫସଲରୁ ପ୍ରୋଟିନ୍ ମଧ୍ୟ ଆମରି ବ୍ୟବହାର ଲାଗି ମିଳିଥାଏ । ସୋୟାବିନ୍ ବୀଜରେ ଶତକଡା ୧୭ ରୁ ୨୨ ଭାଗ ତୈଳ ଅଂଶ ମିଳିବା ସଙ୍ଗେ ସଙ୍ଗେ ୩୮ ରୁ ୪୨ ଭାଗ ପ୍ରୋଟିନ୍ ମଧ୍ୟ ମିଳିଥାଏ । ଏଥିରେ "ମିଥୋନାଇନ୍" ଓ "ସିଷ୍ଟିନ୍" ଏମିନୋ ଏସିଡ୍‌କୁ ବାଦ ଦେଲେ ଅନ୍ୟାନ୍ୟ ସ୍ୱାସ୍ଥ୍ୟ ଉପକାରୀ ଏମିନୋ ଏସିଡ ଭରପୁର ହୋଇ ରହିଥିବା ଜଣାଯାଏ ।

ସୋୟାବିନ୍ ଫସଲର ବ୍ୟବହାର ଦୃଷ୍ଟିରୁ ଏହା ତିନିଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

୧ । କୃଷିରେ ବ୍ୟବହାର,

୨ । ଔଷଧରେ ବ୍ୟବହାର ଓ

୩ । ଶିଳ୍ପରେ ବ୍ୟବହାର ।

## ୧ । କୃଷିରେ ବ୍ୟବହାର

### (କ) ପ୍ରୋଟିନ୍ ଓ ତୈଳ ଉତ୍ପାଦନ

କଳା ବିହନ ଜାତୀୟ ସୋୟାବିନ୍ ପ୍ରଥମେ ପ୍ରଥମେ ଚାଷ କରା ଯାଉଥିଲା । ଏହି କିସମର ସୋୟାବିନ୍ ବହୁ ଅଧିକ ସମୟ ଫସଲ ଅମଳ କରିବା ଲାଗି ନେଉଥିଲା । ଗଛ ଗୁଡ଼ିକ ଛୋଟ ଛୋଟ ହୋଇ ବଢ଼ିବା ଦ୍ୱାରା ଅଧିକ ଅମଳ ହେବାର ସହାୟକ ହେଉ ନ ଥିଲା । ପୁଣି ଛୁଇଁଗୁଡ଼ିକ ଅମଳ ଅବସ୍ଥାରେ ପହଞ୍ଚିବା ପୂର୍ବରୁ ମଞ୍ଜିଗୁଡ଼ିକ ଝଡ଼ି ପଡ଼ି ନଷ୍ଟ ହୋଇ ଯାଉଥିଲା । ତେଣୁ ଫସଲର ସାଧାରଣ ଅମଳ ପାଇବାରେ ବାଧା ହେଉଥିଲା; କିନ୍ତୁ ଆଧୁନିକ ଗବେଷଣା ଫଳରେ ହଳଦିଆ ରଙ୍ଗ ଜାତୀୟ ବିହନ ଆବିଷ୍କାର ହେବା ଫଳରେ ପୂର୍ବ ଲିଖିତ ଅସୁବିଧା ଦୂର ହୋଇ ଅଧିକ ଅମଳରେ ସହାୟକ ହୋଇ ପାରିଲା । ନାନା କିସମ ସୋୟାବିନ ବିହନ (ହଳଦିଆ ରଙ୍ଗର) ମଧ୍ୟରୁ ଖରିଫ୍ ଋତୁ (ଜୁଲାଇ–ଅକ୍ଟୋବର) ଲାଗି ଉନ୍ନତ ପେଲିକନ୍ କ୍ଲାର୍କ–୬୩ ପଞ୍ଜାବ–୧, ବ୍ରାଗ ଇତ୍ୟାଦି ଚାଷ କରାଯାଏ । ରବି ଋତୁ ଲାଗି (ଅକ୍ଟୋବର–ମାର୍ଚ୍ଚ) ଲାଗି ଉନ୍ନତ ପେଲିକନ୍, ପଞ୍ଜାବ–୧ ବ୍ୟବହାର କରାଯାଏ । ଏହା ଛଡ଼ା ଫେବୃଆରୀରୁ ଜୁନ୍ ମାସରେ ଜଳସେଚନ ସୁବିଧା ଥିବା ଜମିରେ ଏଗୁଡ଼ିକ ଚାଷ କରାଯାଇ ପାରେ । ଏହି ପ୍ରକାରର ବହୁଳ ଚାଷ ପ୍ରୋଟିନ ଓ ତୈଳ ଅମଳ ଲାଗି ଚାଷ କରାଯାଏ ।

### (ଖ) ପନିପରିବା ଅମଳ

ଛୁଇଁ ଜାତୀୟ ପନି ପରିବା ମଧ୍ୟରେ ସୋୟାବିନ୍ ଅନ୍ୟତମ । ମଟର ଛୁଇଁ, ଶିମ, ଝୁଟା, କାଉପି, ଝୁଡୁଙ୍ଗ ପରି କେତେକ କିସମର ସୋୟାବିନ୍ କୋମଳ ଛୁଇଁ ଯୋଗାଇ ଥାନ୍ତି । ସେମାନଙ୍କ ମଧ୍ୟରୁ କିସମାଗନା, ବନ ସାଏ, ଢ଼େସୋନି ଇତ୍ୟାଦି ଅନ୍ୟତମ । ଛୁଇଁ ବ୍ୟତୀତ ଶୁଖିଲା ମଞ୍ଜି ମଧ୍ୟ ତରକାରୀରେ ବ୍ୟବହାର କରାଯାଏ ।

### (ଗ) ଗୋ ଖାଦ୍ୟ

ସୋୟାବିନ୍ ସବୁଜପତ୍ର, ଶୁଖିଲା ଡାଳପତ୍ର, ସବୁଜପତ୍ର ଆଗର (HaY), ସୋୟାବିନ୍ ପିଡ଼ିଆ (Meal) ଗୋ ମହିଷାଦି ପଶୁ କୁକୁଡ଼ା ଆଦି ପକ୍ଷୀମାନଙ୍କ ଖାଦ୍ୟ ରୂପେ ବ୍ୟବହୃତ ହୁଏ । ଏଥିଲାଗି କେତେ ଗୁଡ଼ିଏ କିସମର ସୋୟାବିନ୍ ଉପଯୁକ୍ତ । ସେ ଗୁଡ଼ିକ ମଧ୍ୟରୁ ଓ୍ୱିସ୍କାନସିନ୍‌ବ୍ଲେକ୍, ଲାଇଲସନ୍, ପେକିଙ୍ଗ୍, କିଙ୍ଗଓ୍ୱା, ଇକୋନି, ଭର୍ଜିନିଆ ଇତ୍ୟାଦି ଉପଯୁକ୍ତ ।

### (ଘ) ମଣିଷ ଖାଦ୍ୟ

ସୋୟାବିନ୍ ମଞ୍ଜି ତରକାରୀ ରୂପେ ବ୍ୟବହାର କରିବା ଛଡ଼ା ଅନ୍ୟ ପ୍ରକାର ଖାଦ୍ୟ ସାମଗ୍ରୀ ରୂପେ ବ୍ୟବହାର କରାଯାଏ । ଗହମ, ମଇଦା ବା ଚାଉଳ ଅଟାରେ ସୋୟାବିନ୍ ଅଟା ମିଶ୍ରିତ କରି ବ୍ୟବହାର କରାଯାଏ । ଏହା ଦ୍ୱାରା ଅଟାରେ ଶ୍ୱେତସାର ପାଇବା ସଙ୍ଗେ ସଙ୍ଗେ ପ୍ରୋଟିନ୍ ମଧ୍ୟ ମିଶ୍ରିତ ଅଟାରୁ ମିଳିଥାଏ । ସୋୟାବିନ୍ ଦୁଧ, ସୋୟାବିନ୍ ଭେଜିଟେବୁଲ ମଟନ୍ (ନୁଗାଲୁ), ଶିଶୁଖାଦ୍ୟ, କେକ୍, ସାଇଜ୍ ଇତ୍ୟାଦି ସୋୟାବିନରୁ ହିଁ ପ୍ରସ୍ତୁତ କରାଯାଉଛି ।

## ୨ । ଔଷଧ ଲାଗି ବ୍ୟବହାର

ସୋୟାବିନ୍ ଉଦ୍ଭିଦର ତିନିଶହ ପ୍ରକାରର ରୋଗ ଉପଶମ ଶକ୍ତି ରହିଥିବା ଚୀନ୍ ଦେଶରୁ ଜଣା ପଡ଼େ । ଆମ ଦେଶରେ କେତେ ଗୁଡ଼ିଏ ରୋଗର ଉପଶମ ଲାଗି ଏହା ବ୍ୟବହୃତ ହୋଇଥାଏ । କେତେକ ପ୍ରକାରର ଔଷଧ ତିଆରିରେ ଏହା ବ୍ୟବହାର କରାଯାଉଛି । ସାଧାରଣତଃ ରକ୍ତଚାପ, ବହୁମୂତ୍ର ଆଦି କେତେକ ମାରାତ୍ମକ ରୋଗ ଉପଶମ ଲାଗି ସୋୟାବିନ୍ ବ୍ୟବହାର କରାଯାଏ ।

## ୩ । ଶିଳ୍ପରେ ବ୍ୟବହାର

(କ) ବିଶୋଧିତ ସୋୟାବିନ୍ ତୈଳ (Refined Soyvean oil)

ଏହି ପ୍ରକାରର ତୈଳରୁ ନାନା ରକମର ଶିଳ୍ପ ଜାତ ପଦାର୍ଥ ତିଆରି କରାଯାଏ ଯଥା:—ଓ୍ୱାଟର ପ୍ରୁଫ୍ ସିମେଣ୍ଟ, ଓ୍ୱାଲ ବୋର୍ଡ, ଭାର୍ନିସ୍, ସାବୁନ୍, ସେଦ୍‌କପଡ଼ା, ରେସିନ୍, ପୁଟି, ପ୍ରିଣ୍ଟିଂ ଇଙ୍କ୍, ପେଇଣ୍ଟ, ଅଏଲ କପଡା, ଗ୍ରିଜ୍, ଲୁବ୍ରିକେଟିଂ ତେଲ, ଲିନୋଲିଏମ୍, ପୋକମରା ଔଷଧ, ଲାଇଟିଂ ଅଏଲ, ଏନ୍‌ମଲସ୍ ଇତ୍ୟାଦି ତିଆରି କରାଯାଇଥାଏ ।

(ଖ) ଖାଦ୍ୟୋପଯୋଗୀ ବିଶୁଦ୍ଧ ତୈଳ (Edible refined oil)

ଏହି ପ୍ରକାରର ପଦାର୍ଥରୁ ରନ୍ଧନ ତୈଳ, ଷ୍ଟିରାଲ, ହରମୋନ, ଓଲିଓ ମାର୍ଗାରିନ୍, ମାୟୋନେଜ୍, ଫର୍ମାସ୍ୟୁଟିକାଲ ପ୍ରୋଡ଼ାକଟସ୍, ସାଲାଡ୍ ଡ୍ରେସିଂ, ସେଣ୍ଡଓ୍ୱିଚ୍ ସ୍ପ୍ରେଡର, ଭେଜିଟେବୁଲ ସର୍ଟିଙ୍ଗ୍, ଭେଜିଟେବୁଲ ଅଏଲ, ଲର୍ଡ କମ୍ପାଉଣ୍ଡ ଇତ୍ୟାଦି ତିଆରି ହୁଏ ।

(ଗ) ସୋୟାବିନ୍ ଲିସିଥିନ୍ (Licithin)

ଖାଦ୍ୟୋପଯୋଗୀ ଲିସିଥିନ୍ ପଶୁଖାଦ୍ୟ, ବେକରି ପ୍ରଡକ୍ଟସ୍, କେଣ୍ଡି, କନ୍‌ଫିକ୍‌ସନ୍, ଆଇସ୍‌କ୍ରିମ୍, ଚକ୍‌ଲେଟ୍ କୋଟିଂ ଇତ୍ୟାଦି ଲାଗି ବ୍ୟବହାର କରାଯାଏ ।

ସେହିପରି ଟେକ୍‌ନିକାଲ ଲିସିଥିନ୍‌ର ବ୍ୟବହାରରେ ଏଣ୍ଟି ଫେମିଙ୍ଗ୍ ଏଜେଣ୍ଟ, କୀଟନାଶକ ଔଷଧ, ଟେକ୍ସଟାଇଲ, ରବର, ପଟରୀ ଆଦି ନାନା କାର୍ଯ୍ୟରେ ଦରକାର ହୋଇଥାଏ ।

ମେଡ଼ିସେନାଲ୍ ଲିସିଥିନ୍ କସ୍‌ମେଟିକ୍ସ, ଫର୍ମାସ୍ୟୁଟିକାଲ ଇତ୍ୟାଦି ଇଣ୍ଡଷ୍ଟ୍ରିରେ ଦରକାର ହୋଇଥାଏ ।

(ଘ) ଗ୍ଲାଇସିନ୍ —ଏହା ଔଷଧ ପ୍ରସ୍ତୁତି ଓ ଏକ୍ସପୋଜିଭ୍ ରେ ବ୍ୟବହୃତ ହୋଇଥାଏ ଯାହାକି ସୋୟାବିନ୍‌ରୁ ପ୍ରସ୍ତୁତ କରାଯାଇଥାଏ ।

(ଙ) କ୍ରୁଡ୍ ସୋୟାବିନ୍ ଫେଟି ଏସିଡ୍ (Crude fatty acid) ଏହା ସବୁ ପ୍ରକାରର ହୋଇଥାଏ ଓ ପ୍ରତ୍ୟେକ ବିଭିନ୍ନ ପ୍ରକାରର ଶିଳ୍ପରେ ବ୍ୟବହାର କରାଯାଏ ।

*(i)* ଫ୍ରକ୍ସେଣ୍ଡ ଫେଟି ଏସିଡ୍ (Fractioned fatty acid) ମେଟାଲିକ୍ ସାବୁନ୍, ଏଡିସିବ୍ ଟେପ୍, ସେରିଂ କଂପାଉଣ୍ଡ, ଏଡ୍ରିବୁଲ ଇମଲସିଫାଏର, ଇନଏଡ୍ରିବୁଲଇମଲସି ଫାଏର, ସିଟାଇଲ ଆଲକୋହଲ, ଓ୍ୱାଟର ରିପେଲେଣ୍ଟ, ଏମାଇଡ, ଏମିନ୍, ସିନ୍ଥେଟିକ୍ ଡ୍ରାଇଙ୍ଗ୍ ଅଏଲ ଇତ୍ୟାଦି ପ୍ରସ୍ତୁତ କରିବାରେ ସହାୟକ ହୋଇଥାଏ ।

*(ii)* ହୋଲ ଫେଟି ଏସିଡ୍ (Whole fatty acid)—ଏହା ଗ୍ରିସ୍, ମେଟେଲ ଡ୍ରାଇଙ୍ଗ୍ କଂପାଉଣ୍ଡ ଇତ୍ୟାଦି ଲାଗି ଦରକାର ହୋଇଥାଏ ।

*(iii)* ଫ୍ରେକ୍ସିନେଟେଡ୍ ଆନ ସେଚୁରେଟେଡ୍ ଏସିଡ୍—ଏହି ପଦାର୍ଥରୁ ଇମଲ ସିଫାଏର, ଟେକ୍ସଟାଇଲ୍ ଲୁବ୍ରିକେଣ୍ଟ, ଲେଦର ଡ୍ରେସିଂ ଇତ୍ୟାଦି ପ୍ରସ୍ତୁତ ହୋଇଥାଏ ।

*(iv)* ହାଇଡ୍ରୋଜେନେଟେଡ୍ ଫେଟି ଏସିଡ୍—କସ୍ମେଟିକ୍ସ, ଫାର୍ମାକ୍ୟୁଟିକେଲ, କାର୍ବନ ପେପର, ଲେଦେର ସଫ୍ନେର, ଡୁପ୍ଲିକେଟିଂ କାଂପାଉଣ୍ଡ, ଟାଇପ୍ ରାଇଟର ରିବନ୍, ଫ୍ରିକ୍ଟୋ ଫୋନ୍ ରେକର୍ଡ, ରବର କଂପାଉଣ୍ଡ ଇତ୍ୟାଦି ପ୍ରସ୍ତୁତ କରିବା ଲାଗି ଦରକାର ।

ସୋୟାବିନ୍ ପିଡ଼ିଆ (Soyvean meal)

ସୋୟାବିନ୍ ମଞ୍ଜିରୁ ତେଲ ଅଲଗା କରିବା ପରେ ରହି-ଯାଇଥିବା ପିଡ଼ିଆ ବା ମିଲ୍‌ରୁ ନାନା ପ୍ରକାର ଶିଳ୍ପଜାତ ଦ୍ରବ୍ୟ ପ୍ରସ୍ତୁତ କରାଯାଏ । ଏହା ଛଡ଼ା ପଶୁ ଖାଦ୍ୟ, ମଣିଷଖାଦ୍ୟ ଇତ୍ୟାଦି ତିଆର କରାଯାଏ ।

## ପଶୁ ଖାଦ୍ୟ:--

ସୋୟାବିନ୍ ଫ୍ଲେକ୍, ସୋୟାବିନ୍ ପେଲେଟ୍, ମତ୍ସ୍ୟ ଖାଦ୍ୟ, ମହୁମାଛି ଖାଦ୍ୟ, କୁକୁର ଖାଦ୍ୟ, ଗାଈ ଗୋରୁ ଖାଦ୍ୟ, କୁକୁଡ଼ା ଖାଦ୍ୟ, ଭିଟାମିନକେରିଅର, ଘୁସୁରୀ ଖାଦ୍ୟ ଇତ୍ୟାଦି ସୋୟାବିନ୍ ମିଲରୁ ପ୍ରସ୍ତୁତ ହେଉଛି ।

## ମଣିଷ ଖାଦ୍ୟ:--

ସୋୟାବିନ୍ ମିଲରୁ ନାନା ପ୍ରକାରର ମନୁଷ୍ୟୋପଯୋଗୀ ଖାଦ୍ୟ ପଦାର୍ଥ ତିଆର କରାଯାଏ । ସୋୟାଫ୍ଲେକ୍ ସୋୟା-ଅଟା, ସୋୟାଗ୍ରାନ୍ୟୁଲ୍, ସୋୟାଗ୍ରିଟ୍ ସୋୟାମିଟ୍, ଡାଇବେଟିକ୍ ଫୁଡ୍, ଫ୍ରୋଜେନ୍ ଡେଜର୍ଟ, ଆଇସକ୍ରିମ୍, ଏଲିମେଣ୍ଟରି ପେଷ୍ଟ୍ ମେକୋନି, ନଡୁଲସ୍, ସ୍ପେଗେଟି, କନଫିକ୍ସନ୍, କେଣ୍ଡିଇନ୍ ଗ୍ରେଡ଼ିଏଣ୍ଟସ୍, ନଟମିଟ୍, ମିଟ୍‌ରୋଟି, ସାସେଜ୍, ପି-ନଟବଟର ରୋଟି, ସାସେଜ୍, ଫୁଡ୍ ବେଭେରେଜେସ୍, ପେନ୍-କେକ୍, ପୁଡ଼ିଙ୍ଗ୍, ସୁପ୍, ବେକରି ପ୍ରୋଡାକ୍ସ ଇତ୍ୟାଦି ଅନେକ ପ୍ରକାରର ଖାଦ୍ୟ ପ୍ରସ୍ତୁତ କରଯାଇଥାଏ ।

## ଟେସୋୟ୍ରାଡେର ଡେଭ୍ରିଭିଟ୍:--

ବିଟା ପ୍ରୋଟିନ୍, ଆଇଫା ପ୍ରୋଟିନ୍, ବଣ୍ଡିଙ୍ଗ ଏଡ୍ରିଟିଭ୍, ଏମାଇନ୍ ଏସିଡ୍, ପେପର କୋଟିଙ୍ଗ, ଫୁଡ୍ ଫ୍ଲେଭରିଙ୍ଗ, ମେଡ଼ି-ସେନାଲ ପ୍ରିପେରେସନସ୍, ଫାଏର ଇକ୍ସିଣ୍ଡିଗ୍ୟୁସେର, ଟେକ୍ସଟାଇଲ ସାଇଜିଙ୍ଗ ଇତ୍ୟାଦି ଲାଗି ସୋୟାମିଲ୍ ବ୍ୟବହାର କରାଯାଏ ।

## ଇଣ୍ଡଷ୍ଟ୍ରିଆଲ (ଶିଳ୍ପୋପଯୋଗୀ):--

ଇଷ୍ଟ ଓ ମୋଲଡ୍ ଫିଡ୍ ( Yeast & Mold ), ବୋର୍ଡ କୋଟିଙ୍ଗ୍, ଓ୍ୱାଟର ଇମଲ୍‌ସନ୍ ପେଇଣ୍ଟ, ପେଷ୍ଟ ଓ ପାଉଡର ପେଇଣ୍ଟ, ପେପର କୋଟିଙ୍ଗ୍ ଓ ସାଇଜିଙ୍ଗ, ଫେରଟିଲାଇଜର, କରଲୋନେସ୍ ବେକିଙ୍ଗ୍, ଇଣ୍ଡଷ୍ଟ୍ରିଆଲ ସ୍ପ୍ରେ ଇତ୍ୟାଦି ଲାଗି ସୋୟା-ବିନ୍ ମିଲର ଆବଶ୍ୟକତା ରହିଛି ।

ଅନ୍ୟାନ୍ୟ ଦେଶର ଲୋକେ କିପରି ସୋୟାବିନ୍ ଫସଲର ବିଭିନ୍ନ ପ୍ରକାରର ବ୍ୟବହାର କରୁଛନ୍ତି ଉପରୋକ୍ତ ଉଦାହରଣ ଗୁଡ଼ିକରୁ ବେଶ ଜଣାପଡେ । ଓଡ଼ିଶାର ପଡୋଶୀ ରାଜ୍ୟ ମଧ୍ୟପ୍ରଦେଶ ଭାରତରେ ସୋୟାବିନ୍ ଚାଷରେ ଅଗ୍ରଣୀ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଠିକାର ଚାଷୀମାନେ କଳାମାଟି ଥିବା ଅଞ୍ଚଳରେ ଯେଉଁଠି ବର୍ଷା ଭଲ ହୋଇଥାଏ ସେଠି ଖରିଫ ଋତୁରେ ସୋୟାବିନ୍ ଚାଷ ପରେ ଗହମ ରବି ଫସଲ ରୂପେ ଚାଷ କରୁଥିବା ଦେଖାଯାଏ । କୁଆର, ମୁଗ ଫସଲ, ଚିନାବାଦାମ ବଦଳରେ ବର୍ତ୍ତମାନ ସୋୟାବିନ୍ ଚାଷ କରାଯାଉଛି । ଯେଉଁ ଅଞ୍ଚଳରେ ଚିନାବାଦାମ ଅମଳ କରିବା ପୂର୍ବରୁ ବର୍ଷା ହୁଏ ନାହିଁ ସେହି ଅଞ୍ଚଳରେ ସୋୟାବିନ୍ ଚାଷ କରାଯାଉଛି କାରଣ ଚିନାବାଦାମ ଅମଳ ହେବାରେ ବିଶେଷ ଅସୁବିଧା ଓ କ୍ଷତି ହେଉଥିବା ଯୋଗୁଁ ମଧ୍ୟପ୍ରଦେଶରେ ବର୍ତ୍ତମାନ ୫୨ ଲକ୍ଷ ହେକ୍ଟରରେ ସୋୟା-ବିନ୍ ଚାଷ କରାଯାଉଛି । ବର୍ଷାଧାର ଓ ଜଳ ସେଚିତ ଅଞ୍ଚଳରେ ଏହି ଚାଷ କରାଯିବା ଦେଖାଯାଏ । ଆଖୁ, ଜହ୍ନୀ, ମକା ଫସଲରେ ସୋୟାବିନ୍ ମିଶ୍ରିତ ଫସଲ ରୂପେ କେତେକ ଅଞ୍ଚଳରେ ମଧ୍ୟ ଚାଷ କରାଯାଏ । ସୋୟାବିନ୍ ଫସଲ ପରେ ପରେ ସେଫ୍ଲାବାର ସୂର୍ଯ୍ୟମୁଖୀ ଆଦି ଫସଲ ରିଲେକ୍ରପିଙ୍ଗ ଫସଲ ପ୍ରଣାଳୀରେ ଚାଷ କରାଯାଏ । ବର୍ତ୍ତମାନ ଅନେକ ନୂଆ କିସମର ସୋୟାବିନ୍ ଚାଷ କରାଯାଉଥିବା ଦେଖାଯାଉଛି । ସେ ଗୁଡ଼ିକ ଆମ ଦେଶରେ ହିଁ ଉଦ୍ଭାବନ କରାଯାଇଛି । ସେଥିମଧ୍ୟରୁ କେତୋଟି ହେଲା—ଯେ. ଏସ୍.—୨୦୨, ଯେ. ଏସ୍.—୨୩୧, କାଲିତୁର, ଟି.—୪୯, ପି. କେ.—୭୧—୨୧, ଯେ. ଏସ୍.—୭୨—୪, ଯେ. ଏସ୍.—୨, ପଞ୍ଜାବ—୧, ଅଙ୍କୁର, ଅଳଙ୍କାର, ଶିଲଜିତ୍ ଏପରି ଅନେକ । ବିହାର ପ୍ରଦେଶରେ ମଧ୍ୟ ସୋୟାବିନ୍ ଚାଷ ହାତକୁ ନିଆଯାଇଛି । ଏସବୁ ଦୃଷ୍ଟିରୁ ଓଡ଼ିଶାରେ ସୋୟାବିନ୍ ଚାଷ ହାତକୁ ନେବା ଉଚିତ ହେବ । ଓଡ଼ିଶାର ସମତଳ ତଥା ପାର୍ବତ୍ୟ ଅଞ୍ଚଳ ଗୁଡ଼ିକରେ ଯେଉଁଠି ଧାନ୍ୟାଦି ଫସଲ ଲାଭଦାୟକ ନୁହେଁ ସେହି ଅଞ୍ଚଳ ଗୁଡ଼ିକରୁ କେତେକ ଅଞ୍ଚଳ ବାଛି ସୋୟାବିନ୍ ଚାଷ ବହୁଳ ଭାବେ କରାଯାଇ ପାରେ । ଯଦି ତାହା ହୁଏ ତେବେ ଏହି ଚାଷ କରିବା ପୂର୍ବରୁ କେତେ ଗୁଡ଼ିଏ ବିଷୟ ପ୍ରତି ଲକ୍ଷ୍ୟ ରଖିବା ଉଚିତ ହେବ ।

(୧) ସେହି ଅଞ୍ଚଳ ଲାଗି ଉପଯୁକ୍ତ ହେବା ଉତ୍ତମ କିସମର ସୋୟାବିନ୍ ନିର୍ବାଚନ କରିବା ଉଚିତ । ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ସିମିଳିଗୁଡ଼ା ଆଞ୍ଚଳିକ କୃଷି ଗବେଷଣାରେ ପରୀକ୍ଷା କରା ଯାଇଥିବା ପରୀକ୍ଷାରୁ ଜଣାଯାଏ ଯେ ଏନ୍.

ପି.—୩ କିସମର ସୋୟାବିନ୍ ହେକ୍ଟର ପ୍ରତି ୧୪ କୁଇଣ୍ଟାଲ୍ ମଞ୍ଜି ଅମଳ ଦେଇପାରିଛି ।

(୨) ପ୍ରତି ହେକ୍ଟର ପିଛା ଚାରିଲକ୍ଷ ସୋୟାବିନ୍ ଗଛ ରହିବା ଦରକାର । ଏହା ଲାଭ ଦୃଷ୍ଟିରୁ ନିତ୍ୟାନ୍ତ ଦରକାର ।

(୩) କ୍ଷେତରେ ସମାନ ଭାବେ ବିହନ ଗଜା ହେବାପାଇଁ ବିହନଗୁଡ଼ିକୁ ୨୪ ଘଣ୍ଟା ପାଣିରେ ଭିଜାଇ ବପନ କରିବା ଆବଶ୍ୟକ ।

(୪) ବିହନ ବୁଣିବା ପୂର୍ବରୁ ଥିରମ୍ ଅବା ଅନ୍ୟ କୌଣସି ରାସାୟନିକ ଦ୍ରବ୍ୟ ଦ୍ୱାରା ବିଶୋଧନ କରି ବୁଣିବା ଉଚିତ ।

(୫) ବିହନରେ ବାକ୍ଟ୍ରିଆ କଲଚର ମିଶାଇ ବିହନ ବୁଣିବା ଉଚିତ କିନ୍ତୁ ବିହନ ବିଶୋଧନ ଓ ବାକ୍ଟ୍ରିଆ କଲଚର (ରାଇଯୋବିଏମ୍ ବା ଜାପୋନିକସ୍ କଲଚର) ଏକା ସମୟରେ ହେବା ଅନୁଚିତ ।

(୬) ମାଟିରେ ବତର ଥିବା ସମୟରେ ବିହନ ବପନ କରିବା ଉଚିତ । କେହି କେହି ଚାଷୀ ବିହନ ବପନର ତିନିଚାରି ଦିନ ପୂର୍ବରୁ ଜମିରେ ପାଣି ମଡାଇ ପରେ ବୀଜ ବପନ କରିଥାନ୍ତି ।

(୭) ଉତ୍ତମ ଚାଷ ପ୍ରଣାଳୀ ବ୍ୟବହାର କରିବା ଉଚିତ । ହେକ୍ଟର ପ୍ରତି ୧୨ ଗାଡ଼ି ଜୈବିକ ଖତ, ୧୨୫ କେଜି. ଏମୋନିଏମ୍ ନାଇଟ୍ରେଟ୍, ୫୦୦ କେ.ଜି. ସିଙ୍ଗଲ ସୁପର ଫସଫେଟ୍ ଓ ୭୫ କେ.ଜି. ମ୍ୟୁରେଟ ଅଫ୍ ପଟାସ୍ ସାଧାରଣତଃ ପ୍ରୟୋଗ କରାଯାଏ । ଏହାଛଡା କ୍ଷାରମାଟିରେ ଜିପ୍‌ସମ୍ ଓ ଅମ୍ଳ ମାଟିରେ ପେପର ମିଲ୍ ସ୍ଲଜ୍ ବ୍ୟବହାର କଲେ ମାଟିର ପି. ଏଚ୍. ଠିକ୍ ରହିବା ଦ୍ୱାରା ସୋୟାବିନ୍ ଗଛ ଠିକ୍ ଭାବେ ବଢ଼ି ଅଧିକ ଅମଳ ଦେବାରେ ସକ୍ଷମ ହେବ ।

ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର ।



# ଆମର ଲୁପ୍ତ ଗୌରବ ପୁଣି ଫେରି ଆସିବ

ଶ୍ରୀ ବିଜୟ କୁମାର ପ୍ରଧାନ





ଧରିଆପାରି ଦେଶ ଯାଭା, ସୁମାତ୍ରା, ବ୍ରହ୍ମଦେଶ ପ୍ରଭୃତିରେ ଓଡ଼ିଶାର ପାଟବସ୍ତ୍ର ଯେପରି ଭାବରେ ପ୍ରସିଦ୍ଧି ଲାଭ କରିଥିଲା, ତାହା ଅଦ୍ୟାବଧି ସେ ଦେଶବାସୀମାନଙ୍କ ମନରୁ ପୋଛି ହୋଇପାରି ନାହିଁ । ଓଡ଼ିଶାର ସାଧବ ପୁଅ ଏସବୁ ହାତବୁଣା ବସ୍ତ୍ର ବିନିମୟରେ ଆମ ରାଜ୍ୟକୁ ଆଣୁଥିଲେ ପ୍ରଚୁର ଧନ ସଂପଦ ଏବଂ ତା' ସଙ୍ଗେ ସଙ୍ଗେ ଆମ ରାଜ୍ୟର ସଂସ୍କୃତି ଓ ଶିକ୍ଷାର ମଞ୍ଜି ବପନ କରିଥିଲେ ସେ ଦେଶମାନଙ୍କରେ । ଆଜି ମଧ୍ୟ ସେ ଦେଶମାନଙ୍କରେ ଆମ ପର୍ବପର୍ବାଣୀ ଗୁଡ଼ା ଅଧିକେ ପାଳିତ ହେଉଛି । ତା' ପରେ ସମୟର କରାଳ ସ୍ରୋତରେ ଆମର ହାତବୁଣା ବସ୍ତ୍ର ଉତ୍ପାଦନ ବିପର୍ଯ୍ୟୟର ସମ୍ମୁଖୀନ ହେଲା ଏବଂ ପାଶ୍ଚାତ୍ୟ ଦେଶର ଶିଳ୍ପ ବିପ୍ଳବ ସହିତ ତାଳମାନ ଦେଇ ପାରେଇ ପାରିଲା ନାହିଁ ଆମର ବୟନ ଶିଳ୍ପ । ସରକାରୀ ପ୍ରୋତ୍ସାହନର ଅଭାବ ଘଟିଲା ଏବଂ ଆମର ବୟନ ଶିଳ୍ପୀ ଏକ ରକମ ହାତ ବାନ୍ଧି ବସିଲେ । କେବଳ ଆମ ରାଜ୍ୟର ଚାହିଦା ପୂରଣ ପାଇଁ କେତେକ ପ୍ରକାର ବସ୍ତ୍ର ଉତ୍ପାଦନ ଅବ୍ୟାହତ ରହିଲେ ମଧ୍ୟ ଉତ୍ପାଦ ବଜାର ପ୍ରତିଯୋଗିତା କ୍ଷେତ୍ରରେ ବିଫଳତା ଦେଖାଦେଲା ।

ସମୟର ଚକ ପୁଣି ଘୂରିବା ଆରମ୍ଭ କଲା । ଦେଶ ସ୍ୱାଧୀନ ହେବା ପରେ ଆମର ବୁଣାକାରମାନଙ୍କୁ ପୁନର୍ବାର ପ୍ରୋତ୍ସାହନ ମିଳିଲା । ବୟନ ଶିଳ୍ପର ପୁନରୁଦ୍ଧାର କରାଯାଇ ଲୋକମାନଙ୍କୁ କାମଧନ୍ଦା ଯୋଗାଇ ଦିଆଗଲା । ଖଦୀ ଓ ଗ୍ରାମୋଦ୍ୟୋଗ ଯୋଜନା ଲୋକପ୍ରିୟ ହେଲା । ଏହାକୁ ଏକ କୁଟୀର ଶିଳ୍ପ ରୂପେ ଗ୍ରହଣ କରାଗଲା । ଗୋଟିଏ ତନ୍ତ ଚଳିଆରେ ଅନ୍ୟୂନ ୨ ଜଣ ଲୋକଙ୍କୁ କାମ ମିଳିଥାଏ । ତେଣୁ ଅଧିକରୁ ଅଧିକ ତନ୍ତ ବସାଗଲା ଓ ତନ୍ତଗୁଡ଼ିକର ଆଧୁନିକୀକରଣ ଉପରେ ଜୋର ଦିଆଗଲା । ଆର୍ଥିକ ସହାୟତା ଯୋଗାଇ ଦେବା ସଙ୍ଗେ ସଙ୍ଗେ ହସ୍ତତନ୍ତ ବସ୍ତ୍ର ଉତ୍ପାଦନ ପାଇଁ ଆବଶ୍ୟକ ହେଉଥିବା କଞ୍ଚାମାଲ ଯୋଗାଇ ଦିଆଗଲା ଏବଂ ସେସବୁ ଉତ୍ପାଦିତ ବସ୍ତ୍ରର ବିକ୍ରୀବଟା

ପାଇଁ ସୁଚିନ୍ତିତ ବ୍ୟବସ୍ଥା କରାଗଲା । ୫ମ ପଞ୍ଚବାର୍ଷିକ ଯୋଜନା ଶେଷ ବେଳକୁ ଆମ ରାଜ୍ୟର ୩୯ ହଜାର ୨୧୪ଟି ତନ୍ତକୁ ସମବାୟ ପରିସର ମଧ୍ୟକୁ ଅଣାଯାଇ ଆର୍ଥିକ ସହାୟତା ସମେତ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦିଆଗଲା । ଏହା କ୍ରମେ ଏକ ଲାଭଜନକ ଧନ୍ଦା ରୂପେ ପରିଗଣିତ ହେଲା । ୬ଷ୍ଠ ଯୋଜନା



କାଳ ମଧ୍ୟରେ ଆଉ ୪୯ ହଜାର ୭୦୬ଟି ତନ୍ତ ବସାଇବାର ଲକ୍ଷ୍ୟ ରଖାଗଲା । ଏଥିମଧ୍ୟରୁ ସମବାୟ ଜରିଆରେ ୩୦ ହଜାର ଓ ନିଗମ ଜରିଆରେ ୭,୭୦୬ଟି ପ୍ରତିଷ୍ଠା କରିବାର ଯୋଜନା କରାଗଲା । ଗତବର୍ଷ ଡିସେମ୍ବର ସୁଦ୍ଧା (୧୯୮୩ ଡିସେମ୍ବର) ୪୭ ହଜାର ୬୭୫ଟି ତନ୍ତ ପ୍ରତିଷ୍ଠା ଓ ସକ୍ରିୟ କରାଯାଇ ପାରିଥିବା ବିଷୟ ଏକ ସରକାରୀ ରିପୋର୍ଟରୁ ପ୍ରକାଶ । ଏହା ଫଳରେ ୯୫ ହଜାର ୩୫୦ ଜଣ ବୁଣାକାର କାମଧନ୍ଦା ପାଇପାରିଛନ୍ତି । ଏଥିରୁ ଜଣାଯିବ ଯେ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ହସ୍ତତନ୍ତ ବସ୍ତ୍ର ଉତ୍ପାଦନ କ୍ଷେତ୍ରରେ ଏକ ବୈପ୍ଳବିକ ପ୍ରଗତି ଘଟିଛି । ୧୯୭୯-୮୦ ବର୍ଷ ବେଳକୁ ରିଜର୍ଭ ବ୍ୟାଙ୍କରୁ ୨ କୋଟି ୨୦ ଲକ୍ଷ ଟଙ୍କା ଋଣ ଯୋଗାଇ ଦିଆଯାଇଥିବା ବେଳେ ୧୯୮୩-୮୪ ବର୍ଷ ବେଳକୁ ତାହା ୧୩ କୋଟି ୬୦ ଲକ୍ଷ ଟଙ୍କାରେ ପହଞ୍ଚି ପାରିଲା ।

ତନ୍ତଗୁଡ଼ିକର ଆଧୁନିକୀକରଣ ଉପରେ ଗୁରୁତ୍ୱ ଦିଆଯାଇ ବାସ୍ତବ ପଦକ୍ଷେପ ନିଆଯାଇ ୧୯୮୦-୮୧ ମସିହାଠାରୁ ଷଷ୍ଠ ଯୋଜନା ଶେଷ ବେଳକୁ ୭୨ ହଜାର ୬ ଗୋଟି ତନ୍ତର ଆଧୁନିକୀକରଣ ପାଇଁ ଲକ୍ଷ୍ୟ ରଖାଗଲା । ଏଥିମଧ୍ୟରୁ ଯୋଜନାର ପ୍ରଥମ ୩ ବର୍ଷରେ, ଅର୍ଥାତ୍ ୧୯୮୨-୮୩ ବର୍ଷର ପ୍ରଥମ ୯ ମାସ ସୁଦ୍ଧା ୪୩ ହଜାର ୬୬୯ଟି ତନ୍ତକୁ ଉନ୍ନତ କରାଯାଇ ପାରିଲା । ଏହି ସାଫଲ୍ୟକୁ ଦେଶର ସର୍ବୋଚ୍ଚ ସାଫଲ୍ୟ ବୋଲି କୁହାଯାଉଛି । ତନ୍ତର ଉନ୍ନତି ଫଳରେ ଉତ୍ତମମାନର ବସ୍ତ୍ର ଉତ୍ପାଦନ ହେବା ସଙ୍ଗେ ସଙ୍ଗେ ଏହାର ଆଦର ବଢ଼ିବାରେ ଲାଗିଛି । ବର୍ତ୍ତମାନ ରାଜ୍ୟର ଦେଢ଼ଲକ୍ଷରୁ ଊର୍ଦ୍ଧ୍ୱ ବୁଣାକାର ସେମାନଙ୍କ ଜୀବନ ଧାରଣର ମାନ ବଢ଼ାଇବାକୁ ସକ୍ଷମ ହୋଇପାରିଥିବା ବଡ଼ ସୁଖର ବିଷୟ ।

ଇ. ଆର. ଆର. ପି. କାର୍ଯ୍ୟକ୍ରମ ଜରିଆରେ ମଧ୍ୟ ବୁଣାକାର ଓ ଅଣ ବୁଣାକାର ବ୍ୟକ୍ତିଙ୍କୁ ଏହି ଶିଳ୍ପରେ ସାମିଲ କରିବା ପାଇଁ ପ୍ରୋତ୍ସାହନ ଯୋଗାଇ ଦିଆଗଲା । ୧୯୮୨-୮୩ ଶେଷ ସୁଦ୍ଧା ୮ ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି ଏହା ଫଳରେ ଉପକୃତ ହୋଇପାରିଛନ୍ତି ଏବଂ ଏମାନଙ୍କ ମଧ୍ୟରୁ ୪ ହଜାର ବ୍ୟକ୍ତିଙ୍କୁ ଉପଯୁକ୍ତ ତାଲିମ ଯୋଗାଇ ଦିଆଯାଉଛି । ୧୯୮୩-୮୪ ବର୍ଷରେ ଏହି କାର୍ଯ୍ୟକ୍ରମ ଜରିଆରେ ୧୪ ହଜାର ବ୍ୟକ୍ତିଙ୍କୁ ଉପକୃତ କରାଯିବ ବୋଲି ଲକ୍ଷ୍ୟ ରଖାଗଲା । ଏଥିପାଇଁ ବୁଣାକାରଙ୍କୁ ୨ ହଜାର ୩୩୬ ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଗଲା । ଥଇଥାନ ହେବା ପରେ ଉପକୃତ ବ୍ୟକ୍ତିମାନେ ମାସକୁ ଅଢ଼େଇଶହ ଟଙ୍କାରୁ ତିରିଶହ ଟଙ୍କା ପର୍ଯ୍ୟନ୍ତ ରୋଜଗାର କରିବାକୁ ସକ୍ଷମ ହେଲେ । ଅବଶ୍ୟ ଏହି ରୋଜଗାର ପରିମାଣ ବୁଣାକାରମାନଙ୍କ କର୍ମ କୁଶଳତା ଉପରେ ନିର୍ଭର କରେ ।

ବହୁ କାଳରୁ ବୟନ ଶିଳ୍ପ ଆମ ରାଜ୍ୟରେ ଏକ ପାରମ୍ପରିକ ଶିଳ୍ପ ରୂପେ ଖ୍ୟାତିଲାଭ କରିଆସିଛି । ଏବେ ମଧ୍ୟ ରାଜ୍ୟରେ ପ୍ରାୟ ୪୦ ହଜାର ଅନୁନ୍ନତ ସଂପ୍ରଦାୟର ବ୍ୟକ୍ତି ଉଣା ଅଧିକେ ଏହି ଧନ୍ଦାରେ ନିୟୋଜିତ । ଏମାନଙ୍କୁ ବିଧିବଦ୍ଧ ଭାବରେ ଏହି କାର୍ଯ୍ୟରେ ଲଗାଇବାକୁ ହେବ । ଆଉ ମଧ୍ୟ ଏକ ନୂତନ କାର୍ଯ୍ୟକ୍ରମ ବର୍ତ୍ତମାନର ସରକାର ହାତକୁ ନେଇ ଆଉ ପାଦେ ଆଗେଇ ଆସିଛନ୍ତି । ଏ କାର୍ଯ୍ୟକ୍ରମ ହେଉଛି ପଲ୍ଲୀବସ୍ତ୍ର କାର୍ଯ୍ୟକ୍ରମ । ପଲ୍ଲୀବସ୍ତ୍ର ବସ୍ତ୍ର ସଂପ୍ରତି ଲୋକପ୍ରିୟ ହୋଇଥିବାରୁ ଏହା ଏକ ସଫଳ କାର୍ଯ୍ୟକ୍ରମ ହୋଇ ପାରିବ ।

ତେବେ ପ୍ରଶ୍ନ ହୁଏ, ବୟନ ଶିଳ୍ପର ଏପରି ବ୍ୟାପକ ପ୍ରସାର ପାଇଁ ସୂତା ଆସିବ କେଉଁଠୁ ? ଏଥିପାଇଁ ରାଜ୍ୟରେ ୧୦ ଗୋଟି ସୂତାକଳ ପ୍ରତିଷ୍ଠା କରାଯାଉଛି ଏବଂ କପାସ୍ୱଷର ଉନ୍ନତି ଉପରେ ଗୁରୁତ୍ୱ ଦିଆଯାଉଛି । ଇତି ମଧ୍ୟରେ କେତେକ ସୂତାକଳରୁ ଉତ୍ପାଦନ ଆରମ୍ଭ ହୋଇଗଲାଣି । ଯାହା ଜଣାପଡୁଛି, ଅଚିରେ ଆମ ରାଜ୍ୟ, ତାହାର ହୃତ ଗୌରବ ପୁଣି ଫେରାଇ ଆଣିବ ।

କ୍ୱାଟର ନଂ—ଡ଼ି—୮ଭୁ୫ ୟୁନିଟ—୮ ଭୁବନେଶ୍ୱର

ଶାରୀରିକ ଦୁର୍ବଳତା ପ୍ରକୃତ ଦୁର୍ବଳତା ନୁହେଁ,
ମନର ଦୁର୍ବଳତା ହିଁ ପ୍ରକୃତ ଦୁର୍ବଳତା । ୩.୧.୧୯୪୬.

ଉତ୍କଳ ପ୍ରସଙ୍ଗ

# ରାଜ୍ୟ ଉନ୍ନୟନରେ ଅର୍ଥଲଗାଣ ସଂସ୍ଥାର ଭୂମିକା



ଓଡ଼ିଶା ଏକ ଅନୁନ୍ନତ ରାଜ୍ୟ । ଏହାର ଅଧିବାସୀମାନଙ୍କ ମଧ୍ୟରୁ ଅଧିକାଂଶ ଦାରିଦ୍ର୍ୟ ସୀମାରେଖା ତଳେ ଥିବାରୁ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ସାଧାରଣ ବ୍ୟକ୍ତିବିଶେଷଙ୍କର ସେତେ ସାମର୍ଥ୍ୟ ନାହିଁ କହିଲେ ଚଳେ । ତେଣୁ ରାଜ୍ୟର ବିଭିନ୍ନ କ୍ଷେତ୍ରରେ ଅଗ୍ରଗତି ଓ ଦାରିଦ୍ର୍ୟ ଦୂରୀକରଣ ନିମିତ୍ତ ବିଭିନ୍ନ ଅର୍ଥ ଲଗାଣ ସଂସ୍ଥାଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଆନ୍ତି ।

ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଆରମ୍ଭରେ ରାଜ୍ୟରେ ମୋଟ ୭୬୬ଟି ବ୍ୟାଙ୍କ୍‌ଶାଖା (ବାଣିଜ୍ୟିକ ବ୍ୟାଙ୍କ୍‌ର ୫୮୬ଟି ଓ ଗ୍ରାମ୍ୟ ବ୍ୟାଙ୍କର ୧୮୦ଟି ଶାଖା) ଥିବାସ୍ଥଳେ ତା ୩୧-୬-୧୯୮୫ ତିଖ ଅର୍ଥାତ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଶେଷସୁଦ୍ଧା ରାଜ୍ୟରେ




ବିଭିନ୍ନ ବ୍ୟାଙ୍କ୍‌ର ମୋଟ ୧,୬୮୨ଟି ବ୍ୟାଙ୍କ୍ ଶାଖା ଅଛି । ଏଥି ମଧ୍ୟରୁ ବାଣିଜ୍ୟିକ ବ୍ୟାଙ୍କ୍‌ର ୯୪୦ଟି ଶାଖା ଓ ଗ୍ରାମ୍ୟ-ବ୍ୟାଙ୍କର ୭୪୨ଟି ଶାଖା ଅଟେ ।

ଗତ ୧୯୮୪ ମସିହାରେ ବ୍ୟାଙ୍କଗୁଡ଼ିକର ବିଭିନ୍ନ ଅଗ୍ରାଧିକାର କ୍ଷେତ୍ରରେ ଅର୍ଥ ଲଗାଣର ଏକ ସମୀକ୍ଷା ନିମ୍ନରେ ପ୍ରଦତ୍ତ କରାଗଲା ।

(କ) ଶସ୍ୟ ଋଣ :—ଏହି ଋଣ ବାବଦରେ ବିଭିନ୍ନ ବ୍ୟାଙ୍କ ୧୦୮ କୋଟି ୨୬ ଲକ୍ଷ ଟଙ୍କା ଋଣ ଲଗାଣ କରିଛନ୍ତି । ସେଥି-ମଧ୍ୟରୁ ବାଣିଜ୍ୟିକ ବ୍ୟାଙ୍କ ୨୧ କୋଟି ୭୪ ଲକ୍ଷ ଟଙ୍କା, ଗ୍ରାମ୍ୟବ୍ୟାଙ୍କ ୧୪ କୋଟି ୯୨ ଲକ୍ଷ ଟଙ୍କା ଓ ସମବାୟ ବ୍ୟାଙ୍କ ୭୧ କୋଟି ୬୦ ଲକ୍ଷ ଟଙ୍କା ଏ ବାବଦରେ ଋଣ ଲଗାଣ କରିଛନ୍ତି । ଏ କ୍ଷେତ୍ରରେ ସମବାୟ ବ୍ୟାଙ୍କଗୁଡ଼ିକର ଭୂମିକା ଅତ୍ୟନ୍ତ ଉତ୍ସାହପ୍ରଦ ମନେହୁଏ । ଏହା ବ୍ୟତୀତ ଏ କ୍ଷେତ୍ରରେ ଇଣ୍ଡିଆନ ଓଭରସିଜ ବ୍ୟାଙ୍କ, ଢେଙ୍କାନାଳ ଗ୍ରାମ୍ୟବ୍ୟାଙ୍କ ଓ ଋଷିକୂଲ୍ୟା ଗ୍ରାମ୍ୟବ୍ୟାଙ୍କର ଭୂମିକା ଉତ୍ସାହପ୍ରଦ ଅଟେ ଯେହେତୁ ସେମାନେ ତାଙ୍କ ଧାର୍ଯ୍ୟ ଲକ୍ଷ୍ୟକୁ ଅତିକ୍ରମ କରିଛନ୍ତି ।

(ଖ) ମିଆଦୀ ଋଣ :—ଏ କ୍ଷେତ୍ରରେ ମୋଟ ଋଣ ଲଗାଣ ୪୧ କୋଟି ୬ ଲକ୍ଷ ଟଙ୍କା ଅଟେ । ଏହା ଧାର୍ଯ୍ୟଲକ୍ଷ୍ୟ ୭୬ କୋଟି ୧୬ ଲକ୍ଷ ଟଙ୍କାର ଶତକଡ଼ା ୫୪ ଭାଗ । ଏଥି ମଧ୍ୟରୁ ବାଣିଜ୍ୟିକ ବ୍ୟାଙ୍କ ସେମାନଙ୍କ ଧାର୍ଯ୍ୟ ଲକ୍ଷ୍ୟ ୨୪ କୋଟି ୨୪ ଲକ୍ଷ ଟଙ୍କା ମଧ୍ୟରୁ ମୋଟ ୧୪ କୋଟି ୭୧ ଲକ୍ଷ ଟଙ୍କା ଋଣ ଲଗାଣ କରିଛନ୍ତି । ଗ୍ରାମ୍ୟବ୍ୟାଙ୍କଗୁଡ଼ିକ ସେମାନଙ୍କ ଧାର୍ଯ୍ୟ ଲକ୍ଷ୍ୟ ୧୨ କୋଟି ୨୩ ଲକ୍ଷ ଟଙ୍କା ସ୍ଥଳେ ୬କୋଟି ୩୮ ଲକ୍ଷ ଟଙ୍କା ପୁଞ୍ଜି ବିନିଯୋଗ କରିଛନ୍ତି । ସମବାୟ ବ୍ୟାଙ୍କଗୁଡ଼ିକ ମୋଟ ୧୯ କୋଟି ୯୭ ଲକ୍ଷ ଟଙ୍କାର ଋଣ ଲଗାଣ କରିଛନ୍ତି । ଏ କ୍ଷେତ୍ରରେ ଋଷିକୂଲ୍ୟା ଗ୍ରାମ୍ୟବ୍ୟାଙ୍କ, ସିଣ୍ଡିକେଟ ବ୍ୟାଙ୍କ, ଇଉନାଇଟେଡ୍ ବ୍ୟାଙ୍କ ଅଫ ଇଣ୍ଡିଆ, ଇଉନାଇଟେଡ୍‌ଗ କମର୍ସିଆଲ ବ୍ୟାଙ୍କ୍ ଓ କାନାରା ବ୍ୟାଙ୍କମାନଙ୍କର ଅବଦାନ ଉଲ୍ଲେଖ ଯୋଗ୍ୟ ।

ଫଳଗଛ, ଜଳକୂପ ଖନନ ଓ କ୍ଷୁଦ୍ର କୃଷି ଉପକରଣ ଯୋଗାଣ ପ୍ରଭୃତି ଏହି ଋଣର ଅନ୍ତର୍ଭୁକ୍ତ ଅଟେ ।

(ଗ) କୃଷି ସମ୍ପୃକ୍ତ ଋଣ:—ମୋଟ ଧାର୍ଯ୍ୟ ଲକ୍ଷ୍ୟ ୨୯ କୋଟି ୬୯ ଲକ୍ଷ ଟଙ୍କା ଥିବା ସ୍ଥଳେ ଏ କ୍ଷେତ୍ରରେ ସମୁଦାୟ ୨୭ କୋଟି ୩୫ ଲକ୍ଷ ଟଙ୍କା ବିନିଯୋଗ ହୋଇଛି ଓ ଏହା ଧାର୍ଯ୍ୟ ଲକ୍ଷ୍ୟର ୯୨ ଭାଗ ଅଟେ । ଏଥିମଧ୍ୟରୁ ବାଣିଜ୍ୟିକ ବ୍ୟାଙ୍କ ୯ କୋଟି ୯୪ ଲକ୍ଷ ଟଙ୍କା, ଗ୍ରାମ୍ୟବ୍ୟାଙ୍କ ୪କୋଟି ଟଙ୍କା ଓ ସମବାୟ ବ୍ୟାଙ୍କ ୧୩ କୋଟି ୪୧ ଲକ୍ଷ ଟଙ୍କା ବିନିଯୋଗ କରିଛନ୍ତି ।

ଧାର୍ଯ୍ୟ ଲକ୍ଷ୍ୟରୁ ଅଧିକ ସଫଳତା ଲାଭ କରିଥିବା ବ୍ୟାଙ୍କ-ଗୁଡିକ ହେଲା କର୍ପୋରେସନ ବ୍ୟାଙ୍କ, ଇଣ୍ଡିୟାନ ବ୍ୟାଙ୍କ, ଇଣ୍ଡିୟାନ ଓଭରସିଜ୍ ବ୍ୟାଙ୍କ, ନିଉ ବ୍ୟାଙ୍କ ଅଫ ଇଣ୍ଡିଆ । ଗୋବର ଗ୍ୟାସ ପରି ଯୋଜନା ଏହି ଋଣର ଅନ୍ତର୍ଭୁକ୍ତ ଅଟେ ।

(ଘ) କ୍ଷୁଦ୍ରଶିଳ୍ପ :—ଏ କ୍ଷେତ୍ରରେ ଧାର୍ଯ୍ୟଲକ୍ଷ୍ୟ ୫୦ କୋଟି ୫୯ ଲକ୍ଷ ଟଙ୍କା ଥିବା ସ୍ଥଳେ ସଫଳତା ୬୨ କୋଟି ୩୭ ଲକ୍ଷ ଟଙ୍କା ହୋଇଅଛି ଓ ଏହା ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୧୨୩ ଭାଗ ଅଟେ । ଏଥିମଧ୍ୟରୁ ଧାର୍ଯ୍ୟଲକ୍ଷ୍ୟ ବାଣିଜ୍ୟିକ, ଗ୍ରାମ୍ୟବ୍ୟାଙ୍କ ଓ ସମବାୟ ବ୍ୟାଙ୍କଗୁଡ଼ିକ ପାଇଁ ୨୫ କୋଟି ୯୬ ଲକ୍ଷ ଟଙ୍କା, ୩ କୋଟି ୨୭ ଲକ୍ଷ ଟଙ୍କା ଓ ୩୦ କୋଟି ୩୯ ଲକ୍ଷ ଟଙ୍କା ଥିବା ସ୍ଥଳେ ସେମାନେ ଯଥାକ୍ରମେ ୨୪ କୋଟି ୯୬ ଲକ୍ଷ ଟଙ୍କା, ୨ କୋଟି ୩୧ ଲକ୍ଷ ଟଙ୍କା ଓ ୪୯ ଲକ୍ଷ ଟଙ୍କା ବିନିଯୋଗ କରିଛନ୍ତି । ରାଜ୍ୟ ଅର୍ଥ ଲଗାଣ ନିଗମ ସେମାନଙ୍କ ଧାର୍ଯ୍ୟ ଲକ୍ଷ୍ୟ ୧୭ କୋଟି ୯୭ ଲକ୍ଷ ଟଙ୍କା ଥିବା ସ୍ଥଳେ ୩୪ କୋଟି ୬୧ ଲକ୍ଷ ଟଙ୍କା ଋଣ ଲଗାଣ କରିଛନ୍ତି ।

(ଙ) ବୃତ୍ତିଗତ ଓ ଅନ୍ୟାନ୍ୟ :—ଏ କ୍ଷେତ୍ରରେ ସଫଳତା ଅଧିକ ଅଟେ । ୧୯୮୪ ଋଣ ଲଗାଣ ପାଇଁ ଧାର୍ଯ୍ୟ ଲକ୍ଷ୍ୟ ୩୬ କୋଟି ୧୧ ଲକ୍ଷ ଟଙ୍କା ଥିବା ସ୍ଥଳେ ୮୬ କୋଟି ୬୮ ଲକ୍ଷ ଟଙ୍କା ଋଣ ଲଗାଣ ହୋଇଅଛି । ଏଥି ମଧ୍ୟରୁ ବାଣିଜ୍ୟିକ ବ୍ୟାଙ୍କ ଗୁଡ଼ିକ ୩୫ କୋଟି ୮୯ ଲକ୍ଷ ଟଙ୍କା, ଗ୍ରାମ୍ୟ ବ୍ୟାଙ୍କ ୧୧କୋଟି ୯୯ ଲକ୍ଷ ଟଙ୍କା, ରାଜ୍ୟ ଅର୍ଥ ଲଗାଣ ନିଗମ ୧୩ କୋଟି ୪୭ ଲକ୍ଷ ଟଙ୍କା ଓ ସମବାୟ ବ୍ୟାଙ୍କଗୁଡ଼ିକ ୨୫ କୋଟି ୩୪ ଲକ୍ଷ ଟଙ୍କାର ଅର୍ଥ ଲଗାଣ କରିଛନ୍ତି ।

ଯେ ହେତୁ ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ ଓ ଏହାର ଅଧିକାଂଶ ଅଧିବାସୀ କୃଷି ଉପରେ ନିର୍ଭର କରନ୍ତି କୃଷିର ଉନ୍ନତିବିଧାନ ଓ ତତ୍ ସଙ୍ଗେ ସଙ୍ଗେ ଏଥିରୁ ଜୀବିକା ନିର୍ବାହ କରୁଥିବା କ୍ଷୁଦ୍ର କୃଷୀମାନଙ୍କର ଆର୍ଥିକ ଉନ୍ନତି ନିମନ୍ତେ ବ୍ୟାଙ୍କମାନେ ଶସ୍ୟଋଣ ଓ କୃଷି ଋଣକୁ ଅଗ୍ରାଧିକାର ଦେବା ଓ ଏ କ୍ଷେତ୍ରରେ ପୂର୍ଣ୍ଣ ସଫଳତା ଲାଭ କରିବା ନିମନ୍ତେ ପ୍ରୟାସୀ ଅଛନ୍ତି ।






# ରାଜ୍ୟ ଉନ୍ନୟନରେ ଅର୍ଥଲଗାଣ ସଂସ୍ଥାର ଭୂମିକା




ଓଡ଼ିଶା ଏକ ଅନୁନ୍ନତ ରାଜ୍ୟ । ଏହାର ଅଧିବାସୀମାନଙ୍କ ମଧ୍ୟରୁ ଅଧିକାଂଶ ଦାରିଦ୍ର୍ୟ ସୀମାରେଖା ତଳେ ଥିବାରୁ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ସାଧାରଣ ବ୍ୟକ୍ତିବିଶେଷଙ୍କର ସେତେ ସାମର୍ଥ୍ୟ ନାହିଁ କହିଲେ ଚଳେ । ତେଣୁ ରାଜ୍ୟର ବିଭିନ୍ନ କ୍ଷେତ୍ରରେ ଅଗ୍ରଗତି ଓ ଦାରିଦ୍ର୍ୟ ଦୂରୀକରଣ ନିମିତ୍ତ ବିଭିନ୍ନ ଅର୍ଥ ଲଗାଣ ସଂସ୍ଥାଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଆନ୍ତି ।

ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଆରମ୍ଭରେ ରାଜ୍ୟରେ ମୋଟ ୭୬୬ଟି ବ୍ୟାଙ୍କ୍‌ଶାଖା (ବାଣିଜ୍ୟିକ ବ୍ୟାଙ୍କ୍‌ର ୫୮୬ଟି ଓ ଗ୍ରାମ୍ୟ ବ୍ୟାଙ୍କର ୧୮୦ଟି ଶାଖା) ଥିବାସ୍ଥଳେ ତା ୩୧-୩-୧୯୮୫ ରିଖ ଅର୍ଥାତ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଶେଷସୁଦ୍ଧା ରାଜ୍ୟରେ




ବିଭିନ୍ନ ବ୍ୟାଙ୍କ୍‌ର ମୋଟ ୧,୬୮୨ଟି ବ୍ୟାଙ୍କ୍ ଶାଖା ଅଛି । ଏଥି ମଧ୍ୟରୁ ବାଣିଜ୍ୟିକ ବ୍ୟାଙ୍କ୍‌ର ୯୪୦ଟି ଶାଖା ଓ ଗ୍ରାମ୍ୟ-ବ୍ୟାଙ୍କର ୭୪୨ଟି ଶାଖା ଅଟେ ।

ଗତ ୧୯୮୪ ମସିହାରେ ବ୍ୟାଙ୍କଗୁଡ଼ିକର ବିଭିନ୍ନ ଅଗ୍ରାଧିକାର କ୍ଷେତ୍ରରେ ଅର୍ଥ ଲଗାଣର ଏକ ସମୀକ୍ଷା ନିମ୍ନରେ ପ୍ରଦତ୍ତ କରାଗଲା ।

(କ) ଶସ୍ୟ ଋଣ :—ଏହି ଋଣ ବାବଦରେ ବିଭିନ୍ନ ବ୍ୟାଙ୍କ ୧୦୮ କୋଟି ୨୬ ଲକ୍ଷ ଟଙ୍କା ଋଣ ଲଗାଣ କରିଛନ୍ତି । ସେଥି-ମଧ୍ୟରୁ ବାଣିଜ୍ୟିକ ବ୍ୟାଙ୍କ ୨୧ କୋଟି ୭୪ ଲକ୍ଷ ଟଙ୍କା, ଗ୍ରାମ୍ୟବ୍ୟାଙ୍କ ୧୪ କୋଟି ୯୨ ଲକ୍ଷ ଟଙ୍କା ଓ ସମବାୟ ବ୍ୟାଙ୍କ ୭୧ କୋଟି ୬୦ ଲକ୍ଷ ଟଙ୍କା ଏ ବାବଦରେ ଋଣ ଲଗାଣ କରିଛନ୍ତି । ଏ କ୍ଷେତ୍ରରେ ସମବାୟ ବ୍ୟାଙ୍କଗୁଡ଼ିକର ଭୂମିକା ଅତ୍ୟନ୍ତ ଉତ୍ସାହପ୍ରଦ ମନେହୁଏ । ଏହା ବ୍ୟତୀତ ଏ କ୍ଷେତ୍ରରେ ଇଣ୍ଡିଆନ ଓଭରସିଜ ବ୍ୟାଙ୍କ, ଢେଙ୍କାନାଳ ଗ୍ରାମ୍ୟବ୍ୟାଙ୍କ ଓ ଋଷିକୁଲ୍ୟା ଗ୍ରାମ୍ୟବ୍ୟାଙ୍କର ଭୂମିକା ... ଯେ ହେତୁ ସେମାନେ ତାଙ୍କ ଧାର୍ଯ୍ୟ ...

(ଖ) ମିଆଦୀ ଋଣ ...
ଲଗାଣ ୪୧ କୋଟି ...
୭୬ କୋଟି ...
ବାଣିଜ୍ୟିକ ବ୍ୟାଙ୍କ ...
ଟଙ୍କା ମଧ୍ୟରୁ ...
କରିଛନ୍ତି ।
...

# ସଫଳ କାହାଣୀ

## ମନୁର ଭାଗ୍ୟ ପତର ଡଳେ

କେନ୍ଦୁଝରଗଡ଼ଠାରୁ ଚଂପୁଆ ପୁରୁଣାବସା ରାସ୍ତା କଡ଼ରେ ପ୍ରାୟ ୮–୧୦ କି: ମି: ଦୂରରେ ସଦର ବ୍ଲକ୍‌ର ପିଲୁଗୁଆଁ ଗାଁ ଟା ଆଉ ପୂର୍ବର ସେ ନିଘଞ୍ଚ ଜଙ୍ଗଲ ନାହିଁ । ଜାଳେଣି କାଠ ବିଖଣ୍ଡ ପାଇଁ ୮–୧୦ କି: ମି: ଯିବାକୁ ପଡୁଛି । ସେଥିରେ ପୁଣି ଜଙ୍ଗଲ କର୍ମଚାରୀଙ୍କ ଧରପଗଡ଼ । ସେହି ଗ୍ରାମରେ ଶ୍ରୀ ମନୁ ଦେହୁରୀଙ୍କ ଘର । ଖାଇବାକୁ ତାଙ୍କର ୮ ପ୍ରାଣୀ କୁଟୁମ୍ବ, ବଡ଼ ୫ ଓ ସାନ ୩, ଚାଷଜମି ବୋଲି ମୋଟ ଏକ ଏକର ଖାଁଠିଏ ଡିପିମିଲି । କେବଳ ଧାନ ଗଣ୍ଡେ ଇନ୍ଦ୍ର ପାଳିଲେ ମିଳେ । ନୋହିଲେ ପୁଷ ମାସରୁ ଉଧାର କରଜ ବନ୍ଧା ଛନ୍ଦା ନେଇ ଚଳନ୍ତି । ଭଲ ପାଳକରେ ମଧ୍ୟ ପରିବାରର ମୁଖ୍ୟ ଶ୍ରୀ ମନୁ ଦେହୁରୀ ନିଜ ଫସଲରେ ୨।୩ ମାସ ଚଳି ପାରନ୍ତି ନାହିଁ । ବଡ଼ପୁଅ ଓ ନିଜେ ଦୁଇଜଣ ପର ଦୁଆରେ ମୂଲ ଲାଗି ଓଳିଏ ଖାଇଲେ ତ ଆଉ ଓଳିକି ଓଦା କନା ପେଟରେ ଦେଇ ଶୋଇଲେ । ବର୍ଷାଦିନରେ ତ ମୂଲ ମଜୁରୀ ଅଭାବରୁ ଦିନ ଦିନ ଧରି ଉପାସ ରହୁଛନ୍ତି । ଛୁଆପିଲାଙ୍କ ବିକଳ ଦେଖି ଶତ୍ରୁ ବି ଦମ୍ଭ ଧରି ରହିପାରିବନି ।

ଏହି ସମୟରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ କେନ୍ଦୁଝର ଷ୍ଟେଟ୍ ବ୍ୟାଙ୍କରୁ ୪,୫୭୭ ଟଙ୍କା ୨୫ ପଇସା ଋଣରେ ଅକ୍‌ଟୋବର ୮୦ରେ ମାଈ ବାଛୁରୀ ସହ ସଙ୍କର ଜର୍ସି ଗାଈଟିଏ କିଣିଲେ । ହାରାହାରି ଦୈନିକ ୮ ଲିଟର ଲେଖାଏଁ ୧୪ ମାସ କ୍ଷୀର ଦେଇ ୨ମାସ ପଡ଼ିଆ ରହିବା ପରେ ପୁଣି ସେ ଗୋଟିଏ ମାଈ ବାଛୁରୀ ଜନ୍ମ କଲା । ପ୍ରଥମ ମାଈ ବାଛୁରୀଟି ୧ମାସ ବୟସରେ ମରିଗଲେବି କ୍ଷୀର ଦେବାରେ କୌଣସି ଅସୁବିଧା ପରିଲକ୍ଷିତ ହେଲା ନାହିଁ । ୨ୟ ଥରରେ ବର୍ଷେଯାଏ ଦୈନିକ ହାରାହାରି ୧୫ ଲିଟର କ୍ଷୀର ମିଳିଲା ଓ ମାସେ ପଡ଼ିଆ ରହିଲାପରେ ୩ୟ ଗର୍ଭରେ ମଧ୍ୟ ସେ ମାଈ ବାଛୁରୀଟିଏ ଜନ୍ମ କଲା ଓ ଏ ବାଛୁରୀଟି ୨ମାସ ପରେ ମରିଗଲା । ଏଥର ମଧ୍ୟ ଦୈନିକ ହାରାହାରି ୧୫ ଲିଟର ଲେଖାଏଁ କ୍ଷୀର ମିଳିଲା ଓ ୪ର୍ଥ ଥର ନଭେମ୍ବର ୮୪ରେ ସେ ଗାଈଟି ଅଣ୍ଡିରା ବାଛୁରୀଟିଏ ଜନ୍ମ କରି ଦୈନିକ ୧୩ ଲିଟର କ୍ଷୀର ଦେଉଛି । ଏ ଗାଈର ୨ୟ ଗର୍ଭର ଛଡ଼ାଟି ଜନ୍ମ କଲାପରେ ୪,୪୦୦ ଟଙ୍କାରେ ବିକ୍ରୀ ହୋଇଛି ।

୨ୟ ଗାଈଟି ୭ମାସ ଗର୍ଭ ଥିଲାବେଳେ ଶ୍ରୀ ଦେହୁରୀ ୧୯୮୩ ଜୁନ୍ ମାସରେ କିଣିଲେ । ଏ ଗାଈଟି ଅଣ୍ଡିରା ବାଛୁରୀଟିଏ ଜନ୍ମ କରି ଦୈନିକ ହାରାହାରି ୧୧ ଲିଟର କ୍ଷୀର ଦେଲା । ବାଛୁରୀଟି ମରିଗଲେବି ପ୍ରାୟ ୧୧ ଲିଟର ଲେଖାଏଁ କ୍ଷୀର ମିଳିଲା ।

ପ୍ରଥମେ କ୍ଷୀରକୁ ଘରୋଇ ଭାବରେ ଟ.୨'୫୦ ପଇସା ଦରରେ ଶ୍ରୀ ଦେହୁରୀ ବିକ୍ରୀ କରୁଥିଲେ । ତା' ପରେ କେନ୍ଦୁଝର ଦୁଗ୍ଧ ଉତ୍ପାଦକ ସଂଘର ରାଇସୁଆଁ କେନ୍ଦ୍ରରେ ଟ୨'୫୦ ପଇସା ଦରରେ ବିକିଲେ । ବର୍ତ୍ତମାନ ପିଲିଗୁଆଁ ଗାଁର କ୍ଷୀର କ୍ରୟ କେନ୍ଦ୍ରରେ ଲିଟର ପ୍ରତି ଟ୨'୬୦ ପଇସାରୁ ୨'୭୦ ପଇସା ଦରରେ ସେ କ୍ଷୀର ବିକ୍ରୀ କରୁଛନ୍ତି ।

ଦୁଇଟିଯାକ ଗାଈ ଓ ବାଛୁରୀ ପାଇଁ ଦୈନିକ ୧୫ଟଙ୍କା ଖାଦ୍ୟ ଖର୍ଚ୍ଚ ଯାଇ ୨୫ ଟଙ୍କା ଲାଭ ହୁଏ । ଗାଈ ଦୁଇଟିର କ୍ଷୀର ବିକ୍ରୀ ଲାଭରୁ ୨,୫୦୦ ଟଙ୍କା ପ୍ରଥମ ଗାଈ ପାଇଁ ଋଣ ଶୁଝାଗଲା ୧୭-୧୨-୮୨ ତାରିଖରେ । ନିଜ ଘର ଓ ଗୁହାଳ ତିଆରି ପାଇଁ ଖର୍ଚ୍ଚ କଲେ ୩,୮୦୦ ଟଙ୍କା । ଏଇ ଲାଭରୁ ୧,୭୦୦ ଟଙ୍କାର ଘର ଡିହଟିଏ କିଣିଲେ । ୨ଟି ଝିଅ ବିଭାଘରରେ ୫ ହଜାର ଟଙ୍କା ଖର୍ଚ୍ଚ ହେଲା । ଦୁଗ୍ଧ ବିକ୍ରୀ ଓ ଛଡ଼ା ବିକ୍ରୀ ଲାଭରୁ ୨ୟ ଗାଈ ଋଣ ବାବଦ ୧୫୦ ଟଙ୍କା ମଧ୍ୟ ଶୁଝା ହେଲଣି ଓ ପ୍ରାୟ ୫ ବର୍ଷ ପରିବାରଟି ତାଙ୍କର ସୁରୁଖୁରୁରେ ଚଳିଛନ୍ତି । ଆଉ ବାପ ପୁଅ ମୂଲ ଲାଗିବାକୁ ନଯାଇ ଗୋଖାଦ୍ୟ ବ୍ୟବସାୟ ପାଇଁ ୨ ହଜାର ଟଙ୍କା ଋଣ ନେଇ ବ୍ୟବସାୟ କରୁଛନ୍ତି ଓ ଏ ଋଣ ମଧ୍ୟ ଟ ୧,୬୬୮'୯୫ ପଇସା ଶୁଝାଗଲଣି । ପ୍ରକୃତରେ କହିବାକୁ ଗଲେ ଆଇ. ଆର. ଆର ଡି. ଯୋଜନାରେ ମନୁର ଭାଗ୍ୟ ବଦଳିଲା ।

## ସୁଖର ଝରଣା କୂଳେ

ଅନାଥିନୀ କୁମାରୀ ସଂଯୁକ୍ତାର ଜନ୍ମ ବରିଗୁମା ବ୍ଲକ୍ ଅନ୍ତର୍ଗତ ପଣ୍ଡିକୋଟା ଗ୍ରାମ ପଞ୍ଚାୟତର ପ୍ରଧାନିଗୋଡ଼ା ଗ୍ରାମରେ । ଜାତିରେ ସେ ଆଦିବାସୀ । ଜନ୍ମାକ୍ଷମ ଦୁଇର ନବନ



ଆଶାର ଆଲୋକ ଦେଖୁ କୁମାରୀ ସଂଯୁକ୍ତା

ଶ୍ରେଣୀର ଛାତ୍ରୀ ଥିଲାବେଳେ ତାର ପାଠ ପଢ଼ାରେ ଡୋରି ବନ୍ଧା ହେଲା । ଦୁଃଖର ହା ହୁତାଶ ମଧ୍ୟରେ କିପରି ଭାବରେ ନିଜର ଜୀବନ ବଞ୍ଚାଇବ ସେଥିପାଇଁ ସେ ସର୍ବଦା ଚିନ୍ତିତା । ସମୟତ ସବୁଦିନ ସମାନ ଯାଏନି । ସଂଯୁକ୍ତାର ମନରେ ଭଙ୍ଗିମାରେ ଅସୁମାରି ପ୍ରଶ୍ନ । ଏହି ସମୟରେ ସରକାରଙ୍କ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଦେଶରେ କାର୍ଯ୍ୟକାରୀ ହେଉଥାଏ ଏବଂ ସଂଯୁକ୍ତାକୁ ଉପରୋକ୍ତ ଯୋଜନା ମାଧ୍ୟମରେ ବ୍ଲକ୍ ତରଫରୁ ୧୯.୧.୮୩ରେ ୨୦୦୦ ଟଙ୍କା ମୂଲ୍ୟର ଏକ ଉନ୍ନତ ଦୁଧିଆଳୀ ଗାଈ ଯୋଗାଇ ଦିଆଗଲା । ଛଅ ଲିଟର କ୍ଷୀର ଦେଉଥିବା ଗାଈ ହିଁ ତା'ପାଇଁ ଥିଲା ଏକମାତ୍ର ସମ୍ବଳ । ସେ ପ୍ରତ୍ୟେକ ଦିନ ଟଙ୍କର ଦାନା କିଣି ଗାଈକୁ ଖୁଆଇ ଗାଈର ଉତ୍ତମରୂପେ ଯତ୍ନ ନିଏ ଓ ଅବଶିଷ୍ଟ କ୍ଷୀରକୁ ନିକଟତମ ବଜାରରେ ବିକ୍ରୀ କରି ପାଏ ପ୍ରତ୍ୟେକ ଦିନ ୧୫ଟଙ୍କା । ନିଜର ଆବଶ୍ୟକ ଖର୍ଚ୍ଚ ତୁଲାଇ ଏ ମଧ୍ୟରେ ସେ ୬,୦୦୦ ଟଙ୍କାର ଋଣ ପରିଶୋଧ କରିସାରିଛି । ସଞ୍ଚୟ କରିବା ଅଭ୍ୟାସରେ କୁମାରୀ ସଂଯୁକ୍ତା କିଛି ମଧ୍ୟ ଭବିଷ୍ୟତ ପାଇଁ ଜମା ରଖୁଛି । ନୈରାଶ୍ୟ ରୂପକ କାଳିମାର ଘନ ଅନ୍ଧକାର ଆଜି ତା ମନରୁ ଅପସରି ଯାଇଛି । ନୂତନ ଆଶାର ଆଲୋକ ନେଇ ସେ ଆଜି କର୍ମ ତତ୍ପର । ଗାଈ ହିଁ ତାର ଅନ୍ନଦାତ୍ରୀ ବୋଲି ସେ ଭାବେ । ନିଜର କୃତଜ୍ଞତା ପ୍ରକାଶ କରିବାକୁ ଯାଇ କୁମାରୀ ସଂଯୁକ୍ତା କୁହନ୍ତି ଯେ, ସରକାରଙ୍କ ଉପରୋକ୍ତ ଯୋଜନା ହିଁ ତାକୁ ଆଜି ଏହି ସମାଜରେ ନିଜର ଗୋଡ଼ ସିଧାକରି ଠିଆ ହେବାରେ ସାହାଯ୍ୟ କରିଛି ।

## ରାମିଆଳରେ ଫଳ ବୃକ୍ଷ

ମେଘ ମେଦୁରିତ ଆକାଶତଳେ ଦିଗନ୍ତଘେରା ପାହାଡ଼ର ଘୁମନ୍ତ ପରିବେଶ ମଧ୍ୟରେ ଦଣ୍ଡାଧାରଠାରେ ରାମିଆଳ ଜଳସେଚନ ଯୋଜନାର ବନ୍ଧ ସଦା ଜାଗ୍ରତ ପ୍ରହରୀ ଭଳି ତାର ବିସ୍ତୀର୍ଣ୍ଣ ଜଳରାଶିକୁ ଧରିରଖି ମଥା ଟେକିଛି ଯାହାକି ସେ ଅଞ୍ଚଳର ୧୩,୦୦୦ଏକର ଜମିରେ ଜଳ ଯୋଗାଇବାର ନିର୍ଭର ପ୍ରତିଶ୍ରୁତି ବହନ କରିଛି । ବନ୍ଧର ବାମ ଦିଗରେ ତାର ବାମ କେନାଲ ଲମ୍ବି ଯାଇଛି ଯେମିତି ଦୁଇ ପାହାଡ଼କୁ ଚିରି ଦୂରକୁ, ବହୁତ ଦୂରକୁ.......... । ସେହି କେନାଲର ଦୁଇ କୂଳରେ ସବୁଜ ପତ୍ରର ନାରିକେଳ ବୃକ୍ଷର ଦୁଇଟି ବର୍ଷର ଅନୁଭୂତିରେ ଖେଳି ଉଠୁଛି ଏହି ବଣ ପାହାଡ଼ଅଞ୍ଚଳର ଦିଗନ୍ତ ବିସ୍ତାରୀ ସବୁଜ ଉତ୍ସବ । ତାରି ମାଧ୍ୟମରେ ଏଇଠି ପଦଚିହ୍ନ ସାରା ଦେଶରେ ଅର୍ଥନୈତିକ ସ୍ତରରେ ଚହଳ ପକାଇଥିବା ପ୍ରଧାନମନ୍ତ୍ରୀଙ୍କ ବିଂଶସୂତ୍ରୀ କାର୍ଯ୍ୟକ୍ରମର, ଆଉ ଏ ହେଉଛି ତାର ସଫଳ ରୂପାୟନର ଅଂଶବିଶେଷ । ପାହାଡ଼ ତଳେ ତଳେ ଘଂଚ ଲମ୍ବ ଲମ୍ବ ଶାଳ ମହୁଲ ବୃକ୍ଷରାଜିର ଅନତି ଦୂରରେ ଏହି କେନାଲ କଡ଼ରେ ସହସ୍ରାଧିକ ନଡ଼ିଆ ଗଛର ଦୃଶ୍ୟ—ଅତୀବ ମନୋରମ—ଏଠାକୁ ଦର୍ଶକ ଆସନ୍ତି—କର୍ମଚାରୀ ଆସନ୍ତି, ଆସନ୍ତି ଆଦିବାସୀ ଯେଉଁମାନେ ପୁରୁଷ ପୁରୁଷ ନିଜକୁ ହଜାଇ ନେଇଛନ୍ତି ଏହାରି ଭିତରେ । ସପ୍ତାହର ହାଟ ପାଳିରେ ଏହି ବନ୍ଧ ତଳର ହାଟକୁ ସେ ଆସେ—ହାଟ ଶେଷରେ ତାର ଚିରାଚରିତ ସେହି ପ୍ରିୟ ହାଣ୍ଡିଆ ଠୋପାଏ



(ଦଣ୍ଡାଧାର କେନାଲ କୂଳେ କୂଳେ ଧାଡ଼ି ଧାଡ଼ି ନଡ଼ିଆ ଗଛ)

ପିଇନେଇ ସେହି ନିଶାରେ ଦୃଷ୍ଟି ନିକ୍ଷେପ କରେ ସେହି ନାରିକେଳ ବୃକ୍ଷଗୁଡ଼ିକୁ । ସେ କଣ ଜାଣି ପାରେ ତାରି ପାଇଁ ତାରି ଜାତି ପାଇଁ ତାର ପୁରୁଷ ପୁରୁଷ ପତିତ ସଭ୍ୟତାର ଉତ୍ଥାନ ପାଇଁ ଯେଉଁ କାର୍ଯ୍ୟକ୍ରମ ଦେଶ ସାରା ବିଛେଇ ହୋଇ ପଡ଼ୁଛି ତାରି କୁଆରର ଗୋଟିଏ ଉର୍ମି ଆଜି ଖେଳି ବୁଲୁଛି ଦଣ୍ଡାଧାର ଏହି ଯୋଜନା ଅଞ୍ଚଳରେ ।

ବିଶେଷଜ୍ଞଙ୍କ ଭାଷାରେ ଏହି ଦଣ୍ଡାଧାର ଯୋଜନା ଅଞ୍ଚଳରେ ଗତ ୧୯୮୩-୮୪ ବର୍ଷରେ ମୋଟ ପାଞ୍ଚ ହଜାର ଚାରା ଗଛ ଲଗାଯାଇ ତାର ବିହିତ ରକ୍ଷଣାବେକ୍ଷଣର ବ୍ୟବସ୍ଥା କରାଯାଇଛି । ଏହା ସରକାରୀ ଯୋଜନାର ଗ୍ରାମ୍ୟ ଅର୍ଥନୈତିକ ଉତ୍ଥାନ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ । ଏହି ଭିତ୍ତିରେ କାମାକ୍ଷାନଗର ଅନୁବିଭାଗୀୟ ୪ ଗୋଟି ବ୍ଲକ ଅଞ୍ଚଳର ନାମମାତ୍ର ଚାଷୀ ଓ କ୍ଷୁଦ୍ର ଚାଷୀମାନଙ୍କୁ ୧୯୮୩-୮୪ ଆର୍ଥିକ ବର୍ଷରେ ଆମ୍ବ ପିଜୁଳି ପ୍ରଭୃତି କଲମୀ ଓ ନଡ଼ିଆ ଫଳଚାରା ବଣ୍ଟନ କରାଯାଇ ଚାଷୀ ମାନଙ୍କୁ ଫଳଚାରା ସମ୍ପର୍କରେ ଅବହିତ କରାଯାଇଛି । ଏହାଦ୍ୱାରା ୯୨୬ ଜଣ ଆଦିବାସୀ, ହରିଜନ ଏବଂ ଅନ୍ୟାନ୍ୟ ନାମମାତ୍ର ଚାଷୀମାନଙ୍କୁ ମୋଟ ୧୪,୨୬୯ ଗୋଟି ଫଳଗଛ ଯୋଗାଇ ଦିଆଯାଇଛି । ଏହାର ପରବର୍ତ୍ତୀ ୮୪-୮୫ ବର୍ଷରେ ଏହି ଯୋଜନାରେ ୮୮୦ ଜଣ ଆଦିବାସୀ, ହରିଜନ ଓ ଅନ୍ୟାନ୍ୟ ନାମମାତ୍ର ଚାଷୀମାନଙ୍କୁ ୩୨,୮୬୯ ଫଳଗଛ ବଣ୍ଟନ କରାଯାଇଛି ।

ବନମହୋତ୍ସବ କାର୍ଯ୍ୟକ୍ରମ ମାଧ୍ୟମରେ ଏହି ବିଭାଗ ପକ୍ଷରୁ ସମଗ୍ର ଅନୁବିଭାଗରେ ୮୪-୮୫ ଆର୍ଥିକ ବର୍ଷରେ



(ଦଣ୍ଡାଧାର କେନାଲ କୂଳରେ ନଡ଼ିଆ ଗଛର ଉଦ୍ୟାନ)

ପଟଙ୍ଗୀ ବ୍ଲକର ଦଦରାଘାଟି ଏବଂ ମେଣ୍ଡାପଦା ଜଳସେଚନ ଯୋଜନା କେନାଲ ବନ୍ଧରେ ଅନୁରୂପ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ନଡ଼ିଆ ଚାରା ଗଛ ନିର୍ଦ୍ଦିଷ୍ଟ ବର୍ଷରେ ଲଗାଯାଇ ତାର ଦାୟିତ୍ୱ ଗ୍ରହଣ କରାଯାଇଛି । ଏତଦ୍ ବ୍ୟତୀତ ପ୍ରଧାନମନ୍ତ୍ରୀଙ୍କର ବିଂଶସୂତ୍ର କାର୍ଯ୍ୟକ୍ରମ ମାଧ୍ୟମରେ ୬୫୭ ଏବଂ ଚଳିତ ଆର୍ଥିକ ବର୍ଷରେ ୫,୩୧୦ ବିଭିନ୍ନ ପ୍ରକାର ଫଳଗଛ ବିଭିନ୍ନ ଅନୁଷ୍ଠାନର ସହଯୋଗରେ ରୋପଣ କରାଯାଇଅଛି । ପୁଣି ଜାତୀୟ କର୍ମଯୋଗାଣ ମାଧ୍ୟମରେ ଚାରା ଉତ୍ପାଦନ ଏବଂ ଯୋଗାଣ କାର୍ଯ୍ୟକ୍ରମ ପାଇଁ ବିଭାଗୀୟ ତତ୍ପରତା ଦେଖା ଦେଇଛି ।

୮୩-୮୪ ଆର୍ଥିକ ବର୍ଷରେ କାମାକ୍ଷାନଗରଠାରେ ଏକ ବିହନ ବିକ୍ରୟ କେନ୍ଦ୍ର ଜନସାଧାରଣଙ୍କ ପାଇଁ ଖୋଲାଯାଇ ଚାଷୀମାନଙ୍କ ପାଇଁ ଉନ୍ନତ ଧରଣର ପନିପରିବା ବିହନ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ଏବଂ ଚଳିତ ଆର୍ଥିକ ବର୍ଷରେ କାମାକ୍ଷାନଗର ଅନୁବିଭାଗର ହରିଜନ ପରିବାରର ଲୋକମାନଙ୍କୁ ଉନ୍ନତ ଧରଣର ଫଳଗଛ ଯୋଗାଇ ୫୦୦ ପରିବାର ଉପକୃତ ହେବାର ଯୋଜନା ହାତକୁ ନିଆଯାଇଛି ।

କ୍ରମେ ଜନସାଧାରଣଙ୍କ ମନରେ ଫଳବୃକ୍ଷ ପ୍ରତି ଯେଉଁ ଅଭୁତପୂର୍ବ ଉତ୍ସାହ ପରିଲକ୍ଷିତ ହେଉଛି ତାହା ଏହି କାର୍ଯ୍ୟକ୍ରମର ସଫଳତାର ସୂଚନା ଦିଏ । କାମାକ୍ଷାନଗର ଅନୁବିଭାଗର ୪ ଗୋଟି ବ୍ଲକ ଅଞ୍ଚଳରେ କ୍ଷେତ ଜମି ରୂପେ ଗ୍ରାମ୍ୟ ଭୂମି ଓ ଜଙ୍ଗଲ ଭୂମି ଅଞ୍ଚଳରେ ଫଳବୃକ୍ଷ ଉପଯୋଗୀ ଜମିକୁ ପଡ଼ିଆ ନରଖି ସଚେତନ ଚାଷୀମାନଙ୍କ ଦ୍ୱାରା ଫଳବୃକ୍ଷ ପାଇଁ ବ୍ୟବହାର କରାଗଲେ ଏ ଅଞ୍ଚଳର ଅର୍ଥନୈତିକ ମାନ ମୋଟରେ ବୃଦ୍ଧି ପାଇବ ଏଥିରେ ଦ୍ୱିରୁକ୍ତି ନାହିଁ ।

## ଏ କାହାଣୀ ହରି ସେଠୀର

ଦିନ ମଜୁରିଆ ହରି ସେଠୀ, ଘର ଢେଙ୍କାବିଣ ବ୍ଲକର କୃଷ୍ଣପୁର ଗ୍ରାମରେ । ଆଜନ୍ମ ଦୁଃଖ ମଧ୍ୟରେ ଯୌବନ ଅବସ୍ଥା ଅତିକ୍ରମ କରି ଆଜି ୪୨ ବର୍ଷରେ ପଦାର୍ପଣ କରିଛି କୁଳବେଉସା ବ୍ୟତୀତ କାଠ ହଣା, କ୍ଷେତବାଡ଼ିରେ ମଜୁରୀ ଲାଗି ବଡ଼ କଷ୍ଟରେ ପିଲାପିଲିଙ୍କୁ ବଞ୍ଚାଇ ରଖିଛି । ମାତ୍ର ଦରଦାମ ବୃଦ୍ଧିଯୋଗୁଁ ପରିବାରର ଆବଶ୍ୟକତା ବୃଦ୍ଧିରେ ଜୀବନର ଚରମ ବିପର୍ଯ୍ୟସ୍ତ ବେଳାରେ ଭଗବାନ ତାର ସହାୟ ହୁଅନ୍ତି । ହରି ସେଠିର ନାଁ ଗ୍ରାମର ୧୦ ଗୋଟି ଦରିଦ୍ରତମ ପରିବାର ତାଲିକାରେ ସ୍ଥାନପାଇଲା । ପଞ୍ଚୁପାଣ୍ଡବ ଗ୍ରାମ୍ୟ ବ୍ୟାଙ୍କ ତରଫରୁ ହରି ୫ ହଜାର ଟଙ୍କା ମୂଲ୍ୟର ଗୋଟିଏ ଶଗଡ଼ ଓ ହଳେ ବଳଦ ପାଇଲା ।

ଆଜି ହରି ସେଠୀ ଜୀବନ ଯାପନର ନୂତନ ଆଲୋକ ପାଇ ପାରିଛି । ଦୈନିକ ଟ ୨୦,୦୦ରୁ ଟ ୩୦'୦୦ ରୋଜଗାର କରି ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣ କରି ପାରୁଛି । ସହାୟକ ପଞ୍ଚୁପାଣ୍ଡବ ଗ୍ରାମ୍ୟବ୍ୟାଙ୍କ ଢେଙ୍କାବିଣ୍ ଗୋଷ୍ଠୀ ଉନ୍ନୟନ ଅଧିକାରୀ ତଥା ଗ୍ରାମାଞ୍ଚଳ ଦରିଦ୍ରତମ ପରିବାରର ଅର୍ଥନୈତିକ ଅଭ୍ୟୁତ୍ଥାନ କାର୍ଯ୍ୟକ୍ରମ ଯୋଜନା ମାଧ୍ୟମରେ ହରି ସେଠୀର ବିଗତ ଜୀବନର ସମସ୍ତ ଦୁଃଖ ଦୂରୀଭୂତ ହୋଇପାରିଛି ବୋଲି ସେ କହେ ଓ ଶଗଡ଼ ଉପରେ ମନମତାଣିଆ ସ୍ୱର ତୋଳେ ।



ଜୀବନରେ ମନ ମତାଣିଆ ସ୍ୱରରେ - ହରି ସେଠୀ
( ଶ୍ରମ ଦେବ ଲକ୍ଷଣ ..... .. )

# ପ୍ରଗତି ପ୍ରସଙ୍ଗ

## କେନ୍ଦ୍ର ସରକାରଙ୍କଠାରୁ ୨୧୩କୋଟି, ୬୯ଲକ୍ଷ ଟଙ୍କା ଋଣ

୭ମ ଯୋଜନା କାଳରେ ଅଭିବୃଦ୍ଧି ହାର ଶତକଡ଼ା ୫ଭାଗ ହାସଲ କରିବା ନିମନ୍ତେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଗୁରୁତ୍ୱ ଆରୋପ କରିଥିବାରୁ ଯୋଜନା ଅଟକଳର ସମ୍ବଳ ଭରଣା କରିବା ନିମନ୍ତେ ସ୍ୱଳ୍ପ ସଂଚୟ କାର୍ଯ୍ୟକ୍ରମକୁ ଅଧିକ ତ୍ୱରାନ୍ୱିତ କରିବା ଏକ ଜାତୀୟ ଆବଶ୍ୟକତାବୋଲି ରାଜ୍ୟ ଅର୍ଥମନ୍ତ୍ରୀ ଶ୍ରୀ ଗଂଗାଧର ମହାପାତ୍ର ପ୍ରକାଶ କରିଛନ୍ତି ।

ଗତ ଅକ୍ଟୋବର ୧୧ ତାରିଖ ଦିନ ସଚିବାଳୟଠାରେ ପୁନର୍ଗଠିତ ରାଜ୍ୟସ୍ତରୀୟ ଜାତୀୟ ସଂଚୟ ଉପଦେଷ୍ଟା ବୋର୍ଡର ପ୍ରଥମବୈଠକ ଅର୍ଥମନ୍ତ୍ରୀଂକ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି । ଏହାକୁ ଉଦ୍‌ଘାଟନ କରି ଶ୍ରୀ ମହାପାତ୍ର କହିଲେ ଯେ ସ୍ୱଳ୍ପ ସଂଚୟ ବାବଦରେ ସଂଗୃହୀତ ନିଟ୍ ଅର୍ଥର ଦୁଇ ତୃତୀୟାଂଶ ଋଣ ଆକାରରେ ଆମ ରାଜ୍ୟର ବିଭିନ୍ନ ଉନ୍ନୟନମୂଳକ ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରିବାପାଇଁ ସାହାଯ୍ୟ ମିଳିଛି । ବର୍ଷ ବର୍ଷଧରି ଆମ ସମ୍ବଳର ନିଅଣ୍ଟିଆ ପରିସ୍ଥିତିକୁ ଭରଣା କରିବାପାଇଁ ସ୍ୱଳ୍ପ ସଂଚୟ ଆମକୁ ଯଥେଷ୍ଟ ସାହାଯ୍ୟ କରିଛି ।

ଷଷ୍ଠ ଯୋଜନାରେ ଆମ ରାଜ୍ୟ ଭାରତ ସରକାରଂକଠାରୁ ଋଣ ଆକାରରେ ୯୦କୋଟି ୮୯ଲକ୍ଷ ଟଂକା ପାଇଥିବା ସଂଗେ ସଂଗେ ସପ୍ତମ ଯୋଜନାରେ ଏ ବାବଦରେ ୨୧୩କୋଟି ୬୯ଲକ୍ଷ ଟଂକା ପାଇବ ବୋଲି ଅଟକଳ କରାଯାଇଥିବା କଥା ଅର୍ଥମନ୍ତ୍ରୀ ପ୍ରକାଶ କରିଥିଲେ ।

ଗ୍ରାମାଂଚଳରେ କ୍ରମଶଃ ଉଲ୍ଲେଖଯୋଗ୍ୟ ଭାବେ ଅର୍ଥ ବିନିଯୋଗ ବୃଦ୍ଧି ପାଉଥିବାରୁ ଏବଂ କୃଷିପାଇଁ ଆୟକର ପଡୁନଥିବା ଦୃଷ୍ଟିରୁ ସେଠାରେ ସଂଚୟ ବୃଦ୍ଧିର ଯଥେଷ୍ଟ ସମ୍ଭାବନା ରହିଛି । ଏ କ୍ଷେତ୍ରରେ ସଂଚୟ ସଂଗ୍ରହର ଅଭିବୃଦ୍ଧି ପାଇଁ ଆବଶ୍ୟକ ପଦକ୍ଷେପ ନିଆଯିବାପାଇଁ ଶ୍ରୀ ମହାପାତ୍ର ଗୁରୁତ୍ୱ ଆରୋପ କରିଥିଲେ । ସଂଚୟ ଯୋଜନାକୁ ଯେପରି ସବୁସ୍ତରରେ ଫଳପ୍ରଦଭାବେ ପ୍ରସାର କରାଯାଇ ଏହି କ୍ଷେତ୍ରରେ ଆମ ରାଜ୍ୟ ଦେଶରେ ଅଗ୍ରଣୀ ହୋଇପାରିବ, ସେଥିପାଇଁ ସେ ବୋର୍ଡର ସବୁ ସଭ୍ୟଂକ ସହଯୋଗ କାମନା କରିଥିଲେ ।

ସମୀକ୍ଷାରୁ ପ୍ରକାଶ ପାଇଛି ଯେ ଚଳିତବର୍ଷ ରାଜ୍ୟ ସଂଚୟ ଯୋଜନାରେ ୬୦କୋଟି ଟଂକା ସଂଗ୍ରହ କରିବାପାଇଁ ଲକ୍ଷ୍ୟ ଧାର୍ଯ୍ୟଥିବା ସ୍ଥଳେ ଗତ ଅଗଷ୍ଟ ମାସ ଶେଷସୁଦ୍ଧା ୧୪କୋଟି ୩୭ଲକ୍ଷ ୧୭ ହଜାର ଟଂକା ସଂଗୃହୀତ ହୋଇଛି । ତନ୍ମଧ୍ୟରୁ କେଂନ୍ଦ୍ରାଂଚଳ ରାଜସ୍ୱ ଡ଼ିଭିଜନ୍‌ରେ ୬କୋଟି ୫୮ଲକ୍ଷ ୪୨ହଜାର ଟଂକା, ଉତ୍ତରାଂଚଳ ରାଜସ୍ୱ ଡ଼ିଭିଜନ୍‌ରେ ୩ କୋଟି ୭୧ଲକ୍ଷ ୧୯ ହଜାର ଟଂକା ଓ ଦକ୍ଷିଣାଂଚଳ ରାଜସ୍ୱ ଡ଼ିଭିଜନ୍‌ରେ ୪କୋଟି ୭ଲକ୍ଷ ୫୬ ହଜାର ଟଂକା ସଂଗୃହୀତ ହୋଇଛି ।

ଏହି ବୈଠକରେ ଅନ୍ୟମାନଂକ ମଧ୍ୟରେ ପୂର୍ବତନ ଅର୍ଥମନ୍ତ୍ରୀ ଶ୍ରୀ ରଘୁନାଥ ପଟ୍ଟନାୟକ ଓ ସର୍ବଶ୍ରୀ ଭବାନୀ ଚରଣ ପଟ୍ଟନାୟକ, ଅଶ୍ୱିନୀ ଗୁରୁ, ନାରାୟଣ ରଥ, ପ୍ରଫୁଲ୍ଲ ମହାନ୍ତି, ଉମାବଲ୍ଲଭ ମହାପାତ୍ର, ଚଂଦ୍ରଶେଖର ମହାପାତ୍ର, ସୋମନାଥ ମିଶ୍ରଂକ ସମେତ ଅର୍ଥ ବିଭାଗର ଅତିରିକ୍ତ ଶାସନ ସଚିବ ଶ୍ରୀ ସଂଜୀବ ହୋତା, ରାଜ୍ୟ ପୋଷ୍ଟ ମାଷ୍ଟର ଜେନେରାଲ ଓ ଭାରତ ସରକାରଂକ ଜାତୀୟ ସଂଚୟ ବିଭାଗର ଆଂଚଳିକ ନିର୍ଦ୍ଦେଶକ ପ୍ରମୁଖ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## କ୍ଷୁଦ୍ର ଓ କୁଟୀର ଶିଳ୍ପ ଜରଆଡରେ

ଚଳିତ ବର୍ଷର ପ୍ରଥମ ୫ ମାସ ମଧ୍ୟରେ ବଲାଙ୍ଗୀର ଜିଲ୍ଲାରେ ୯୬୫ଟି କୁଟୀର ଶିଳ୍ପ ଏବଂ ୫୭ଟି କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରାଯାଇ ସେଗୁଡ଼ିକରେ ୨,୦୧୩ ଜଣ ବ୍ୟକ୍ତିଂକପାଇଁ ନିଯୁକ୍ତି ସୁବିଧା ଯୋଗାଇ ଦିଆଯାଇଛି । କୁଟୀର ଶିଳ୍ପପାଇଁ ୧୪ଲକ୍ଷ ୩୮ ହଜାର ଟଂକା ଏବଂ କ୍ଷୁଦ୍ର ଶିଳ୍ପପାଇଁ ୫୧ଲକ୍ଷ ୨୭ ହଜାର ଟଂକା ବିନିଯୋଗ କରାଯାଇଛି ।

ଚଳିତବର୍ଷ ରାଜ୍ୟରେ ୬୯ ହଜାର କୁଟୀର ଶିଳ୍ପ ଏବଂ ୩,୩୦୦ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

## ଗୋଡି ଶ୍ରମିକ ଥଇଥାନ

ରାଜ୍ୟରେ ଗୋଡି ଶ୍ରମିକଂକ ଥଇଥାନ କାର୍ଯ୍ୟକ୍ରମର ଆରମ୍ଭରୁ ଚଳିତ ଆର୍ଥିକ ବର୍ଷର ଅଗଷ୍ଟ ଶେଷ ସୁଦ୍ଧା ସୁନ୍ଦରଗଡ଼ ଜିଲ୍ଲାରେ ୧,୬୪୫ ଜଣ ଗୋଡି ଶ୍ରମିକଂକୁ ଥଇଥାନ କରାଯାଇଛି । ସେମାନଂକ ମଧ୍ୟରେ ୩୨୫ଜଣ ତଫସିଲଭୁକ୍ତ ଜାତି ଓ ୯୭୩ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଚଳିତ ଆର୍ଥିକ ବର୍ଷର ଅଗଷ୍ଟ ଶେଷସୁଦ୍ଧା ଜିଲ୍ଲାରେ ୪ଜଣ ତଫସିଲଭୁକ୍ତ ଜାତି ଓ ୩୩ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକଂକ ସମେତ ମୋଟ୍ ୪୧ଜଣ ଏପରି ଶ୍ରମିକଂକୁ ଥଇଥାନ କରାଯାଇଛି ।

## ବାସହୀନଙ୍କୁ ଘରଡିହ

ସଂପ୍ରତି ଜଳସେଚନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମୋହନ ନାଗ୍ ସମ୍ବଲପୁର ଜିଲ୍ଲାର ବ୍ୟାପକ ଅଂଚଳ ଗସ୍ତକରି ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ଗତ ଅକ୍ଟୋବର୨ ତାରିଖଦିନ ଶ୍ରୀ ନାଗ୍ ବରପାଲି ନିକଟସ୍ଥ ଲେଣ୍ଡାଗ୍ରାମ ମାଇନର ସ୍କୁଲର ନବନିର୍ମିତ ଗୃହ ଉଦ୍ଘାଟନ କରିଥିଲେ । ସେଠାରେ ଆୟୋଜିତ ଏକ ସାଧାରଣ ସଭାରେ ଉଦ୍ବୋଧନ ଦେଇ ସ୍ଥାନୀୟ ଅଂଚଳର ବାଳକ ବାଳିକାମାନେ ଅଧିକ ସଂଖ୍ୟାରେ ଅଧ୍ୟୟନ କରିବା ପାଇଁ ସେ ପରାମର୍ଶ ଦେଇଥିଲେ । ସେଦିନ ସେ ବରପାଲିଠାରେ ଏକ ସାଧାରଣ ସଭାରେ ଯୋଗଦେଇ ୧୦ ଜଣ ଗୋଡି ଶ୍ରମିକଂକୁ ୪ ହଜାର ଟଂକା ଲେଖାଏଁ ଆର୍ଥିକ ସାହାଯ୍ୟ ଦେଇଥିଲେ । ଏହା ବ୍ୟତୀତ ୭୯ଜଣ ତାଲିମପ୍ରାପ୍ତ ବୁଣାକାରଂକୁ ୭୫୦ ଟଂକା ଲେଖାଏଁ ମୂଲ୍ୟର ଜିନିଷପତ୍ର ଓ ଉପକରଣ ବଣ୍ଟନ କରିଥିଲେ ।

୧୧ ତାରିଖଦିନ ଅମ୍ବାଭୋନାଠାରେ ଶ୍ରୀ ନାଗ୍ ୩୬ଜଣ ଗୃହହୀନ ବ୍ୟକ୍ତିଂକୁ ଘରଡ଼ିହ ପଟ୍ଟା ବଣ୍ଟନ କରିଥିଲେ । ସେଦିନ କୁଆରି, ବେନିଆପାଲି, ଅଲେଖପୁର ଓ କପାସିରା ଗ୍ରାମରେ କଲେଜ ଛାତ୍ର-ଛାତ୍ରୀମାନଂକ ଦ୍ୱାରା ଆୟୋଜିତ ସେବା ଶିବିର ଉଦ୍ଘାଟନ କରିଥିଲେ । ସେଠାରେ ଗ୍ରାମବାସୀଂକୁ ଉଦ୍ବୋଧନଦେଇ ଜାତୀୟ ଏକତା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

୧୨ ତାରିଖଦିନ ଶ୍ରୀ ନାଗ୍ ଆଳିପାଲି, ଅତ୍ତାଗାଁ, ଜାମୁଡ଼ୋଲ ଓ ଭେଡ଼େନଗ୍ରାମ ପରିଦର୍ଶନକରି ଭେଡ଼େନ୍ଠାରେ ୧୩ ଜଣ ବିକଳାଂଗ ବ୍ୟକ୍ତିଂକୁ ସେମାନଂକର ମାସିକ ଭତ୍ତା ପ୍ରଦାନ କରିଥିଲେ । ସେଠାରେ ଜନସାଧାରଣଂକୁ ଉଦ୍ବୋଧନଦେଇ ସେ କହିଲେ ଯେ ଦାରିଦ୍ର୍ୟ ବିଲୋପପାଇଁ ସରକାର ଯେଉଁସବୁ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି, ସେଗୁଡ଼ିକୁ ଯଥାଯଥ ଭାବରେ ସଂପାଦନ କରିବାପାଇଁ ଜନସାଧାରଣଂକର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଯେଉଁମାନଂକୁ ବିଭିନ୍ନ କାର୍ଯ୍ୟକ୍ରମପାଇଁ ଋଣ ଦିଆଯାଉଛି, ସେମାନେ ଠିକ୍ ସମୟରେ ଋଣ ପରିଶୋଧ କରିବା ଆବଶ୍ୟକବୋଲି ସେ କହିଥିଲେ । ଏହାପରେ ସେ ତାଳମେଣ୍ଡା ମଧ୍ୟଇଂରାଜୀ ବିଦ୍ୟାଳୟଠାରେ ୧୨୮ ଜଣ ଭୂମିହୀନଂକୁ ଘରଡ଼ିହ ପଟ୍ଟା ବଣ୍ଟନ କରିଥିଲେ । ଗ୍ରାମାଂଚଳରେ ରହି ଜନସାଧାରଣ ନିଜର ତଥା ଗ୍ରାମାଂଚଳର ଉନ୍ନତି କରିପାରିଲେ, ସେମାନଂକୁ ସହରାଭିମୁଖୀ ହେବାକୁ ପଡ଼ିବନାହିଁ ବୋଲି ସେ ପ୍ରକାଶ କରିଥିଲେ । ସେଦିନ ସେ ସମ୍ବଲପୁର ଟାଉନ୍ ମ୍ୟୁନିସପାଲ ହଲ୍ଠାରେ ସ୍ୱର୍ଗତ ଇଂଜିନିୟର ସୁରେଶ ତ୍ରିପାଠୀଂକ 'ସ୍ମୃତି ବନ୍ଦ୍ରତାମାଳା' ଉତ୍ସବରେ ମୁଖ୍ୟ ଅତିଥିଭାବେ ଯୋଗଦେଇ ଉଦ୍ବୋଧନ ଦେଇଥିଲେ ।

## ପଲ୍ଲୀ ବସ୍ତ୍ର କାର୍ଯ୍ୟକ୍ରମ

ଗ୍ରାମ୍ୟ ମହିଳାମାନଂକପାଇଁ ନିଯୁକ୍ତି କାର୍ଯ୍ୟକ୍ରମରେ ସୁନ୍ଦରଗଡ଼ ଜିଲ୍ଲା ଶିଳ୍ପ କେନ୍ଦ୍ର ଜରିଆରେ ସଂପ୍ରତି ୪ଗୋଟି ପଲ୍ଲୀ ବସ୍ତ୍ର କେନ୍ଦ୍ର କାର୍ଯ୍ୟ କରୁଛି । ଜିଲ୍ଲା ସଦର ସବ୍ଡିଭିଜନ ଅନ୍ତର୍ଗତ ଟାଂଗର ପାଲ୍ଲୀ ବ୍ଲକ୍ର ମଂଗସପୁର, ହେମଗିରି ବ୍ଲକର ଗୋପାଳପୁର, ସଦର ବ୍ଲକ୍ର କୁଣ୍ଡୁକେଲ ଏବଂ ବଡ଼ଗାଁ ବ୍ଲକର ବଡ଼ଗାଁଠାରେ କାର୍ଯ୍ୟ କରୁଥିବା ଏହି ପଲ୍ଲୀ ବସ୍ତ୍ର କେନ୍ଦ୍ରଗୁଡ଼ିକ ଜରିଆରେ ମୋଟ୍ ୧୧୬ ଜଣ ଗ୍ରାମ୍ୟ ମହିଳାଂକୁ ନିଯୁକ୍ତି ଦିଆଯାଇ ପାରିଛି । ହିସାବରୁ ଜଣାଯାଇଛି ଯେ ବର୍ତ୍ତମାନ ସୁଦ୍ଧା ଏହି ୪ଗୋଟି କେନ୍ଦ୍ର ଜରିଆରେ ମୋଟ୍ ୨୦'୯୭ କୁଇଣ୍ଟାଲ ସୂତା ଉତ୍ପାଦନ କରାଯାଇ ଏଥିମଧ୍ୟରୁ ୧୮'୯୯ କୁଇଣ୍ଟାଲ ସୂତା ବିକ୍ରୀ କରାଯାଇ ପାରିଛି ।

ଚଳିତ ଆର୍ଥିକ ବର୍ଷରେ ଲେଫ୍ରିପଡ଼ା ବ୍ଲକ୍ର ଗଇନଗାଠାରେ ଆଉ ଗୋଟିଏ ପଲ୍ଲୀ ବସ୍ତ୍ର କେନ୍ଦ୍ର ବସାଇବା ପାଇଁ ଜିଲ୍ଲା ଶିଳ୍ପ କେନ୍ଦ୍ର ତରଫରୁ ମଂଜୁର କରାଯାଇଛି ।

## ବସ ଭଡ଼ା ବୃଦ୍ଧି

୧୯୮୧ ମସିହା ଜୁଲାଇ ମାସ ପହିଲାରୁ ବସ୍ ଭଡାର ସର୍ବାଧିକ ହାର କି: ମି: ପିଛା ଯାତ୍ରୀ ପ୍ରତି ମାମୁଲି ବସ୍ରେ ୬ ପଇସା, ଏକ୍ସପ୍ରେସ୍ ବସ୍ରେ ୭ ପଇସା ଏବଂ ଡିଲକ୍ସ ବସ୍ରେ ୯ ପଇସା ଧାର୍ଯ୍ୟ କରାଯାଇଥିଲା । ଏଥିରୁ ଜଣାଯାଏ ଯେ ଗତ ଚାରିବର୍ଷରୁ ଊର୍ଦ୍ଧ୍ୱ ସମୟ ମଧ୍ୟରେ ଓଡ଼ିଶାରେ ମାମୁଲି ଓ ଏକ୍ସପ୍ରେସ୍ ବସ୍ର ଭଡା ବୃଦ୍ଧି କରାଯାଇ ନଥିଲା, କିନ୍ତୁ ଏହି ସମୟ ମଧ୍ୟରେ ବସ୍ରେ ବ୍ୟବହୃତ ହେଉଥିବା ଜାଳେଣୀ ଓ ଅନ୍ୟାନ୍ୟ ଜିନିଷର ଦାମ୍ ତଥା କର୍ମଚାରୀଙ୍କ ବାବଦରେ ଯଥେଷ୍ଟ ଖର୍ଚ୍ଚ ବୃଦ୍ଧି ପାଇଛି । ତେଣୁ ବସ୍ ପରିଚାଳନା ଖର୍ଚ୍ଚ ବୃଦ୍ଧି ହେତୁ ପ୍ରଚଳିତ ବସ୍ଭଡା ହାରରେ ବସ୍ ଚଳାଚଳ କରିବା ଆଉ ସମ୍ଭବପର ହେଲାନାହିଁ ।

ଉପରୋକ୍ତ ସମସ୍ତ ବିଷୟ ବିଚାରକୁ ନେଇ ରାଜ୍ୟ ସରକାର ବସ୍ ଭଡାର ସର୍ବାଧିକ ହାର ନିମ୍ନଲିଖିତ ମତେ ୧୮-୧୦-୮୫ ତାରିଖରୁ ଧାର୍ଯ୍ୟକରି ରାଜ୍ୟ ପରିବହନ ପ୍ରାଧିକାରୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ପରିବର୍ତ୍ତିତ ବସ୍ ଭଡା ହାର ଉପରେ ପୂର୍ବଭଳି ଲାଗୁ ହେଉଥିବା ଯାତ୍ରୀ ଟିକସ ଆଉ ଦେବାକୁ ପଡିବ ନାହିଁ ।

(କିଲୋମିଟର ପିଛା ଯାତ୍ରୀ ପ୍ରତି)

| | |
|---|---|
| ମାମୁଲି ବସ୍ | ୧୦ ପଇସା |
| ଏକ୍ସପ୍ରେସ ବସ୍ | ୧୨ ପଇସା |
| ସୁପରଫାଷ୍ଟ ଏକ୍ସପ୍ରେସ ବସ୍ | ୧୪ ପଇସା |
| ଡିଲକ୍ସ ବସ୍ | ୧୬ ପଇସା |

## ଆନ୍ତଃରାଜ୍ୟ, ଖଡ଼ିଆଳ-ଅରଙ୍ଗ ରାସ୍ତା

କଳାହାଣ୍ଡି ଜିଲ୍ଲାର ଖଡ଼ିଆଳଠାରୁ ନୂଆପଡ଼ା ଦେଇ ମଧ୍ୟପ୍ରଦେଶର ଅରଙ୍ଗ ପର୍ଯ୍ୟନ୍ତ ଯାଇଥିବା ଆନ୍ତଃରାଜ୍ୟ ରାସ୍ତାର ଜୋମନା ନାଳ ଉପରେ ଏକ ଉଚ୍ଚ ସେତୁ ନିର୍ମାଣ କରାହେବ ।

ଏପରି ଏକ ଗୁରୁତ୍ୱପୂର୍ଣ୍ଣ ରାସ୍ତାକୁ ଜଂକ୍ ନଦୀ ବିଚ୍ଛିନ୍ନ କରୁଥିବାରୁ ସେହି ନଦୀ ଉପରେ ମଧ୍ୟ ଅନ୍ୟଏକ ଉଚ୍ଚସେତୁ ନିର୍ମାଣ କରାଯାଉଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଖଡ଼ିଆଳଠାରୁ ନୂଆପଡ଼ା ମଧ୍ୟବର୍ତ୍ତୀ ଏହି ରାସ୍ତାରେ ଯେଉଁ ୬ଟି ନାଳ ଅଛି, ସେଗୁଡ଼ିକ ଉପରେ ବର୍ତ୍ତମାନ ସଂକୀର୍ଣ୍ଣ ଓ ଅତି ଅଳ୍ପ ଉଚ୍ଚର 'କଜ୍‌ୱେ' ସବୁ ରହିଛି । ପ୍ରବଳ ବର୍ଷା ଓ ବନ୍ୟା ସମୟରେ ସେହି 'କଜ୍‌ୱେ' ସବୁ ଜଳମଗ୍ନ ହୋଇ ଯାଉଥିବାରୁ ସେଠାରେ କେତେକ ଦିନ ଯାନବାହନ ଚଳାଚଳ ବ୍ୟାହତ ହୋଇଯାଉଛି । ଏହା ବ୍ୟତୀତ ଦୈନନ୍ଦିନ ପ୍ରଶାସନିକ କାର୍ଯ୍ୟ ପରିଚାଳନା କରିବା ଏବଂ ରିଲିଫ୍ ସାମଗ୍ରୀସବୁ ପରିବହନ କରିବା କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି ହେଉଛି । ଏହିସବୁ ଅସୁବିଧା ଦୂର କରିବା ଏବଂ ବର୍ଷସାରା ଗମନାଗମନର ସୁବିଧା କରିବା ଉଦ୍ଦେଶ୍ୟରେ ସେହିସବୁ କଜ୍‌ୱେ ସ୍ଥାନରେ ୬ଟି ନୂତନ ଉଚ୍ଚସେତୁ ନିର୍ମାଣ କରିବା ଲାଗି ନୀତିଗତ ଭାବରେ ନିଷ୍ପତ୍ତି କରାଯାଇଛି । ଏହି ସବୁ ପ୍ରସ୍ତାବିତ ସେତୁର ନିର୍ମାଣ ପାଇଁ ପ୍ରାୟ ୧ କୋଟି ୧ ଲକ୍ଷ ଟଙ୍କା ବ୍ୟୟ ଅଟକଳ କରାଯାଇ ଏଗୁଡ଼ିକର ନିର୍ମାଣ କାର୍ଯ୍ୟ ଯଥାଶୀଘ୍ର ସଂପୂର୍ଣ୍ଣ କରିବା ପାଇଁ ଉଦ୍ୟମ ହେଉଛି ।

ପ୍ରସ୍ତାବିତ ଏହି ୬ଟି ସେତୁ, ନିର୍ମାଣାଧୀନ ଜଂକ୍ ସେତୁ ଓ ଜୋମନା ସେତୁର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହେଲେ ଭବାନୀପାଟଣାଠାରୁ ନୂଆପଡ଼ା ସବ୍‌ଡିଭିଜନ୍ ସଦର ମହକୁମା ଏବଂ ମଧ୍ୟପ୍ରଦେଶର ରାୟପୁର ପର୍ଯ୍ୟନ୍ତ ବର୍ଷସାରା ସୁବିଧାରେ ଯାତାୟତ କରିହେବ ।

ଦରଖାସ୍ତ ମିଳିଥିବା ପ୍ରତ୍ୟେକ ଶ୍ରେଣୀର ପ୍ରାର୍ଥୀମାନଙ୍କ ନାମ ତାଲିକାକୁ ପୃଥକ୍ ପୃଥକ୍ ରେଜିଷ୍ଟିଭୁକ୍ତ କରାଯାଇ ଲଟେରୀ ମାଧ୍ୟମରେ ଆବଣ୍ଟନ କରାଯିବ । ଉପରୋକ୍ତ ପ୍ରକାରେ ଆବଣ୍ଟନ ହେବା ପରେ ବଳକା ପ୍ରାର୍ଥୀମାନଙ୍କୁ ଅଟୋ ମୋବାଇଲ୍ ପ୍ରଡକ୍‌ଟସ୍ ଅଫ୍ ଇଣ୍ଡିଆ ଦ୍ୱାରା ପ୍ରସ୍ତୁତ ତନଚକିଆ ଅଟୋ ରିକ୍‌ସାର ତ୍ରୈମାସିକ କୋଟା ବା ଭାଗରୁ ମଞ୍ଜୁର କରାଯିବ । ଅଟୋ-ରିକ୍‌ସା ଚଳାଇବାର ବୈଧ ଲାଇସେନସ ନଥିବା ପ୍ରାର୍ଥୀଙ୍କ ବିଷୟ ବିଚାର କରାଯିବ ନାହିଁ ।

ଉପରଲିଖିତପ୍ରତ୍ୟେକ ପୋଷଣ ପ୍ରାଧିକାରୀ ଦରଖାସ୍ତ ପଠାଇଲା ବେଳେ ପ୍ରାର୍ଥୀଙ୍କ ବୈଧ ଲାଇସେନ୍‌ସର ଫଟୋ ନକଲ ପଠାଇବେ । ନିର୍ଦ୍ଦିଷ୍ଟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଗାଡ଼ିରୁ ପ୍ରାର୍ଥୀ ସଂଖ୍ୟା କମ୍ ହେଲେ ବଳକା ଗାଡ଼ି ଅନ୍ୟ ଶ୍ରେଣୀର ପ୍ରାର୍ଥୀମାନଙ୍କ ମଧ୍ୟରେ ଆବଣ୍ଟନ କରାଯିବ ।

## ବସ୍ତି ପରିବେଶ ଉନ୍ନୟନ ପାଇଁ

କଟକ, ପୁରୀ, ବ୍ରହ୍ମପୁର, ରାଯଗଡ଼ା ଓ ବାଲେଶ୍ୱର ପୌରାଞ୍ଚଳଗୁଡ଼ିକରେ ବାସ କରୁଥିବା ବସ୍ତି ବାସିନ୍ଦାଙ୍କର ପରିବେଶ ଉନ୍ନୟନ କରିବା ନିମନ୍ତେ ରାଜ୍ୟ ସରକାର ଚଳିତ ବର୍ଷ ୧୯ ଲକ୍ଷ ୧୫ ହଜାର ଟଙ୍କା ମଞ୍ଜୁର କରିଛନ୍ତି । ରାଜ୍ୟ ଯୋଜନା ସମ୍ବଳରୁ ଏହି ଅର୍ଥ ମଞ୍ଜୁର କରାଯାଇଛି । ଏହି ଅର୍ଥ ବିନିଯୋଗରେ ପାନୀୟ ଜଳ ଯୋଗାଣ ଓ ଆଲୋକ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ପକ୍କା ନର୍ଦ୍ଦମା, ରାସ୍ତା ଓ ସୁଲଭ ପାଇଖାନା ନିର୍ମାଣ କରାଯିବ । ଏତଦ୍ୱାରା ସେହିସବୁ ପୌରାଞ୍ଚଳର ସମୁଦାୟ ୭,୬୬୦ ଜଣ ବସ୍ତି ବାସିନ୍ଦା ଉପକୃତ ହୋଇ ପାରିବେ ।

## ବଜାଜ୍ ଅଟୋ-ରିକ୍‌ସା ବିକ୍ରୟ ପାଇଁ ସରକାରୀ ବ୍ୟବସ୍ଥା

ଭାରତ ସରକାରଙ୍କ ନିର୍ଦ୍ଦେଶକ୍ରମେ ପୁନେସ୍ଥିତ ବଜାଜ୍ ଅଟୋ ଲିମିଟେଡ୍‌ର ୧୨ଟି ତିନିଚକିଆ ଗାଡ଼ି ପ୍ରତି ତିନିମାସରେ ଥରେ ପରିବହନ କମିଶନରଙ୍କ ଦ୍ୱାରା ନିମ୍ନଲିଖିତମତେ ଆବଣ୍ଟନ ହେବ । ଆଗ୍ରହୀ ପ୍ରାର୍ଥୀମାନେ ସଂପୃକ୍ତ ସଂସ୍ଥାମାନଙ୍କ ଜରିଆରେ ଆବେଦନ କରିବେ ଓ ତାହା ପରିବହନ କମିଶନରଙ୍କ ଦପ୍ତରରେ ଜାନୁଆରୀ, ଅପ୍ରେଲ, ଜୁଲାଇ, ଅକ୍‌ଟୋବର ମାସର ଦ୍ୱିତୀୟ ସପ୍ତାହ ସୁଦ୍ଧା ପହଞ୍ଚିବା ଆବଶ୍ୟକ ।

| କ୍ରମିକ ସଂଖ୍ୟା | ସୁପାରିଶକାରୀ ସଂସ୍ଥାର ନାମ | କେଉଁ ଶ୍ରେଣୀର ପ୍ରାର୍ଥୀଙ୍କ ପାଇଁ ସୁପାରିଶ କରାଯିବ | ଉକ୍ତ ସଂସ୍ଥା ପାଇଁ ସଂରକ୍ଷିତ ଥିବା ରିକ୍‌ସାର ସଂଖ୍ୟା |
|---|---|---|---|
| (୧) | (୨) | (୩) | (୪) |
| ୧ | ସମବାୟ ସମିତି/ସଂଘର ରେଜିଷ୍ଟ୍ରାର | ବିଭିନ୍ନ ସହରରେ ଗଠିତ ଅଟୋ-ରିକ୍‌ସା ସମିତି/ସଂଘ | ୧ |
| ୨ | ହରିଜନ ଓ ଆଦିବାସୀ କଲ୍ୟାଣ ନିର୍ଦ୍ଦେଶକ | ଅନୁସୂଚିତ ଜାତି/ଉପଜାତି | ୧ |
| ୩ | ଶିଳ୍ପ ବିଭାଗ ନିର୍ଦ୍ଦେଶକ | ଶିକ୍ଷିତ ବେକାରମାନଙ୍କ ଆତ୍ମନିଯୁକ୍ତି | ୬ |
| ୪ | ସଚିବ, ରାଜ୍ୟ ସୈନିକ ବୋର୍ଡ, ଓଡ଼ିଶା, ଲୁଇସ୍ ରୋଡ୍, ଭୁବନେଶ୍ୱର-୨ | ଯୁଦ୍ଧ ଫେରନ୍ତା ସୈନିକମାନଙ୍କ ପାଇଁ | ୨ |
| ୫ | ସଚିବ, ରାଜ୍ୟ ପରିବହନ ପ୍ରାଧିକାରୀ, ଓଡ଼ିଶା, କଟକ | ଯେଉଁ ପ୍ରାର୍ଥୀମାନେ ରାଜ୍ୟ ପରିବହନ ପ୍ରାଧିକାରୀଙ୍କ ନିର୍ଦ୍ଦେଶକ୍ରମେ ତାଙ୍କର ଯାନକୁ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ପୁନଃସ୍ଥାପନ କରିବାକୁ ଅନୁମତି ପାଇଥିବେ । | ୧ |

## ଜେ. କେ. କାଗଜ କଳରେ

ସଂପ୍ରତି କୋରାପୁଟ ଜିଲ୍ଲା ଜେ. କେ. କାଗଜ କଳ ରାୟଗଡ଼ାରେ ଏକ ସ୍ୱତନ୍ତ୍ର ସ୍ୱଳ୍ପ ସଂଚୟ ଅଭିଯାନ କରାଯାଇ ବେତନ ପୁଞ୍ଜି ସଂଚୟ ଯୋଜନାରେ ୨,୧୬୪ଟି ଆକାଉଣ୍ଟ ଖୋଲାଯାଇଛି । ଏ ବାବଦରେ ଅଧିକ ୪୫,୮୬୫ ଟଙ୍କା ସଂଗହୀତ ହୋଇଛି । ଏହି ସ୍ୱତନ୍ତ୍ର ଅଭିଯାନ ବ୍ରହ୍ମପୁରଠାରେ ଥିବା ସହକାରୀ ଆଞ୍ଚଳିକ ସ୍ୱଳ୍ପ ସଞ୍ଚୟ ନିର୍ଦ୍ଦେଶକ, କୋରାପୁଟ ଜିଲ୍ଲା ସ୍ୱଳ୍ପ ସଂଚୟ ଅଧିକାରୀ ଏବଂ ରାୟଗଡ଼ା ସ୍ୱଳ୍ପ ସଂଚୟ ଅଧିକାରୀଙ୍କ ଦ୍ୱାରା ପରିଚାଳିତ ହୋଇଥିଲା ।

ଏହି ଉପଲକ୍ଷେ ସ୍ଥାନୀୟ ମନୋରଞ୍ଜନ କେନ୍ଦ୍ରରେ କାଗଜ କଳ କର୍ମଚାରୀମାନଙ୍କର ଏକ ସଭାର ଆୟୋଜନ କରାଯାଇଥିଲା ଏବଂ ଦେଶର ପ୍ରଗତିରେ ସ୍ୱଳ୍ପ ସଂଚୟର ଭୂମିକା ଉପରେ ବିଭିନ୍ନ ବକ୍ତାମାନେ ଆଲୋକପାତ କରିଥିଲେ । ସ୍ୱଳ୍ପ ସଂଚୟ ଉପରେ ଆଧାରିତ ବିଭିନ୍ନ ପ୍ରାମାଣିକ ଚଳଚ୍ଚିତ୍ର ମଧ୍ୟ ପ୍ରଦର୍ଶନ କରାଯାଇ ଲୋକମାନଙ୍କୁ ସ୍ୱଳ୍ପସଂଚୟର ଉପକାରିତା ସଂପର୍କରେ ବୁଝାଇ ଦିଆଯାଇଥିଲା ।

ଏଠାରେ ଉଲ୍ଲେଖନୀୟ ଯେ ବର୍ତ୍ତମାନ ବେତନ ପୁଞ୍ଜି ଯୋଜନାରେ ୧,୯୩୩ ଜଣ ଜମାକାରୀଙ୍କ ଦ୍ୱାରା ୩,୨୫୦ଟି ଆକାଉଣ୍ଟରେ ମାସିକ ୧୬,୮୧୫ ଟଙ୍କା ସଂଗୃହୀତ ହେଉଛି । ଏହି ଅଭିଯାନ ଫଳରେ ବର୍ତ୍ତମାନ ମୋଟ୍ ୫୪୧୪ଟି ଆକାଉଣ୍ଟରେ ମାସିକ ୧ ଲକ୍ଷ ୪୨ହଜାର ୬୮୦ ଟଙ୍କା ସଂଚୟ ହୋଇପାରିବ ବୋଲି ଜଣାପଡ଼ିଛି ।

---

## ପୋଡୁଚାଷର ପ୍ରତିକାର

ବ୍ୟାପକ ପୋଡୁଚାଷ ଫଳରେ ଫୁଲବାଣୀ ଜିଲ୍ଲାର ଜଙ୍ଗଲ ସଂପଦର ଦ୍ରୁତ କ୍ଷୟ ଘଟିବା ସଙ୍ଗେ ସଙ୍ଗେ ମୃତ୍ତିକାକ୍ଷୟ ଗୁରୁତର ଆକାର ଧାରଣ କରିଛି । ଏହା ସାଙ୍ଗକୁ ଜଳବାୟୁ ତଥା ପାରିପାର୍ଶ୍ୱିକ ଅବସ୍ଥାରେ ମଧ୍ୟ ପ୍ରତିକୂଳ ପ୍ରଭାବ ପରିଲକ୍ଷିତ ହେଲାଣି । ଅନୁସନ୍ଧାନରୁ ଜଣାପଡ଼ିଛି ଯେ କେବଳ ଫୁଲବାଣୀ ଜିଲ୍ଲାରେ ୨୧ ହଜାର ହେକ୍ଟର ଜଙ୍ଗଲ ପୋଡୁଚାଷ ଯୋଗୁଁ ଧ୍ୱଂସ ପାଇଛି ଏବଂ କ୍ରମଶଃ ଏହା ଅନ୍ୟାନ୍ୟ ଅଞ୍ଚଳକୁ ସଂକ୍ରମିତ ହେଉଛି । ତେଣୁ, ତୁରନ୍ତ ପୋଡୁଚାଷକୁ ରୋକା ନଗଲେ ଏକଦା ଘନ ଜଙ୍ଗଲରେ ଭରପୁର ଫୁଲବାଣୀ ଜିଲ୍ଲା ଶୁଷ୍କ ମରୁଭୂମିରେ ପରିଣତ ହେବା ସଙ୍ଗେ ସଙ୍ଗେ ପରିବେଶ ଭୟାବହ ହୋଇପଡ଼ିବ । ତେଣୁ, ପୋଡୁଚାଷୀଙ୍କୁ ପୋଡୁଚାଷରୁ ନିବୃତ୍ତ କରି ବିକଳ୍ପ ବ୍ୟବସ୍ଥା ସ୍ୱରୂପ ଅନ୍ୟାନ୍ୟ ଲାଭପ୍ରଦ ଜୀବିକାରେ ଥଇଥାନ କରିବା ସଙ୍ଗେ ସଙ୍ଗେ ମୃତ୍ତିକା ସଂରକ୍ଷଣ, ନୂତନ ଜଙ୍ଗଲ ଓ ସାମାଜିକ ଜଙ୍ଗଲ ସୃଷ୍ଟି ସମେତ ଉଦ୍ୟାନ କାର୍ଯ୍ୟକ୍ରମ ହାତକୁ ନିଆଯିବ । ପ୍ରଥମ ପର୍ଯ୍ୟାୟରେ ଆଦିବାସୀ ଅଧ୍ୟୁଷିତ ତୁମୁଡ଼ିବନ୍ଧ ବ୍ଲକର ୬୭ଟି ଗ୍ରାମ, ବିଶେଷକରି ବେଲଘର କୁଟିଆ ଅଞ୍ଚଳକୁ ନେଇ ଏକ ମାଇକ୍ରୋ ପ୍ରୋଜେକ୍ଟ ଆରମ୍ଭ କରାଯାଇଛି । ଏହି ବ୍ଲକର ପ୍ରାୟ ୧,୬୪୦ ହେକ୍ଟର ଜଙ୍ଗଲ ପୋଡୁଚାଷରେ ଧ୍ୱଂସ ପାଇଯାଇଛି କେନ୍ଦ୍ରୀୟ ସହାୟତାରେ ପ୍ରାୟ ୬ କୋଟି ଟଙ୍କା ବ୍ୟୟରେ ଏହି ଯୋଜନାଟି ୫ ବର୍ଷ ମଧ୍ୟରେ କାର୍ଯ୍ୟକାରୀ ହେବ ଏବଂ ଏହାଦ୍ୱାରା ୧,୭୫୨ଟି କୁଟିଆ କନ୍ଧ ଓ ଗଣ୍ଡ ପରିବାରକୁ ପୋଡୁଚାଷରୁ ନିବୃତ୍ତ କରି ବିକଳ୍ପ ଲାଭପ୍ରଦ ଜୀବିକାରେ ଥଇଥାନ କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଛି । ଏହି ମାଇକ୍ରୋ ପ୍ରୋଜେକ୍ଟର ସଦର କାର୍ଯ୍ୟାଳୟ କୁଟିଆ ଅଧ୍ୟୁଷିତ ବେଲଘରଠାରେ ଅବସ୍ଥାପିତ ହେବ ।

---

## ସ୍ୱତନ୍ତ୍ର ପଶୁପାଳନ ଯୋଜନାର ଅଗ୍ରଗତି

ସ୍ୱତନ୍ତ୍ର ପଶୁପାଳନ ଯୋଜନା ଅନୁଯାୟୀ ରାଜ୍ୟରେ ଚଳିତ ବର୍ଷ ଜୁନ୍ ମାସ ସୁଦ୍ଧା ଶେଷ ହୋଇଥିବା ପ୍ରଥମ ତିନିମାସ ମଧ୍ୟରେ ୧୭୯ଟି ସଙ୍କର ମାଈ ବାଛୁରୀ ପାଳିଥିବା କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଗୋ-ଖାଦ୍ୟ ବାବଦରେ ମୋଟ୍ ୨ ଲକ୍ଷ ୩୮ ହଜାର ୭୦୮ ଟଙ୍କା ସବ୍‌ସିଡ଼ି ଦିଆଯାଇଛି । ଏତଦ୍ବାରା ମୋଟ୍ ୯ ଜଣ ହରିଜନ ସଂପ୍ରଦାୟର ବ୍ୟକ୍ତି ଏହି ସମୟ ମଧ୍ୟରେ ଉପକୃତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଅପ୍ରେଲ ଓ ମଇ ମାସରେ ୭ ଜଣ ଅନ୍ତର୍ଭୁକ୍ତ । ଏଥିପାଇଁ ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କମାନେ ଏହି ଯୋଜନାରେ ଉକ୍ତ ସମୟ ମଧ୍ୟରେ ମୋଟ୍ ୩ ଲକ୍ଷ ୬୫ ହଜାର ୭୫୧ ଟଙ୍କା ଋଣ ଦେଇଛନ୍ତି ।

ସେହିପରି ଘୁଷୁରୀ ପାଳନ ଯୋଜନାରେ ଗତ ଜୁନ୍ ମାସରେ ଜଣେ ଆଦିବାସୀ ଚାଷୀଙ୍କୁ ୩ଟି ମାଈ ଘୁଷୁରୀର ଗୋଟିଏ ୟୁନିଟ୍, ମେଣ୍ଢା ପାଳନ କାର୍ଯ୍ୟକ୍ରମରେ ୨୫୦ଟି ମେଣ୍ଢାର ୨୫ଟି ୟୁନିଟ୍ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଯୋଗାଇ ଦିଆଯାଇଛି ।

ଏଠାରେ ଉଲ୍ଲେଖନୀୟ ଯେ କ୍ଷୁଦ୍ର ଓ ନାମମାତ୍ର ଚାଷୀ ଏବଂ କୃଷି ଶ୍ରମିକଙ୍କ ଦ୍ୱାରା ସଙ୍କର ମାଈ ବାଛୁରୀ, ମେଣ୍ଢା, ଘୁଷୁରୀ, କୁକୁଡ଼ା ଓ ବତକ ପାଳନ ପାଇଁ କେନ୍ଦ୍ର ସରକାରଙ୍କ ସହାୟତାରେ ରାଜ୍ୟରେ 'ସ୍ୱତନ୍ତ୍ର ପଶୁ ପାଳନ ଯୋଜନା' କାର୍ଯ୍ୟକାରୀ ହେଉଛି । ଏହି ଯୋଜନାରେ ସଙ୍କର ମାଈ ବାଛୁରୀ ପାଳନ କାର୍ଯ୍ୟକ୍ରମ କଟକ, ପୁରୀ, ସମ୍ବଲପୁର ଓ ଢେଙ୍କାନାଳ ଜିଲ୍ଲାରେ, ଘୁଷୁରୀ ପାଳନ କାର୍ଯ୍ୟକ୍ରମ କେନ୍ଦୁଝର ଓ କୋରାପୁଟ ଜିଲ୍ଲାରେ, ମେଣ୍ଢା ପାଳନ କାର୍ଯ୍ୟକ୍ରମ ବଲାଙ୍ଗୀର ଜିଲ୍ଲାରେ ଏବଂ କୁକୁଡ଼ା ପାଳନ କାର୍ଯ୍ୟକ୍ରମ କଟକ, ପୁରୀ, ଓ ସମ୍ବଲପୁର ଜିଲ୍ଲାରେ କାର୍ଯ୍ୟକାରୀ ହେଉଛି । ଉପରୋକ୍ତ କାର୍ଯ୍ୟକ୍ରମ ପାଇଁ କ୍ଷୁଦ୍ର ଓ ନାମମାତ୍ର ଚାଷୀ ଏବଂ କୃଷି ଶ୍ରମିକମାନେ ଋଣ ଓ ସବ୍‌ସିଡ଼ି ପାଆନ୍ତି ।

---

## ସୁନ୍ଦରଗଡ଼ ଜିଲ୍ଲା ଉନ୍ନୟନ କମିଟି ବୈଠକ

ସଂପ୍ରତି ସୁନ୍ଦରଗଡ଼ଠାରେ ଜିଲ୍ଲା ଉନ୍ନୟନ କମିଟିର ବୈଠକ ଜିଲ୍ଲାପାଳ ଶ୍ରୀ ରବି ନାରାୟଣ ସେନାପତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇ ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକର ଅଗ୍ରଗତି ସଂପର୍କରେ ସମୀକ୍ଷା କରାଯାଇଥିଲା । ଚଳିତ ମାସଠାରୁ ପ୍ରତ୍ୟେକ ବ୍ଲକରେ ମାସକୁ ଅନ୍ୟୂନ ଦୁଇଟି କରି ଋଣମେଳା ଅନୁଷ୍ଠିତ ହୋଇ ଗରିବ, ନାମମାତ୍ର ଓ କ୍ଷୁଦ୍ର ଚାଷୀମାନଙ୍କୁ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଓ ସମନ୍ୱିତ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମ ଅନୁଯାୟୀ ବିଭିନ୍ନ ଧନ୍ଦା ମାଧ୍ୟମରେ ସେମାନଙ୍କର ଆର୍ଥିକ ଉନ୍ନତି କାର୍ଯ୍ୟକ୍ରମ ଅବ୍ୟାହତ ରଖାଯିବ ବୋଲି ଏହି ବୈଠକରେ ନିଷ୍ପତ୍ତି ନିଆଯାଇଛି ।

ଚଳିତ ଖରିଫ୍ ଋତୁରେ ଧାର୍ଯ୍ୟ ଲକ୍ଷ୍ୟଠାରୁ ବହୁ ଅଧିକ ହେକ୍ଟର ଜମିରେ ବିଭିନ୍ନ ଫସଲ ଚାଷ ହୋଇଥିବା ଓ ଫସଲ ଅବସ୍ଥା ଭଲ ଥିବା ଜଣାଯାଇଛି । ଚାଷୀମାନଙ୍କୁ ଉପଯୁକ୍ତ ସମୟରେ ଆବଶ୍ୟକ ବିହନ, ସାର ଯୋଗାଇ ଦିଆଯାଇଥିଲା । ସେହି ସମୟରେ ୨,୩୯୮ ମେଟ୍ରିକ୍ ଟନ୍ ସାର ଯୋଗାଇ ଦିଆଯାଇଥିଲା । ୭,୫୦୦ ଜଣ ଚାଷୀଙ୍କୁ ୨ କେ. ଜି. ସମ୍ବଳିତ ଧାନ ବିହନ ପୁଡ଼ିଆ, ପ୍ରଧାନ ମନ୍ତ୍ରୀଙ୍କ ସଘନ କାର୍ଯ୍ୟକ୍ରମ ଅନୁଯାୟୀ ୨,୩୩୫ ଜଣ ଚାଷୀଙ୍କୁ ବିହନ ପୁଡ଼ିଆ, ଜାତୀୟ ତୈଳବୀଜ ଉନ୍ନୟନ କାର୍ଯ୍ୟକ୍ରମ ଅନୁଯାୟୀ ୬୦ ଜଣ ଚାଷୀଙ୍କୁ ୧୨ କେ: ଜି: ସମ୍ବଳିତ ଚିନାବାଦାମ ବିହନ, ୬୦ ଜଣ ଚାଷୀଙ୍କୁ ୭ କେ: ଜି: ସମ୍ବଳିତ ମକା ବିହନ ପୁଡ଼ିଆମାନ କୃଷି ବିଭାଗ ପକ୍ଷରୁ ମାଗଣାରେ ଯୋଗାଇ ଦିଆଯାଇଛି ବୋଲି ବୈଠକରେ ପ୍ରକାଶ ପାଇଥିଲା ।

ଆସନ୍ତା ରବିଋତୁ ପାଇଁ ବିଭିନ୍ନ ଜଳସେଚନ ଯୋଜନାଗୁଡ଼ିକ ଜରିଆରେ ପ୍ରକୃତରେ କେତେ ଜଳ ଯୋଗାଯାଇ ପାରିବ, ତାହା ସପ୍ତାହକ ମଧ୍ୟରେ ଜଣାଇବା ପାଇଁ ସଂପୃକ୍ତ ବିଭାଗୀୟ କର୍ତ୍ତୃପକ୍ଷମାନଙ୍କୁ ଜିଲ୍ଲାପାଳ ନିର୍ଦ୍ଦେଶ ଦେଇଥିଲେ । କାରଣ ଏହା ଉପରେ କୃଷି ବିଭାଗ ରବିଚାଷ କାର୍ଯ୍ୟକ୍ରମ ସ୍ଥିର କରିବେ । ନିକଟରେ ବସୁଥିବା କୃଷି କୌଶଳ ବୈଠକରେ ରବିଚାଷ କାର୍ଯ୍ୟକ୍ରମ ସ୍ଥିର କରାଯିବ । ରବିଚାଷର ସଫଳତା ପାଇଁ କ୍ଷେତ୍ରରେ କାର୍ଯ୍ୟକ୍ରମ କରୁଥିବା ବିଭିନ୍ନ ବିଭାଗୀୟ କର୍ମଚାରୀ, ଯଥା କୃଷି, ସମବାୟ ଓ ଜଳସେଚନ କର୍ମଚାରୀମାନଙ୍କ ମଧ୍ୟରେ ଉପଯୁକ୍ତ ସମନ୍ୱୟ ରକ୍ଷାପାଇଁ ଜିଲ୍ଲାପାଳ ଗୁରୁତ୍ୱ ଆରୋପ କରିଥିଲେ । ଚଳିତ ବର୍ଷ ଖରିଫ୍ ଋତୁରେ ଚାଷ ପାଇଁ ସମବାୟ ବିଭାଗ ପକ୍ଷରୁ ମୋଟ୍ ୯୬ ଲକ୍ଷ ଟଙ୍କାର ବିଭିନ୍ନ ପ୍ରକାର ସାର ଚାଷୀମାନଙ୍କୁ ଉଭୟ ଋଣ ଓ ଅନୁଦାନ ଆକାରରେ ଯୋଗାଇ ଦିଆଯାଇଥିବା ଜଣାଯାଇଛି ।

ଚଳିତ ବର୍ଷ ସେଚକୂପ ପାଇଁ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟ କରାଯିବାକୁ ନିଷ୍ପତ୍ତି ନିଆଯାଇଛି । ଚଳିତ ମାସଠାରୁ ପ୍ରତିମାସରେ ବ୍ଲକ ପିଛା ଅନ୍ୟୁନ ୨୦ରୁ ୩୦ଟି କରି ଦରଖାସ୍ତ ଚାଷୀମାନଙ୍କଠାରୁ ସେଚକୂପ ପାଇଁ ସଂଗ୍ରହ କରାଯାଇ ଋଣ ମଞ୍ଜୁର କରାଯିବା ଦିଗରେ ତୁରନ୍ତ ପଦକ୍ଷେପ ନେବାକୁ ବି. ଡ଼ି. ଓ. ମାନଙ୍କୁ ଜିଲ୍ଲାପାଳ ନିର୍ଦ୍ଦେଶ ଦେଇଥିଲେ । ୧୯୮୪-୮୫ ଆର୍ଥିକ ବର୍ଷରେ ୧,୫୭୫ଟି ସେଚକୂପ ଖୋଳାଯାଇଛି ଓ ୭୭ଟି ପମ୍ପସେଟ୍ ଯୋଗାଇ ଦିଆଯାଇଛି ।

ସରକାରଙ୍କ କୌଣସି ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇନଥିବା ଗ୍ରାମାଞ୍ଚଳ ଗୃହହୀନ ଲୋକମାନଙ୍କୁ ଆର. ଏଲ୍. ଇ. ଜି. ପି. ରେ ବାସଗୃହ ନିର୍ମାଣ କରାଯାଇ ଯୋଗାଇ ଦିଆଯିବା ଏକ ନୂତନ ପରିକଳ୍ପନାର କାର୍ଯ୍ୟକାରୀତା ଉପରେ ଆଲୋଚନା କରାଯାଇଥିଲା । ଚଳିତ ବର୍ଷ ୬୩ଟି ଗ୍ରାମ ଓ ୨୦ଟି ହରିଜନ ବସ୍ତିକୁ ବିଦ୍ୟୁତ୍କରଣ କରାଯିବ ବୋଲି ଜଣାଯାଇଛି । ଜିଲ୍ଲାରେ ଏପର୍ଯ୍ୟନ୍ତ ୫୩୩ଟି ଗୋବର ଗ୍ୟାସ ପ୍ଲାଣ୍ଟ ନିର୍ମାଣ କରାଯାଇଛି । ଚଳିତ ବର୍ଷ ପ୍ରତି ବ୍ଲକରେ ଅନ୍ୟୁନ ୧୦୦ଟି ପ୍ଲାଣ୍ଟ ସ୍ଥାପନର ଲକ୍ଷ୍ୟ ରଖାଯାଇଛି । ସୁନ୍ଦରଗଡ଼ଠାରୁ ରାଉରକେଲା ଓ ଝାରସୁଗୁଡ଼ା ଜାତୀୟ ରାଜପଥରେ ଦୁଇ ପାର୍ଶ୍ୱରେ ପ୍ରାୟ ୨୦ ଲକ୍ଷ ଟଙ୍କା ବ୍ୟୟରେ ୧୮ କି: ମି: ଦୂରତା ବ୍ୟାପୀ ବୃକ୍ଷରୋପଣ କାର୍ଯ୍ୟ ଦ୍ରୁତଗତିରେ ଆଗେଇ ଚାଲିଥିବା ଜଣାଯାଇଛି ।

ସ୍ୱଳ୍ପ ସଞ୍ଚୟ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରିପାରିଥିବା ଯୋଗୁଁ ଗତବର୍ଷ ସୁନ୍ଦରଗଡ଼ ଜିଲ୍ଲା ରାଜ୍ୟରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ତେଣୁ, ଏହାକୁ ବଜାୟ ରଖିବାକୁ ବିଶେଷ କରି ଗ୍ରାମାଞ୍ଚଳର ଲୋକମାନଙ୍କୁ ଏ ଦିଗରେ ସଂଶ୍ଳିଷ୍ଟ କରି ଅଧିକରୁ ଅଧିକ ଗ୍ରାମକୁ, ସ୍କୁଲକୁ ଓ ଶିଳ୍ପାଞ୍ଚଳଗୁଡ଼ିକୁ ଯଥାକ୍ରମେ ସଂଚୟ ଗ୍ରାମ, ସଂଚୟ ସ୍କୁଲ ଓ ସଂଚୟ ଶିଳ୍ପ ସଂସ୍ଥାରେ ପରିଣତ କରିବା ପାଇଁ ନିଷ୍ଠାର ସହ କାର୍ଯ୍ୟ କରିବାକୁ ଜିଲ୍ଲାପାଳ କର୍ମଚାରୀମାନଙ୍କୁ ପରାମର୍ଶ ଦେଇଥିଲେ । ସେହିପରି ପରିବାର କଲ୍ୟାଣ କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ଗ୍ରାମାଞ୍ଚଳରେ କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କ ସାହାଯ୍ୟ ନିଆଯିବା ପାଇଁ ଓ ସମସ୍ତ କର୍ମଚାରୀ ନିଷ୍ଠାରସହ କାର୍ଯ୍ୟ କରିବା ପାଇଁ ଜିଲ୍ଲାପାଳ ପରାମର୍ଶ ଦେଇଥିଲେ ।

ଏହା ବ୍ୟତୀତ ଅତ୍ୟାବଶ୍ୟକୀୟ ଖାଦ୍ୟ ଦ୍ରବ୍ୟ ବଣ୍ଟନ, ଶିଶୁ ଓ ଗର୍ଭବତୀ ମହିଳାମାନଙ୍କ ମଧ୍ୟରେ ପୁଷ୍ଟିକର ଖାଦ୍ୟ ଯୋଗାଣ ବାର୍ଦ୍ଧକ୍ୟ ଭତ୍ତା ଓ ଶାରୀରିକ ଅକ୍ଷମ ଲୋକମାନଙ୍କୁ ଭତ୍ତା ପ୍ରଦାନ ଇତ୍ୟାଦି ସଂପର୍କରେ ବୈଠକରେ ବିଶଦ ଭାବେ ଆଲୋଚନା କରାଯାଇଥିଲା ।

ବୈଠକରେ ଜିଲ୍ଲାର ସମସ୍ତ ଜିଲ୍ଲାସ୍ତରୀୟ ବିଭାଗୀୟ କର୍ମକର୍ତ୍ତାଙ୍କ ସମେତ ଏସ୍. ଡ଼ି. ଓ., ବି. ଡ଼ି. ଓ. ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

---

## ୧୯୮୫-୮୬ ଖରଫ ଋତୁପାଇଁ ନୂତନ ଧାନ ସଂଗ୍ରହନୀତି ।

୧୯୮୫-୮୬ ମସିହା ଖରିଫ ବାଣିଜ୍ୟକ ଋତୁପାଇଁ ରାଜ୍ୟ ସରକାର ନୂତନ ସଂଗ୍ରହ ନୀତି ଘୋଷଣା କରିଛନ୍ତି । ଏହି ନୀତି ଅନୁଯାୟୀ ଧାନ ସଂଗ୍ରହର ଦର ନିମ୍ନୋକ୍ତମତେ ଧାର୍ଯ୍ୟ ହୋଇଛି :—

ସାଧାରଣ ଧାନ କୁଇଣ୍ଟାଲ ପ୍ରତି ୧୪୨ ଟଙ୍କା, ସରୁଧାନ କୁଇଣ୍ଟାଲ ପ୍ରତି ୧୪୬ ଟଙ୍କା ଓ ଅତି ସରୁଧାନ କୁଇଣ୍ଟାଲ ପ୍ରତି ୧୫୦ ଟଙ୍କା ।

ଏହି ନୂତନ ନୀତି ଅନୁଯାୟୀ ଉତ୍ପାଦନକାରୀମାନେ ସେମାନଙ୍କର ଧାନ ଓ ଚାଉଳ ରାଜ୍ୟ ବାହାରେ ମଧ୍ୟ ବିକ୍ରୟ କରିବା ଲାଗି ଅନୁମତି ଦିଆଯାଇଛି । ଆନ୍ତଃଜିଲ୍ଲା କଟକଣା ସବୁ ଉଠାଇ ଦିଆଯାଇଛି ଏବଂ ଧାନ ଚାଉଳର ଅବାଧ ଚଳାଚଳପାଇଁ ଅନୁମତି ଦିଆଯାଇଛି । ଚଳିତ ବର୍ଷ ରାଜ୍ୟ ସରକାର ୨ ଲକ୍ଷ ଟନ୍ ଚାଉଳ ସଂଗ୍ରହ କରିବାକୁ ଲକ୍ଷ୍ୟ ଧାର୍ଯ୍ୟ କରିଛନ୍ତି । ତନ୍ମଧ୍ୟରୁ ମିଲ ମାଲିକମାନେ ୧ ଲକ୍ଷ ୫୦ ହଜାର ଟନ୍ ଓ ଅବଶିଷ୍ଟ ୫୦ ହଜାର ଟନ୍ 'ଆପୋକସ୍' ଯୋଗାଇ ଦେବେ । ରାଜ୍ୟର ସବୁ ଜିଲ୍ଲାପାଇଁ ସଂଗ୍ରହ କରିବା ନିମନ୍ତେ ରାଜ୍ୟ ସରକାରଙ୍କ ପକ୍ଷରୁ ଭାରତୀୟ ଖାଦ୍ୟ ନିଗମ ଏକମାତ୍ର ସଂଗ୍ରହକାରୀ ରୂପେ କାର୍ଯ୍ୟ କରିବେ ।

## ବନ୍ୟା ବିପନ୍ନଙ୍କୁ ସାହାଯ୍ୟ

ଗତ ଅକ୍ଟୋବର ୧୮ ତାରିଖଠାରୁ ୨୨ ତାରିଖ ସନ୍ଧ୍ୟାସୁଦ୍ଧା କଟକ ଓ ବାଲେଶ୍ୱର ଜିଲ୍ଲା ବନ୍ୟାଞ୍ଚଳର ପାଣି ଘେରରେ ରହିଥିବା ଗ୍ରାମଗୁଡ଼ିକରେ ଆକାଶମାର୍ଗରୁ ସମୁଦାୟ ୫୮,୨୭୬ଟି ଖାଦ୍ୟ ତଥା ରିଲିଫ୍-ପୁଡ଼ିଆ ବିତରଣ କରାଯାଇଛି । ସ୍ଥାନୀୟ ବିମାନ ବନ୍ଦରରେ ବିମାନ ବାହିନୀର ଉତ୍ସାହୀ ଜବାନ୍‌ମାନେ ୨୧୮.୫୩ ମେଟ୍ରିକ ଟନ୍ ଓଜନର ଏହିସବୁ ପୁଡ଼ିଆକୁ ସମୁଦାୟ ୧୪,୫୬୯ଟି ବସ୍ତାରେ ଭିଲିକରି ବିଭିନ୍ନ ବନ୍ୟାଞ୍ଚଳରେ ବିତରଣ କରିଛନ୍ତି । ସେଥିପାଇଁ ସେମାନଙ୍କୁ ଆକାଶ ପଥରେ ୮୨ ଥର ଯାତାୟାତ କରିବାକୁ ପଡ଼ିଥିଲା ।

ରାଜସ୍ୱମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ପରାମର୍ଶ କ୍ରମେ ଏବଂ ବିଭାଗୀୟ ପଦସ୍ଥ ଅଫିସରମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ରିଲିଫ ଯୋଗାଣ କାର୍ଯ୍ୟ ପରିଚାଳିତ ହୋଇଥିଲା । କେବଳ ୨୨ ତାରିଖରେ ଆକାଶ ମାର୍ଗରୁ ଭଦ୍ରଖ, ବାସୁଦେବପୁର ଓ ଯାଜପୁର ସବ୍‌ଡିଭିଜନର ବନ୍ୟାଞ୍ଚଳଗୁଡ଼ିକରେ ୧୪,୫୪୪ଟି ପୁଡ଼ିଆ ବିତରଣ କରାଯାଇଛି ।

ଗତ ୨୧ ତାରିଖରେ ରାଜସ୍ୱମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଓ କେନ୍ଦ୍ର କୃଷି ମନ୍ତ୍ରଣାଳୟର ଯୁଗ୍ମ ଶାସନ ସଚିବ ଶ୍ରୀ ବି. ପି. ସିକଦାର କଟକ ଓ ବାଲେଶ୍ୱର ଜିଲ୍ଲାର ବନ୍ୟାଞ୍ଚଳ ସବୁ ଆକାଶ-ମାର୍ଗରୁ ପରିଦର୍ଶନ କରିଥିଲେ । ସେମାନେ ଯାଜପୁର ଓ ଭଦ୍ରଖଠାରେ ବିମାନରୁ ଅବତରଣ କରି ସଂପୃକ୍ତ ଜିଲ୍ଲାପାଳ ଓ ରାଜସ୍ୱ ବିଭାଗର ସ୍ଥାନୀୟ ଅଫିସରମାନଙ୍କ ସହିତ ଜରୁରୀ ରିଲିଫ କାର୍ଯ୍ୟ, ଖାଦ୍ୟ ପଦାର୍ଥ ବଣ୍ଟନ, ବାସହୀନ ଲୋକଙ୍କ ଥଇଥାନ ଏବଂ ଚିକିତ୍ସା କାର୍ଯ୍ୟ ଇତ୍ୟାଦି ସମ୍ପର୍କରେ ଆଲୋଚନା କରିଥିଲେ । ତା'ପରେ ସେମାନେ ଏଠାକୁ ଫେରିଆସି ବିମାନ ବନ୍ଦରଠାରେ ରାଜସ୍ୱ ବୋର୍ଡର ଅଧ୍ୟକ୍ଷ ଶ୍ରୀ ବି. ଆର. ପଟେଲ, ସ୍ୱତନ୍ତ୍ର ରିଲିଫ କମିଶନର ଶ୍ରୀ କେ. ଶ୍ରୀନିବାସନ ଓ ଶାସନ ସଚିବ ଶ୍ରୀ ପ୍ୟାରୀମୋହନ ମହାପାତ୍ର ପ୍ରମୁଖ ଉଚ୍ଚ ପଦସ୍ଥ ଅଫିସରମାନଙ୍କ ସହିତ ବିଭିନ୍ନ ସମସ୍ୟା ସଂପର୍କରେ ଆଲୋଚନା କରିଥିଲେ ।

ସେ ଦିନ ଅପରାହ୍ଣରେ ଶ୍ରୀ ସିକଦାର ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କରିଯାଇଛନ୍ତି । ଆଜି କେନ୍ଦ୍ର କୃଷି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯୋଗେନ୍ଦ୍ର ମାକୱାନା ଏଠାରେ ପହଞ୍ଚି ଆସନ୍ତା କାଲି ବନ୍ୟାଞ୍ଚଳ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ରହିଛି ବୋଲି ରାଜସ୍ୱ ମନ୍ତ୍ରୀଙ୍କଠାରୁ ପ୍ରକାଶ ।

---

## ୧୯୮୪ ଯୌତୁକ ନିରୋଧ (ସଂଶୋଧନ) ଆଇନ ।

କେନ୍ଦ୍ର ସରକାର ଏକ ବିଜ୍ଞପ୍ତି ବଳରେ ଇତିମଧ୍ୟରେ ୧୯୮୪ ମସିହା ଯୌତୁକ ନିରୋଧ ଆଇନର କେତେକ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ କରି ଏହାକୁ ୧୯୮୫ ମସିହା ଅକ୍ଟୋବର ୨ ତାରିଖଠାରୁ କଡ଼ାକଡ଼ି ଭାବେ କାର୍ଯ୍ୟକାରୀ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ଯୌତୁକ ଦାବୀ ଜନିତ ନିର୍ଯ୍ୟାତନାରୁ ନାରୀ ସମାଜକୁ ରକ୍ଷା କରିବା ପାଇଁ ସରକାର କେତେକ ନୂତନ ଆଇନର ପ୍ରଣୟନ ଓ ପ୍ରଚଳିତ ଆଇନର ସଂଶୋଧନ କରିଛନ୍ତି । ଏହା ଫଳରେ ୧୯୬୧ ମସିହା ଯୌତୁକ ନିରୋଧ ଆଇନର ଯେଉଁ କେତେକ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ କରାଯାଇଛି, ତାହାର ବିଭିନ୍ନ ଦିଗ ସମ୍ପର୍କରେ ନିମ୍ନରେ ଉଲ୍ଲେଖ କରାଗଲା ।

ସମ୍ପତ୍ତି ଆକାରରେ ବା ମୂଲ୍ୟବାନ ଉପଢୌକନ ଉପହାର ଦେବା ଆଳରେ ବର, କନ୍ୟା ଓ ବରପିତା ଏବଂ କନ୍ୟାପିତା ବା ଯେ କୌଣସି ମଧ୍ୟସ୍ଥିଙ୍କ ମଧ୍ୟରେ ହୋଇଥିବା ରାଜିନାମା ବା ସର୍ତ୍ତକୁ 'ଯୌତୁକ' ବୋଲି ଗ୍ରହଣ କରାଯିବ ।

କୌଣସି ବ୍ୟକ୍ତି ପ୍ରତ୍ୟକ୍ଷ ବା ପରୋକ୍ଷଭାବେ କନ୍ୟା କିମ୍ବା ବରର ପିତା ମାତା, ଆତ୍ମୀୟ ସ୍ୱଜନ ଏବଂ ଅଭିଭାବକଙ୍କଠାରୁ ଯୌତୁକ ଦାବୀ କରୁଥିଲେ ତାହାକୁ ଅନ୍ୟୁନ ଛଅମାସ ଓ ସର୍ବୋଚ୍ଚ ଦୁଇବର୍ଷ କାରାଦଣ୍ଡ ଏବଂ ଦଶହଜାର ଟଙ୍କା ପର୍ଯ୍ୟନ୍ତ ଜୋରିମାନା କରାଯାଇ ପାରିବ ।

ଯୌତୁକଜନିତ ଦାବୀ ଧର୍ତ୍ତବ୍ୟ ଅପରାଧ ରୂପେ ଗଣ୍ୟ ହେବ ଏବଂ ଏଥିରେ ଦୋଷୀ ସାବ୍ୟସ୍ତ ବ୍ୟକ୍ତିଙ୍କୁ ସମୁଚିତ ଶାସ୍ତି ବିଧାନ କରାଯିବ । ଏହି ଆଇନ ଅନୁଯାୟୀ ପ୍ରଥମ ଶ୍ରେଣୀ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ ବା ମେଟ୍ରୋପଲିଟାନ ମାଜିଷ୍ଟ୍ରେଟଙ୍କ ନ୍ୟୁନତମ କୌଣସି କୋର୍ଟରେ ଯୌତୁକ ଜନିତ ଅପରାଧର ବିଚାର ହୋଇ ପାରିବ ନାହିଁ ।

---

## ଗନ୍ଧମାର୍ଦ୍ଦନ ବକସାଇଟ୍ ପ୍ରକଳ୍ପ

ଗନ୍ଧମାର୍ଦ୍ଦନ ବକ୍‌ସାଇଟ ପ୍ରକଳ୍ପର ପାରିପାର୍ଶ୍ୱିକ ପ୍ରଭାବ ସମ୍ପର୍କରେ କେତେକ ଆଶଙ୍କା କରାଯାଉଛି । ସେଗୁଡ଼ିକ ହେଲା ନୃସିଂହନାଥ ଓ ହରିଶଙ୍କର ମନ୍ଦିର ତଥା ଝରଣାମାନଙ୍କ ଉପରେ ପ୍ରଭାବ ଏବଂ ସେଠାରେ ଥିବା ଦୁର୍ଲଭ ଓ ମୂଲ୍ୟବାନ ବୃକ୍ଷଲତା ଓ ଜଙ୍ଗଲ ସମ୍ପଦର କ୍ଷୟ ।

ବାଲକୋ ପ୍ରକଳ୍ପ କାର୍ଯ୍ୟକାରୀ ହେବା ପୂର୍ବରୁ ଏକ ପାରିପାର୍ଶ୍ୱିକ ସୁରକ୍ଷା ଯୋଜନା ରାଞ୍ଚିସ୍ଥିତ ମେଟାଲର୍ଜି ଆଣ୍ଡ ଇଞ୍ଜିନିୟରିଂ କନସଲଟାଣ୍ଟ ଲିମିଟେଡ୍‌ଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ସେହି ଯୋଜନାଟି ଭାରତ ସରକାରଙ୍କର ପରିବେଶ ବିଭାଗ ଦ୍ୱାରା ଅନୁଧ୍ୟାନ କରାଯାଇଥିଲା ଏବଂ ପରିବେଶ ସୁରକ୍ଷା ପାଇଁ ଏଥିରେ ଯଥେଷ୍ଟ ବ୍ୟବସ୍ଥା ଥିବା ହେତୁ ୧୯୮୪ ମସିହା ଅଗଷ୍ଟ ୧୬ ତାରିଖରେ ଏହି ପ୍ରକଳ୍ପଟିକୁ ସର୍ତ୍ତମୂଳକ ଅନୁମତି ଦିଆଯାଇଥିଲା ।

ଉଭୟ ମନ୍ଦିର ଏବଂ ଝରଣାମାନଙ୍କର ଜଳ ପ୍ରବାହ ଉପରେ ସମ୍ଭାବ୍ୟ କ୍ଷୟକ୍ଷତି ସଂପର୍କରେ ଆଲୋଚନା କରି ମାନ୍ୟବର ଓଡ଼ିଶା ହାଇକୋର୍ଟ ୧୯୮୫ ମସିହାରେ ମନ୍ଦିର ଓ ଝରଣା ଉପରେ କୌଣସି ପ୍ରକାର ପ୍ରଭାବ ନ ପକାଉଥିବା ଦୃଷ୍ଟିରୁ ଖନନ କାର୍ଯ୍ୟ କରିବାରେ ଅସୁବିଧା ନାହିଁ ବୋଲି ମତ ଦେଇଥିଲେ ।

ରାଜ୍ୟ ସରକାରଙ୍କର ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗଙ୍କ ତରଫରୁ ଗୋଟିଏ କମିଟି ଏହି ଯୋଜନାର ସମ୍ଭାବ୍ୟ କୁ-ପ୍ରଭାବ ସମ୍ପର୍କରେ ୧୯୮୫ ମସିହା ଜୁନ ମାସ ୧୮ ତାରିଖରେ ଅନୁଧ୍ୟାନ କରି ମତ ଦେଇଥିଲେ ଯେ ପାରିପାର୍ଶ୍ୱିକ ସୁରକ୍ଷା ଯୋଜନାକୁ ଯଦି କଡ଼ାକଡ଼ି ଭାବେ ପାଳନ କରାଯାଏ ଏବଂ ତାହା ଠିକ୍ ଭାବରେ କରାଯାଉଛି କି ନାହିଁ, ତା'ର ତଦାରଖ କରାଯାଏ, ତେବେ କୌଣସି ସମସ୍ୟା ସୃଷ୍ଟି ହେବନାହିଁ ।

ଏ ସଂପର୍କରେ କମିଟି କେତେକ ପରାମର୍ଶ ଦେଇଛନ୍ତି, ଯାହାକୁ କି ସରକାର ଗ୍ରହଣ କରିଛନ୍ତି ଏବଂ ପ୍ରକଳ୍ପ ଅଧିକାରୀ ତଥା ଏଥିରେ ସଂପୃକ୍ତ ଅନ୍ୟମାନଙ୍କୁ ତାହା ଜଣାଇ ଦିଆଯାଇଛି । ସେଗୁଡ଼ିକ ହେଲ :—

(କ) ପାରିପାର୍ଶ୍ୱିକ ସୁରକ୍ଷା ଯୋଜନାଗୁଡ଼ିକୁ ବାଲକୋ କର୍ତ୍ତୃପକ୍ଷ କଡ଼ାକଡ଼ି ଭାବେ ପାଳନ କରିବେ, ଯେତେଦୂର ସମ୍ଭବ କମ୍ ଜଙ୍ଗଲ ନଷ୍ଟ କରିବେ ଏବଂ ଯାହା ଜଙ୍ଗଲ ନଷ୍ଟ ହେବ, ତାହା ବଦଳରେ ନୂତନ ଜଙ୍ଗଲ ସୃଷ୍ଟି କରିବେ ।

(ଖ) ପାହାଡ଼ରୁ ମାଟି ବା ପଥର ଖସି ଆସି ଝରଣା ଶୁଖାଇ ଦେବା ଭଳି କାର୍ଯ୍ୟର ପ୍ରତିରୋଧ ବ୍ୟବସ୍ଥା ଗ୍ରହଣ କରିବେ ।

(ଗ) ଖଣିକାର୍ଯ୍ୟ ବିସ୍ଫୋରଣ ଫଳରେ ମନ୍ଦିର ଉପରେ କିଛି ଆଞ୍ଚ ଆସିବାର ଅଭିଯୋଗ ହେଲେ ତୁରନ୍ତ ଅନୁଧ୍ୟାନ କରିବେ ।

(ଘ) ଗନ୍ଧମାର୍ଦ୍ଦନ ପର୍ବତ ଉପରେ ଥିବା ଔଷଧ ଗୁଣ ସଂପନ୍ନ ବିରଳ ତଥା ମୂଲ୍ୟବାନ ବୃକ୍ଷଲତା-ମାନଙ୍କର ଚିହ୍ନଟ କରି ସେଗୁଡ଼ିକୁ ଅନ୍ୟତ୍ର ରୋପଣ କରିବା ।

(ଙ) ଖଣିକାର୍ଯ୍ୟ ସ୍ଥିର ରହିବା ସମୟରେ ଯଦି କୌଣସି ପାରିପାର୍ଶ୍ୱିକ ସମସ୍ୟା ଉପୁଜିବାର ଅଭିଯୋଗ ହେଲେ, ତୁରନ୍ତ ତାହାର ଅନୁଧ୍ୟାନ କରିବା ।

ଉତ୍ତରାଞ୍ଚଳ ରାଜସ୍ୱ କମିଶନରଙ୍କ ଅଧ୍ୟକ୍ଷତାରେ ପାରିପାର୍ଶ୍ୱିକ ପରିଯୋଜନା କମିଟି ଗଠନ କରାଯାଇଛି ଓ ଏହି କମିଟି ଗନ୍ଧମାର୍ଦ୍ଦନ ପାଇଁ ଯେଉଁ ପାରିପାର୍ଶ୍ୱିକ ସୁରକ୍ଷା ଯୋଜନା କରାହୋଇଛି, ତାହା ଠିକ୍ ଭାବରେ କାର୍ଯ୍ୟକାରୀ ହେଉଛି କି ନାହିଁ, ତଦାରଖ କରିବେ ।

୧୮-୬-୧୯୮୫ ତାରିଖରେ ବିଭାଗୀୟ କମିଟି ଗନ୍ଧମାର୍ଦ୍ଦନ ପରିଦର୍ଶନ କରି ମତ ଦେଇଛନ୍ତି ଯେ, ପାହାଡ଼ ଉପରି ଭାଗରେ ବାଲକୋର ଖଣିକାର୍ଯ୍ୟ ଫଳରେ ବର୍ଷକୁ ମାତ୍ର ୧୨ ହେକ୍ଟର ଜଙ୍ଗଲ ନଷ୍ଟ ହେବ, କିନ୍ତୁ ତାହା ବଦଳରେ ଅଧିକା ଜଙ୍ଗଲ ସୃଷ୍ଟି ହେବ । ଏତଦ୍‌ବ୍ୟତୀତ ଏରିଏଲ ରୋପ ୱେ, ୱାଗନ ଲୋଡିଂ ଟାଉନସିପ୍ ଓ ରେଲୱେ ସାଇଡିଂ ଯୋଗୁ ଯଥାକ୍ରମେ ୧୨'୧୩ ହେକ୍ଟର ୧୫'୯୭ ହେକଟର, ୨'୦୧ ହେକଟର ଓ ୨୫'୬୪ ହେକ୍ଟର ପରିମିତ ଜଙ୍ଗଲ ନଷ୍ଟ ହେଉଥିବା ପରିବର୍ତ୍ତେ କମ୍ପାନୀ ତରଫରୁ ସେହି ପରିମାଣର ଜଙ୍ଗଲ ସୃଷ୍ଟି କରାଯିବ ।

ଇତିମଧ୍ୟରେ ରାଜ୍ୟ ସରକାରଙ୍କର ଅନ୍ୟ ଏକ କମିଟି ଗନ୍ଧମାର୍ଦ୍ଦନ ପରିଦର୍ଶନ କରିଛନ୍ତି ଓ ଖଣିକାର୍ଯ୍ୟ ପାଇଁ ହେଉଥିବା ବିସ୍ଫୋରଣ ଫଳରେ ନୃସିଂହନାଥ ଓ ହରିଶଙ୍କର ମନ୍ଦିର ଉପରେ ପଡୁଥିବା ପ୍ରଭାବ ସମ୍ପର୍କରେ କମିଟିର ରିପୋର୍ଟକୁ ଅପେକ୍ଷା କରାଯାଉଛି ।

ଏହି ପରିପ୍ରେକ୍ଷୀରେ ବାଲକୋ ପ୍ରକଳ୍ପ ଦ୍ୱାରା ପରିବେଶ ଉପରେ ପଡୁଥିବା ପ୍ରଭାବଗୁଡ଼ିକୁ ଚିହ୍ନଟ କରାଯାଇ ସେଗୁଡ଼ିକର ନିରାକରଣ ପାଇଁ ବିହିତ ପଦକ୍ଷେପ ନେବା ଲାଗି ପରାମର୍ଶ ଦିଆଯାଇଛି । ପର୍ବତ ଉପରେ ଥିବା ମୂଲ୍ୟବାନ ଜଙ୍ଗଲ ସମ୍ପଦର କ୍ଷୟ ପରିମାଣ ଯଥେଷ୍ଟ କମ୍ ହେବାର ଆଶା କରାଯାଉଛି ଏବଂ ସେଠାରେ ବ୍ୟାପକ ନୂତନ ଜଙ୍ଗଲ ସୃଷ୍ଟି କରିବା ପାଇଁ ପରାମର୍ଶ ଦିଆଯାଉଥିବାରୁ ଜଙ୍ଗଲ ତଥା ଝରଣାମାନଙ୍କ ଉପରେ କୌଣସି କୁ-ପ୍ରଭାବ ପଡ଼ିବାର ଆଶଙ୍କା ନାହିଁ ।

କ୍ରୀଡ଼ା ଜଗତର ବିସ୍ମୟ

## ବାରବାଟି ଷ୍ଟାଡ଼ିୟମ

ଅକ୍ଟୋବର ୧୨ ରୁ ୧୬ ତାରିଖ ମଧ୍ୟରେ ୧୯୮୫ ମସିହା ଚତୁର୍ଥ ରାଜ୍ୟସ୍ତରୀୟ କ୍ରୀଡ଼ା ଉତ୍ସବ ବାରବାଟୀ ଷ୍ଟାଡ଼ିୟମଠାରେ ଅନୁଷ୍ଠିତ ହୋଇଯାଇଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜେ. ବି. ପଟ୍ଟନାୟକ ଏହି କ୍ରୀଡ଼ା ଉତ୍ସବ ଉଦ୍‌ଘାଟନ କରିବା ସଙ୍ଗେ ସଙ୍ଗେ ୧'୨୮ କୋଟି ଟଙ୍କା ବ୍ୟୟରେ ନିର୍ମିତ ବାରବାଟୀ ଷ୍ଟାଡ଼ିୟମର ପଶ୍ଚିମ ଗ୍ୟାଲେରୀ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଛନ୍ତି । ରାଜ୍ୟ ସରକାର ଗତବର୍ଷ ଏପ୍ରିଲ ମାସରେ ଏହି ଗ୍ୟାଲେରୀ ପାଇଁ ଅର୍ଥ ମଞ୍ଜୁର କରିଥିଲେ । ଗତବର୍ଷ ସେପ୍‌ଟେମ୍ବର ମାସରେ ଏହି ବିଶାଳ ଗ୍ୟାଲେରୀ କାମ ଆରମ୍ଭ ହୋଇ ଠିକ୍ ଏକବର୍ଷ ଅର୍ଥାତ୍ ଚଳିତବର୍ଷ ସେପ୍‌ଟେମ୍ବରରେ ଏହାର ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇଛି । ଅଧିକ ୬,୬୦୦ ଦର୍ଶକ ବସି ପାରିବାଭଳି ଏହି ଗ୍ୟାଲେରୀ ନିର୍ମାଣ ସମାପ୍ତ ହେବା ପରେ ବାରବାଟୀ ଷ୍ଟାଡ଼ିୟମରେ ମୋଟ ୪୦,୦୦୦ ଦର୍ଶକ ବର୍ତ୍ତମାନ ବସିପାରିବେ ।

ଓଡ଼ିଶାର ଐତିହାସିକ ରାଜଧାନୀ ରୂପେ ବିଦିତ କଟକ ସହର ଆଧୁନିକତା ନାମରେ ଯଦି କୌଣସି ବସ୍ତୁକୁ ନେଇ ଗର୍ବ କରିପାରେ ତା'ହେଲେ ସେ ହେଉଛି ଚମତ୍କାର ସ୍ଥାପତ୍ୟ ଓ ବିସ୍ମୟକର ନିର୍ମାଣ କୌଶଳରେ ଭରା ବାରବାଟୀ

ଷ୍ଟାଡିୟମ । ଓଡିଶାର ରାଜନୈତିକ ପଟ୍ଟପରିବର୍ତ୍ତନର ସୂତ୍ରଧର ତଥା ଦନ୍ଦ୍ୱ ଅତୀତ ସଂଗ୍ରାମ ଜନିତ ବିଜୟ ଓ ପରାଜୟର ମୂକ ସାକ୍ଷୀ ବାରବାଟୀ ଦୁର୍ଗର ଭଗ୍ନାବଶେଷ ସମ୍ମୁଖରେ ଏହି ଷ୍ଟାଡିୟମ ପ୍ରତିଷ୍ଠିତ ହୋଇ ଆଜି ରାଜ୍ୟର କ୍ରୀଡ଼ା ଜଗତରେ ଏକ ଗୌରବମୟ ସ୍ଥାନ ଅଧିକାର କରିଛି । ପ୍ରାୟ ୨୦ ଏକର ଜମି ଉପରେ ପ୍ରତିଷ୍ଠିତ ଉକ୍ତ ଷ୍ଟାଡିୟମ ଓଡିଶାର କ୍ରୀଡ଼ା ବିକାଶ କ୍ଷେତ୍ରରେ ଯେ ଏକ ଗୁରୁତ୍ୱପୂର୍ଣ୍ଣ ମାଇଲ ଖୁଣ୍ଟି ଏହା ନିଃସନ୍ଦେହରେ କୁହାଯାଇପାରେ ।

ବାରବାଟୀ ଷ୍ଟାଡିୟମ ଜନ୍ମବୃତ୍ତାନ୍ତ ବାସ୍ତବିକ ଅତି ଚିତ୍ତାକର୍ଷକ । ୧୯୪୯ ମସିହା ଅଗଷ୍ଟ ମାସର ଏକ ଅନୁଲ୍ଲିଖିତ ଅପରାହ୍ଣରେ ଏହା ଜନ୍ମର ପ୍ରଥମ ଶୁଭଶଂଖ ବାଜି ଉଠେ । ସେ ଦିନ କଲିକତାସ୍ଥିତ ଭବାନୀପୁର କ୍ଲବ ଓ ଓଡିଶା ଏକାଦଶ ମଧ୍ୟରେ ଏକ ପ୍ରଦର୍ଶନୀ ଫୁଟବଲ ମ୍ୟାଚକୁ ହଜାର ହଜାର ଦର୍ଶକ ମନଭରି ଉପଭୋଗ କରିବା ପରେ ମ୍ୟାଚ ଶେଷ ହୋଇ ଯେତେବେଳେ ପୁରସ୍କାର ବିତରଣ କାର୍ଯ୍ୟକ୍ରମ ଆରମ୍ଭ ହୁଏ, ସେତେବେଳେ ଉଚ୍ଛୃଙ୍ଖଳ ଓ ଫୁଟବଲ ପାଗଳ ଦର୍ଶକଙ୍କୁ କାର୍ଯ୍ୟକ୍ରମ ସ୍ଥଳୀରୁ ହଟାଇବା ପୋଲିସ ଓ ସଙ୍ଗଠକମାନଙ୍କ ଦ୍ୱାରା ଏକ ରକମ ଅସମ୍ଭବ ବ୍ୟାପାର ହୋଇପଡ଼ିଲା ।

ପରିସ୍ଥିତି ଅଣନିୟନ୍ତ୍ରଣାଧୀନ ହୋଇ ପଡ଼ିବାମାତ୍ରେ ଉକ୍ତ ଉତ୍ସବରେ ମୁଖ୍ୟ ଅତିଥିଭାବେ ଯୋଗ ଦେଇଥିବା ତତ୍କାଳୀନ ଓଡିଶା ମୁଖ୍ୟମନ୍ତ୍ରୀ ଡ଼କ୍ଟର ହରେକୃଷ୍ଣ ମହତାବ କଟକଠାରେ ଏକ ଷ୍ଟାଡିୟମ ପ୍ରତିଷ୍ଠା କରାଯିବ ବୋଲି ଘୋଷଣା କରିଥିଲେ । ତା ପରଦିନ ସେହି ଖେଳ ପଡ଼ିଆରେ ଭବାନୀପୁର କ୍ଲବ ଏବଂ ମହମେଡ଼ାନ୍ ସ୍ପୋର୍ଟିଙ୍ଗ କ୍ଲବ ମଧ୍ୟରେ ହେଉଥିବା ଫୁଟବଲ ମ୍ୟାଚ ଉତ୍ସବରେ ପୌରୋହିତ୍ୟ କରି ତତ୍କାଳୀନ ଓଡିଶା ଗଭର୍ଣ୍ଣର ଜନାବ୍ ଅସଫ୍ ଅଲ୍ଲୀ, ମୁଖ୍ୟମନ୍ତ୍ରୀଙ୍କ ପ୍ରସ୍ତାବକୁ ସମର୍ଥନ କରିଥିଲେ ।

ଓଡିଶା ଅଲମ୍ପିକ ଆସୋସିଏସନର ପ୍ରତିଷ୍ଠାତା ଡ଼କ୍ଟର ମହତାବ ବାରବାଟୀ ଷ୍ଟାଡ଼ିୟମ ନିର୍ମାଣ ପାଇଁ ପର୍ଯ୍ୟାପ୍ତ ପାଣ୍ଠିର ଅଭାବ ରହିବ ନାହିଁ ବୋଲି କହିଥିଲେ । ପାଣ୍ଠି ସଂଗ୍ରହ ନିମିତ୍ତ ବାରବାଟୀ ଲଟେରୀ ପ୍ରଚଳନ କରିବାର ପ୍ରସ୍ତାବ ଗୃହୀତ ହେଲା । ଏହି ପ୍ରସ୍ତାବକୁ ଓଡିଶା ସରକାର ୧୯୫୦ ମସିହାରେ ସ୍ୱୀକୃତି ପ୍ରଦାନ କଲେ । ପୋଲିସ ଇନସ୍ପେକ୍ଟର ଜେନେରାଲ ମିଃ ସି. ଏମ. ରାଇଟନେଭିଲଙ୍କ ନେତୃତ୍ୱରେ ରାଜ୍ୟ ପୋଲିସ ବିଭାଗ ରଙ୍ଗମଞ୍ଚରେ କୁସ୍ତି କସରତ ଓ ନାଟକାଭିନୟ ଆଦି ଆୟୋଜନ କରି ମୂଳପାଣ୍ଠି ସଂଗ୍ରହ କଲେ । ବାରବାଟୀ ଲଟେରୀ ନାନା ଉତ୍ଥାନ ଓ ପତନ ମଧ୍ୟଦେଇ ଗ୍ରଲିଲେ ମଧ୍ୟ ସମ୍ବଳ ସଂଗ୍ରହ ପାଇଁ ଏହା ଥିଲା ଏକ ଉତ୍ତମ ପନ୍ଥା । ଏହି ଲଟେରୀ ୧୯୫୧ ରୁ ୧୯୫୮ ପୁଣି ୧୯୬୨ ରୁ ୧୯୭୦ ପର୍ଯ୍ୟନ୍ତ ଚାଲିଥିଲା । ବାରବାଟୀ ଷ୍ଟାଡିୟମ ନିର୍ମାଣ କାର୍ଯ୍ୟ ୧୯୫୧ ମସିହାରେ ଆରମ୍ଭ ହୋଇ ବିଭିନ୍ନ ପର୍ଯ୍ୟାୟ ତଥା ଝଡ଼ଝଞ୍ଜା ମଧ୍ୟରେ ୧୯୭୦ ମସିହାରେ ସମ୍ପୂର୍ଣ୍ଣ ହେଲା । ୬୭ ଲକ୍ଷ ୬୪ ହଜାର ଟଙ୍କା ବ୍ୟୟ ବିନିମୟରେ ୪ଟି ଗ୍ୟାଲେରୀ, ଗୋଟିଏ ପାଭିଲିୟନ, ଗୋଟିଏ କ୍ଲବଘର, ଫାଟକ ଗୃହ, ଖେଳାଳୀ ଆବାସସ୍ଥଳୀ, କର୍ମଚାରୀ ବାସଗୃହ ଓ ଅଲମ୍ପିକ ଟାୱାର ଆଦି ନିର୍ମାଣ କରାଗଲା । ଏ ସବୁର ନିର୍ମାଣ ପଛରେ ଏହାର ସମ୍ପାଦକ ସ୍ୱର୍ଗତଃ ଭୈରବ ଚନ୍ଦ୍ର ମହାନ୍ତିଙ୍କ ଅବଦାନ ଚିରସ୍ମରଣୀୟ । ବାରବାଟୀ ଷ୍ଟାଡିୟମର ପ୍ରତ୍ୟେକ ଇଟା ଓ ପଥର ସ୍ୱର୍ଗତଃ ମହାନ୍ତିଙ୍କର ଐକାନ୍ତିକ ନିଷ୍ଠାର ସ୍ୱାକ୍ଷର ବହନ କରେ ।

---

## ଭବିଷ୍ୟତ କାର୍ଯ୍ୟପନ୍ଥା

୧୯୮୭ ମସିହା ଅକ୍ଟୋବର, ନଭେମ୍ବର ମାସରେ କଟକଠାରେ ଅନୁଷ୍ଠିତ ହେଉଥିବା ବିଶ୍ୱକପ ମ୍ୟାଚ ଭଳି ଅନ୍ତର୍ଜାତୀୟ ମ୍ୟାଚଗୁଡ଼ିକ ସୁବିଧାରେ ହୋଇ ପାରିବା ନିମନ୍ତେ ବାରବାଟୀ ଷ୍ଟାଡିୟମଠାରେ ଉଭୟ ପକ୍ଷ ଖେଳାଳୀମାନଙ୍କ ଡ୍ରେସିଙ୍ଗରୁମ ବ୍ୟବସ୍ଥା ଥିବା ଏକ ଆଧୁନିକ କ୍ରିକେଟ ପୋଭିଲିୟାନ ନିର୍ମାଣ କରାଯିବ । କ୍ରିକେଟ ଟେଷ୍ଟ ମ୍ୟାଚର ମାନ ହାସଲ କରିବା ତଥା ଅଧିକ ଦର୍ଶକ ଏହା ଦେଖି ପାରିବା ପାଇଁ ତିନି ନମ୍ବର ଗ୍ୟାଲେରୀର ସମ୍ପ୍ରସାରଣ ନିର୍ମାଣ କାର୍ଯ୍ୟକୁ ଅଗ୍ରାଧିକାର ଦିଆଯିବ ।



# ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଓଡ଼ିଶା ସରକାରଙ୍କ କେତେକ ସ୍ୱତନ୍ତ୍ର ଘୋଷଣା



* ରାଜ୍ୟର ଗ୍ରାମାଞ୍ଚଳରେ ରାସ୍ତା, ଶ୍ମଶାନ, ବନ୍ଧବାନ୍ଧ, କେନାଲ, ପୁଷ୍କରିଣୀ, ସରକାରୀ କାର୍ଯ୍ୟାଳୟ ଓ ସରକାରୀ ବାସଗୃହ ପାଇଁ ଥିବା ଜମିକୁ ଛାଡ଼ି ଅନ୍ୟ ସରକାରୀ ଜମିକୁ ଘରଡିହ ଉଦ୍ଦେଶ୍ୟରେ ଦଖଲ କରିଥିବା ଲୋକମାନଙ୍କୁ ସମ୍ପୃକ୍ତ ଜମିର ଅଧିକାର ସ୍ୱତ୍ୱ ପ୍ରଦାନ କରାଯିବ । ୧୯୮୫ ମାର୍ଚ୍ଚ ମାସ ୧୦ ତାରିଖରେ ଏହି ସରକାର ଶାସନଭାର ଗ୍ରହଣ କରିବା ପରଠାରୁ ଏହି ସୁବିଧା ଯୋଗାଇ ଦିଆଯିବ । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଯେଉଁ ଦୁର୍ବଳ ଶ୍ରେଣୀ ଲୋକମାନଙ୍କର ନିଜର ଘରଡ଼ିହ ନ ଥିବ ସେମାନେ ଏହି ସୁବିଧା ପାଇବାକୁ ଯୋଗ୍ୟ ବିବେଚିତ ହେବେ ଏବଂ ୪ ଡ଼େସିମିଲ ପର୍ଯ୍ୟନ୍ତ ଜମି ଯୋଗାଇ ଦିଆଯିବ ।

* ବାସଗୃହ ପାଇଁ ଯେଉଁ ପ୍ରଜାମାନେ ସମ୍ପୃକ୍ତ ଜମି ମାଲିକଙ୍କ ଅନୁମତି ନେଇ ଜମି ଦଖଲ କରିଥିବେ, ଓଡ଼ିଶା ଭୂ-ସଂସ୍କାର ଆଇନ ଅନୁଯାଇ ସେମାନଙ୍କ ନାମରେ ଜମି ସ୍ୱତ୍ୱ ସାବ୍ୟସ୍ତ ପାଇଁ ଦରଖାସ୍ତ କରିବା ଲାଗି ସେମାନଙ୍କୁ ଅଧିକ ସୁଯୋଗ ଦିଆଯିବ । ଦରଖାସ୍ତ ସଂଗ୍ରହ ପାଇଁ ସମୟ ସୀମା ୩ବର୍ଷ ବୃଦ୍ଧି କରାଯାଇଛି । ୧୯୮୧ ରେ ଶେଷ ହେଉଥିବା ସମୟସୀମା ମଧ୍ୟରେ ଯେଉଁମାନେ ଦରଖାସ୍ତ କରି ପାରି ନାହାନ୍ତି, ସେମାନେ ଏହାଦ୍ୱାରା ଉପକୃତ ହୋଇ ପାରିବେ ।

* ଜମିହୀନମାନଙ୍କୁ ଅଧିକ ସୁବିଧା ଦେବା ଉଦ୍ଦେଶ୍ୟରେ ଓଡ଼ିଶା ଭୂ-ସଂସ୍କାର ଆଇନ ଅନୁଯାୟୀ ଯେଉଁ ଜମିହୀନ ବ୍ୟକ୍ତିଙ୍କୁ ସିଲିଂ ବହିର୍ଭୂତ ଜମି ଦିଆଯାଉଥିଲା, ସେମାନଙ୍କୁ ଏଣିକି ଏକର ପିଛା ୪୦୦ ଟଙ୍କା ସଲାମି (ପ୍ରିମିୟମ) ଦେବାକୁ ପଡ଼ିବ ନାହିଁ ।

* ସିଲିଂ ଉଦ୍‌ବୃତ୍ତ ଜମି କିମ୍ବା ସରକାରୀ ପତିତ ଜମି ପାଇଥିବା ଭୂମିହୀନ ଲୋକମାନେ ଯଦି ଏ ପର୍ଯ୍ୟନ୍ତ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମରେ ଉପକୃତ ହୋଇ ନାହାନ୍ତି, ତେବେ ସେମାନଙ୍କୁ ଏଭଳି କାର୍ଯ୍ୟକ୍ରମରେ ଆବଶ୍ୟକ ସାହାଯ୍ୟ ଯୋଗାଇ ଦିଆଯିବ ।

* ସ୍ୱତନ୍ତ୍ର ଆଦିବାସୀ ଛାତ୍ରାବାସରେ ରହୁଥିବା ହରିଜନ ଓ ଆଦିବାସୀ ଛାତ୍ରମାନଙ୍କୁ ବର୍ତ୍ତମାନ ଦିଆଯାଉଥିବା ୫୦ ଟଙ୍କାରୁ ୭୦ ଟଙ୍କା ମାସିକ ବୃତ୍ତି ପରିମାଣକୁ ବୃଦ୍ଧି କରାଯିବ । ପରିବର୍ତ୍ତିତ ହାରରେ ପ୍ରଥମ ଶ୍ରେଣୀରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରମାନଙ୍କ ପାଇଁ ମାସିକ ୭୦ ଟଙ୍କା ଏବଂ ଷଷ୍ଠ ଶ୍ରେଣୀରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଙ୍କ ପାଇଁ ମାସିକ ୮୦ ଟଙ୍କା ଓ ଛାତ୍ରୀମାନଙ୍କ ପାଇଁ ମାସିକ ୮୫ ଟଙ୍କାକୁ ବୃଦ୍ଧି କରାଯାଇଛି ।

* ଅନାଥାଶ୍ରମଗୁଡ଼ିକୁ ଦିଆଯାଉଥିବା ସାହାଯ୍ୟ ପରିମାଣ ଚଳିତ ବର୍ଷ ନଭେମ୍ବର ପହିଲାରୁ ବୃଦ୍ଧି କରାଯିବ । ବର୍ତ୍ତମାନ ଅନ୍ତେବାସୀ ପିଛା ମାସିକ ୮୫ ଟଙ୍କାରୁ ୯୪ ଟଙ୍କା ମଧ୍ୟରେ ସାହାଯ୍ୟ ଦିଆ ଯାଉଥିବା ସ୍ଥଳେ ତାହା ମାସିକ ୧୪୫ ଟଙ୍କାକୁ ବୃଦ୍ଧି ପାଇବ ।

* ସରକାରୀ କାର୍ଯ୍ୟାଳୟ ଏବଂ ସରକାରୀ ଉଦ୍ୟୋଗଗୁଡ଼ିକରେ ଅଧିକ ସଂଖ୍ୟକ ମହିଳାଙ୍କୁ ନିଯୁକ୍ତି ଦେବା ପାଇଁ ଏକ ସ୍ୱତନ୍ତ୍ର ଅଭିଯାନ ହାତକୁ ନିଆଯିବ । ୦୦୦

# ରାଜ୍ୟରେ କ୍ରୀଡ଼ା ଜାଗରଣ

## ଜିଲ୍ଲା ସ୍ତରରେ ଷ୍ଟାଡ଼ିୟମ୍ ଓ ବ୍ଲକ୍ ସ୍ତରରେ ଖେଳ ପଡ଼ିଆ

— ମୁଖ୍ୟମନ୍ତ୍ରୀ —

ଶାରଦୀୟ ଦୁର୍ଗା ମହୋତ୍ସବର ଅବ୍ୟବହିତ ପୂର୍ବରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଅକ୍ଟୋବର ୧୨ ତାରିଖ ଦିନ କଟକ ନଗରୀର ଐତିହାସିକ କିଲ୍ଲା ପଡ଼ିଆ ନିକଟସ୍ଥ ବାରବାଟୀ ଷ୍ଟାଡିୟମ୍‌ର ୫ମ ଦର୍ଶକ ଗ୍ୟାଲେରୀ ଉଦ୍‌ଘାଟନ କରିଥିଲେ । ଏହି ଉତ୍ସବରେ ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍‌ର କାର୍ଯ୍ୟକାରୀ ସଭାପତି ତଥା ପୂର୍ବତନ ରାଷ୍ଟ୍ରମନ୍ତ୍ରୀ, ଶ୍ରୀ ବସନ୍ତ କୁମାର ବିଶ୍ୱାଳ, ପଦସ୍ଥ କର୍ମଚାରୀ, ଭଦ୍ରବ୍ୟକ୍ତି ଓ କ୍ରୀଡ଼ା ପ୍ରେମୀ ଯୋଗ ଦେଇଥିଲେ ।

ଏହି ଶୁଭ ଅବସରରେ ମୁଖ୍ୟମନ୍ତ୍ରୀ ଉଦ୍‌ବୋଧନ ଦେଇ କହିଲେ ଯେ ଦିନେ ବାରବାଟୀ ଷ୍ଟାଡ଼ିୟମ୍ ଏ ରାଜ୍ୟରେ କ୍ରୀଡ଼ା କ୍ଷେତ୍ରରେ ପ୍ରବଳ ଉତ୍ସାହ ସୃଷ୍ଟି କରିଥିଲା । ଗୋଟିଏ ଷ୍ଟାଡ଼ିୟମ୍ ଥରେ ନିର୍ମିତ ହୋଇଗଲେ ତା'ର କାର୍ଯ୍ୟ ଶେଷ ହୋଇଯାଏ ନାହିଁ । ତହିଁରେ ଅନେକ କାର୍ଯ୍ୟ ବାକୀ ପଡ଼ିଥାଏ ଓ କାଳକ୍ରମେ ସେସବୁ କାର୍ଯ୍ୟ ସଂପୂର୍ଣ୍ଣ କରାଯାଏ । ଏଭଳି କୌଣସି ନିର୍ଦ୍ଦିଷ୍ଟ ଷ୍ଟାଡ଼ିୟମ୍ ନାହିଁ, ଯାହାକୁ ସଂପୂର୍ଣ୍ଣ ବୋଲି କୁହାଯାଇପାରେ । ମଝିରେ ମଝିରେ ଅନେକ ସମୟରେ ଷ୍ଟାଡିୟମ୍‌ର ବିସ୍ତାର କରାଯାଇଥାଏ ଏବଂ ନୂଆ ନୂଆ କ୍ରୀଡ଼ା ପ୍ରତିଯୋଗିତା ପାଇଁ କ୍ଷେତ୍ର ପ୍ରସ୍ତୁତ କରାଯାଇଥାଏ ।

ବାରବାଟୀ ଷ୍ଟାଡ଼ିୟମ୍‌ର ସଂପ୍ରତିକ ପରିସ୍ଥିତିରେ ଆମର ବିଶେଷ ଭାବରେ ଭୈରବ ବାବୁଙ୍କୁ ସ୍ମରଣ କରିବା କଥା । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଏ ଦିଗରେ ପ୍ରବଳ ଉତ୍ସାହ ସୃଷ୍ଟି କରିଥିଲେ । ଆଜି ବାରବାଟୀ ଷ୍ଟାଡ଼ିୟମ୍‌ର ଯେଉଁ ଉନ୍ନତି ସମ୍ଭବ ହୋଇଛି, ତାହା ଯେ ରାଜ୍ୟ ସରକାରଙ୍କ ଐକାନ୍ତିକ ପ୍ରଚେଷ୍ଟା ଓ ସାହାଯ୍ୟ ଯୋଗୁଁ ହୋଇଛି, ଏଥିରେ ସନ୍ଦେହର ଅବକାଶ ନାହିଁ । ବର୍ତ୍ତମାନର ଆସୋସିଏସନ୍‌ର କାର୍ଯ୍ୟକାରୀ ସଭାପତି ଏହି ଷ୍ଟାଡ଼ିୟମ୍‌ର ସଂପ୍ରସାରଣ ଏବଂ ଇନ୍‌ଡୋର ଷ୍ଟାଡ଼ିୟମ୍‌ର ନିର୍ମାଣ କ୍ଷେତ୍ରରେ ଜଣେ କ୍ରୀଡ଼ାବିତ୍ ଭାବେ ଯେଉଁ ପ୍ରବଳ ଉତ୍ସାହ ସହକାରେ ଉଦ୍ୟମ ଆରମ୍ଭ କରିଛନ୍ତି, ସେଥି ନିମନ୍ତେ ସେ ଧନ୍ୟବାଦାର୍ହ । ଯେକୌଣସି କାର୍ଯ୍ୟ ଆରମ୍ଭ କରାଗଲା ବେଳେ ସେଥିରେ ଜଣେ ଜଣେ ବ୍ୟକ୍ତିଙ୍କର ଉଦ୍ୟମ ଓ ବିଶିଷ୍ଟ ଭୂମିକା ରହିବା ବାଞ୍ଛନୀୟ, ତା' ନ ହେଲେ କୌଣସି କାର୍ଯ୍ୟ ହୋଇପାରେ ନାହିଁ ।

ବାରବାଟୀ ଷ୍ଟାଡ଼ିୟମ୍ ଏ ରାଜ୍ୟର କ୍ରୀଡ଼ାବିତ୍ ତଥା କ୍ରୀଡ଼ାପ୍ରେମୀମାନଙ୍କ ମଧ୍ୟରେ ଯଥେଷ୍ଟ ଉତ୍ସାହ ସୃଷ୍ଟି କରିଛି । ଆମ ରାଜ୍ୟରେ କ୍ରୀଡ଼ାର ମାନବୃଦ୍ଧି ନିମନ୍ତେ ଏକ ସ୍ୱତନ୍ତ୍ର କ୍ରୀଡ଼ା ନୀତି ଗ୍ରହଣ କରାଯାଇଛି । ଆମର ଛୋଟ ଛୋଟ ପିଲାମାନଙ୍କ ମଧ୍ୟରେ ଯେଉଁ ବିଚକ୍ଷଣ ଶକ୍ତି ରହିଛି, ସେହି ଶକ୍ତିର ଯଥାଯଥ ବିକାଶ ଘଟାଇ ସେମାନଙ୍କୁ ବିଶିଷ୍ଟ କ୍ରୀଡ଼ାବିତ୍ ଭାବେ ଗଢ଼ିବା ଓ ସର୍ବତ୍ର ସେମାନଙ୍କର ସମ୍ମାନ ବୃଦ୍ଧି କରାଇବା ଲାଗି ଉଦ୍ୟମ କରାଯାଉଛି । ଏହି ପରିପ୍ରେକ୍ଷୀରେ ଗାଁ ଗହଳରେ ଯେଉଁଠି ସ୍କୁଲ ଖେଳପଡ଼ିଆ ରହିଛି, ସେସବୁ ଖେଳପଡ଼ିଆକୁ କିଭଳି କ୍ରୀଡ଼ାପୋଯୋଗୀ କରାଯାଇପାରିବ ତାହାହିଁ ସରକାରଙ୍କର ପ୍ରଥମ ନୀତି । ସେହି ଦୃଷ୍ଟିରୁ ପ୍ରତ୍ୟେକ ବ୍ଳକରେ ଅନ୍ତତଃ ଗୋଟିଏ ଲେଖାଏଁ ଭଲ ଖେଳପଡ଼ିଆ ସୃଷ୍ଟି କରି ତାହାକୁ ବିଶେଷ ଭାବରେ କ୍ରୀଡ଼ା ଉପଯୋଗୀ କରାଯିବ । ଏହା ଫଳରେ ଓଡ଼ିଶାର ପ୍ରତ୍ୟେକ ବ୍ଲକ କ୍ରୀଡ଼ା ପାଇଁ ସମସ୍ତ ପ୍ରକାରର ସୁବିଧା ସୁଯୋଗ ପାଇ ପାରିବେ । ଏହା ବ୍ୟତୀତ ଯେଉଁ ପିଲାଙ୍କ ମଧ୍ୟରେ କ୍ରୀଡ଼ା ଶକ୍ତି ପରିଲକ୍ଷିତ ହେବ, ସେମାନଙ୍କୁ ବିଭିନ୍ନ ପ୍ରକାରର ବୃତ୍ତି ଦେବା ନିମନ୍ତେ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହି ବୃତ୍ତିଗୁଡ଼ିକ ସ୍କୁଲ, କଲେଜ ଓ ଜିଲ୍ଲା ସ୍ତରରେ ଦିଆଯିବ । ଏପରି କି ପ୍ରଦେଶ ସ୍ତରରେ ମଧ୍ୟ ଏହି ବୃତ୍ତି ଦିଆଯିବ । ଯେଉଁ କ୍ରୀଡ଼ାବିତ୍‌ମାନେ ନିଖିଳ ଭାରତ କ୍ରୀଡ଼ା ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ଭଲ କରିଥିବେ ଓ ପ୍ରତିଯୋଗିତାରେ ସଫଳତା ଲାଭ କରିଥିବେ, ସେମାନଙ୍କୁ ସ୍ୱତନ୍ତ୍ର ପୁରସ୍କାର ଦେବା ବ୍ୟବସ୍ଥା କରାଯାଉଛି । ଯେଉଁ ଛାତ୍ରଛାତ୍ରୀମାନେ ବିଚକ୍ଷଣ କ୍ରୀଡ଼ା ପ୍ରତିଭାର ଅଧିକାରୀ,

ସେମାନଙ୍କ ସମସ୍ତ ଖର୍ଚ୍ଚ ବହନ କରି ସରକାର ସେମାନଙ୍କୁ ସ୍ୱତନ୍ତ୍ର ତାଲିମ ଦେବା ପାଇଁ ବନ୍ଦୋବସ୍ତ କରିବେ । ମୋଟ ଉପରେ ଓଡ଼ିଶାରେ ଏକ କ୍ରୀଡ଼ାର ଜାଗରଣ ସୃଷ୍ଟି କରିବା ସରକାରଙ୍କ ଲକ୍ଷ୍ୟ । ଏହା ଫଳରେ ଓଡ଼ିଶାର ପିଲମାନଙ୍କର ଯେଉଁ ଶକ୍ତି ନିହିତ ରହିଛି, ତାହା ମହାଭାରତୀୟ ସ୍ତରରେ ପ୍ରମାଣିତ ହୋଇ ପାରିବ ଏବଂ ଓଡ଼ିଶାର ଖେଳାଳୀମାନେ ବିଭିନ୍ନ କ୍ଷେତ୍ରରେ ସମ୍ମାନ ଲାଭକରି ପାରିବେ, ଏହାହିଁ ହେଉଛି ରାଜ୍ୟ ସରକାରଙ୍କ ସଂକଳ୍ପ ଏବଂ ଏଥିନିମନ୍ତେ ଆଗାମୀ ୫ ବର୍ଷ ମଧ୍ୟରେ ବିଭିନ୍ନ ଜିଲ୍ଲା ସ୍ତରରେ ଷ୍ଟାଡ଼ିୟମ୍ ନିର୍ମାଣଠାରୁ ଆରମ୍ଭ କରି ଅନ୍ୟାନ୍ୟ ପରିକଳ୍ପନା କାର୍ଯ୍ୟକାରୀ କରାଯିବ ।






# ଭାରତ ମହାସାଗରରେ ଅଶାନ୍ତି

ଶ୍ରୀ ଆଲୋକ ଶତପଥୀ

ଏଇ କେତେଦିନ ହେଲା ଭାରତ ମହାସାଗରସ୍ଥ ସିଂହଳ ଦ୍ୱୀପରେ ଅଶାନ୍ତିର ଝଡ ବହୁଛି । ସିଂହଳୀ ଓ ଭାରତୀୟ ବଂଶୋଦ୍ଭବ ତାମିଲଭାଷୀ ଅଧିବାସୀଙ୍କ ମଧ୍ୟରେ ଭୀଷଣ ସଂଘର୍ଷର ସୂତ୍ରପାତ ହୋଇଛି । ଜାଫନା ଜେଲ୍ ଭିତରେ କେତେ ଜଣ ତାମିଲ୍ ଅପରାଧୀଙ୍କୁ ସିଂହଳୀ ସିପାହୀମାନେ ହତ୍ୟା କଲେ । ସେ ହତ୍ୟାର ପ୍ରତିଶୋଧ ସ୍ୱରୂପ ବୋଧହୁଏ ହତ୍ୟାକରିବା ଆବଶ୍ୟକ ଥିଲା । ତାମିଲ୍ ଭାଷୀମାନେ ୧୩ଜଣ ସିଂହଳୀ ସୈନିକଙ୍କୁ ହତ୍ୟା କଲେ । ସେ ଘଟଣାର ପରେ ପରେ ସମଗ୍ର ଦ୍ୱୀପରେ ଶ୍ରୀଲଙ୍କାର ୨୪ଟି ଯାକ ଜିଲ୍ଲାରେ ଆଖି ପିଛୁଳାକେ ବିଦ୍ରୋହର ବହ୍ନି ଜଳି ଉଠିଲା । ଏହି ସାଂପ୍ରଦାୟିକ ଦଙ୍ଗାରେ ବର୍ବରୋଚିତ ନାରକୀୟ ହତ୍ୟା, ଲୁଟତରାଜ, ଅଗ୍ନିକାଣ୍ଡ, ଗୋଳାବାରୁଦ ଫିଙ୍ଗା, ଗୁଳିବର୍ଷଣ ଆଦି ଅନେକ ଘଟଣା ହେଲା ଯହିଁରେ ସମୃଦ୍ଧ ଶ୍ରୀଲଙ୍କା ଦ୍ୱୀପ ଶ୍ରୀହୀନ ହୋଇଗଲା । ଏହି ଦ୍ୱୀପରେ ଆଗରୁ ମଧ୍ୟ ସାଂପ୍ରଦାୟିକ ଦଙ୍ଗା, ହାଙ୍ଗାମା ଏକାଧିକ ବାର ହୋଇଥିଲା ସତ କିନ୍ତୁ ଏ ଘଟଣା ପୂର୍ବବର୍ତ୍ତୀ ସମସ୍ତ ଘଟଣାକୁ ବଳିଗଲା ।

ଶ୍ରୀଲଙ୍କାର ମୋଟ ଜନସଂଖ୍ୟା ୧୯୬୧ ଜନଗଣନା ଅନୁସାରେ ଏକକୋଟି ସତେଇଶ ଲକ୍ଷ । ତା' ମଧ୍ୟରୁ ତାମିଲଭାଷୀ ସ୍ଥାୟୀ ଅଧିବାସୀଙ୍କ ସଂଖ୍ୟା ୧୪ ଲକ୍ଷ ଏବଂ ଅନ୍ୟାନ୍ୟ ତାମିଲଭାଷୀଙ୍କ ସଂଖ୍ୟା ୧୧ଲକ୍ଷ । ଅବଶ୍ୟ ବିଗତ ୨୦/୨୨ ବର୍ଷ ଭିତରେ ତାମିଲଭାଷୀଙ୍କ ସଂଖ୍ୟା ବହୁମାତ୍ରାରେ ବଢ଼ିଛି । ଏବେ ଉପୁଜିଥିବା ସଂଘର୍ଷ ସିଂହଳୀ ଓ ତାମିଲ ଦୁଇଟି ଭାଷାଗତ ଗୋଷ୍ଠୀର ସଂଘର୍ଷ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀଲଙ୍କାରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହେବା ଦିନଠାରୁ ଉକ୍ତ ଉଭୟ ଗୋଷ୍ଠୀ ମଧ୍ୟରେ ବରାବର ଅସନ୍ତୋଷ, ବିଦ୍ୱେଷ ଓ ଅସହିଷ୍ଣୁତାର ବହ୍ନି ହୁହୁଳୁଛି । ଶ୍ରୀମତୀ ବନ୍ଦରନାୟକଙ୍କ ଶାସନ କାଳରେ ମଧ୍ୟ ୧୯୫୬ ମସିହାରେ ଥରେ ହଠାତ୍ ବିସ୍ଫୋରଣ ହୋଇଥିଲା । ତାମିଲଗୋଷ୍ଠୀର କେତେକ ମୌଳିକ ଦାବୀ ଗ୍ରହଣ କରିନେବା ଫଳରେ ଅବସ୍ଥା ଶାନ୍ତ ପଡ଼ିଥିଲା ।

ଇତିହାସ ପ୍ରସିଦ୍ଧ ସିଂହଳ ଦ୍ୱୀପ ବାସ୍ତବରେ କାହାର ? ଏହି ପ୍ରଶ୍ନ ସିଂହଳୀ ଅଧିବାସୀଙ୍କ ମନରେ ଆଲୋଡନ ସୃଷ୍ଟି କରିଛି । ଏକ ପକ୍ଷରେ ସିଂହଳୀମାନେ ଆପଣାକୁ ମୂଳ ଅଧିବାସୀ ବୋଲି ଦାବୀ କରୁଥିବା ବେଳେ ଅନ୍ୟ ପକ୍ଷରେ ତାମିଲଭାଷୀମାନେ ନିଜକୁ ଆଦି-ଅଧିବାସୀ ବୋଲି ଦାବୀ କରନ୍ତି । ଏ ପ୍ରଶ୍ନର ସଠିକ୍ ଉତ୍ତର ଦେବାପାଇଁ କେହି ସମର୍ଥ ନୁହଁନ୍ତି । ତଥାପି ସହାବସ୍ଥାନର ସାମାନ୍ୟ ନୀତିନିୟମ ଲଂଘନ ପୂର୍ବକ ଉଭୟ ଗୋଷ୍ଠୀର ଜୀବନଯାତ୍ରା ଚାଲିଛି । ବୌଦ୍ଧଧର୍ମ ମୂଳଭୂଖଣ୍ଡ ଭାରତବର୍ଷରୁ ଏହି ଦ୍ୱୀପକୁ ଆସିବା ପୂର୍ବରୁ କେଉଁମାନେ ବସବାସ କରିଥିଲେ; ତାମିଲ୍‌ମାନେ ନା ସିଂହଳୀମାନେ ? —ଏ ପ୍ରଶ୍ନର ଉତ୍ତର ଆଜି କିଏ ଦେଇପାରିବ ? ସିଂହଳ ସରକାର ଉଭୟ ସିଂହଳୀ ଓ ତାମିଲ୍ ଭାଷାକୁ ରାଜକୀୟ ମର୍ଯ୍ୟାଦା ଦେଇଛନ୍ତି । ଶ୍ରୀଲଙ୍କାର ଶାସନ ବିଧାୟକ ସଭାରେ ଭାରତୀୟ ବଂଶୋଦ୍ଭବ ତାମିଲମାନେ ନିର୍ବାଚିତ ହୋଇ ସଦସ୍ୟତା କରୁଛନ୍ତି । ଛୋଟ ବଡ଼ ଚାକିରୀରେ ତାମିଲମାନେ ଅଛନ୍ତି । ସିଂହଳୀ ଭାଷୀଙ୍କ ସଂଖ୍ୟା ଦୃଷ୍ଟେ ତାମିଲଭାଷୀ ସଂଖ୍ୟା ନ୍ୟୂନ ହେଲେ ହେଁ ପ୍ରଶାସନ, ସରକାର, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ସେମାନଙ୍କ ପ୍ରତି ପକ୍ଷପାତ କରାଯାଉଥିବା ଅଭିଯୋଗ ହୁଏ ।

ସାଧାରଣତଃ ସିଂହଳୀମାନେ ବୌଦ୍ଧ । ଇଂରେଜ ଶାସନ କାଳରେ ସୁବିଧା ଭୋଗୀ ସିଂହଳୀ ଗୋଷ୍ଠୀରୁ ଅନେକେ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିଛନ୍ତି । ତାମିଲଭାଷୀମାନେ ସାମାନ୍ୟତଃ ହିନ୍ଦୁ । ବିଗତ ତିନୋଟି ଦଶକ ମଧ୍ୟରେ ଘଟି ଯାଇଥିବା ସାଂପ୍ରଦାୟିକ ଦଙ୍ଗାଗୁଡ଼ିକ ଦୁଇଟି ଧର୍ମର ଦ୍ୱନ୍ଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ବୌଦ୍ଧ ସିଂହଳୀମାନେ ହିନ୍ଦୁତାମିଲମାନଙ୍କୁ ହଇରାଣ, ହରକତ, ଅପଦସ୍ଥ, ଆହତ-ହତ କଲେ ଓ ଏପରି ଅତ୍ୟାଚାର କରାଗଲା ଯେ, ଆଭିଜାତ୍ୟ ସଂପନ୍ନ ଉଚ୍ଚରାଜ କର୍ମଚାରୀ, ରାଜନୀତିଜ୍ଞମାନେ ମଧ୍ୟ ଅତ୍ୟାଚାରିତ ହେଲେ ଏବଂ ଧାର୍ମିକ ଅସହିଷ୍ଣୁତାର ଶିକାର ହେଲେ । ପୂର୍ବରୁ ଧର୍ମାନ୍ତରିତ ସିଂହଳୀ ଖ୍ରୀଷ୍ଟିୟାନ ଗୋଷ୍ଠୀ ବୌଦ୍ଧ ଓ ହିନ୍ଦୁମାନଙ୍କର ପାରସ୍ପରିକ ସଂଘର୍ଷରେ ବେଶ୍ ଆନନ୍ଦ ଲାଭ କରି ପାରିଲେ । ସିଂହଳୀ ମାତ୍ରେ ଏ ସଂଘର୍ଷରେ ଅଂଶୀଦାର ଥିଲେ ବୋଲି କହିବା ନିତାନ୍ତ ଅସମୀଚୀନ ହେବ ।

ଶ୍ରୀଲଙ୍କା ଓ ଭାରତର ସାଂସ୍କୃତିକ ସଂପର୍କ ଅତିପ୍ରାଚୀନ । ଏହି ଉପଦ୍ୱୀପରେ ଦାଠା ରାଜବଂଶର ରାଜାମାନେ ସନାତନୀ ଥିଲେ, ଭାରତୀୟ ବଂଶୋଦ୍ଭବ ଥିଲେ । ବୌଦ୍ଧ ଯୁଗରେ କଳିଙ୍ଗାଧିପତି ରାଜବଂଶୀୟମାନେ ବୌଦ୍ଧ ଧର୍ମକୁ ସେଠାରେ ପହଞ୍ଚାଇଥିଲେ । ମହେନ୍ଦ୍ରନାଥ, ଗୋରଖନାଥ ପ୍ରଭୃତି ନାଥପନ୍ଥୀ ଯୋଗୀମାନେ ମଧ୍ୟ ଧର୍ମ ପ୍ରଚାର କରିଥିଲେ । ପାଲିଭାଷାରେ ଲିଖିତ ବୌଦ୍ଧଗ୍ରନ୍ଥଗୁଡ଼ିକ ଉଭୟ ପାଲି ଓ ସିଂହଳୀ ଭାଷାରେ ବହୁ ସଂଖ୍ୟାରେ ଆଜି ମଧ୍ୟ ବୌଦ୍ଧବିହାର ଗୁଡ଼ିକରେ ସୁରକ୍ଷିତ ଅଛି । ଇଂରେଜ ଶାସନ କାଳରେ ଯେକୌଣସି କାରଣରୁ ହେଉନା କାହିଁକି ସିଂହଳୀ ଏବଂ ଭାରତୀୟ ବଂଶୋଦ୍ଭବ ତାମିଲଭାଷୀଙ୍କ ମଧ୍ୟରେ କେବଳ ସୁସଂପର୍କ ସୁରକ୍ଷିତ ହୋଇନଥିଲା, ଅଧିକନ୍ତୁ ସବୁକ୍ଷେତ୍ରରେ ତାମିଲମାନଙ୍କ ପାଇଁ ସୁବିଧା ସୁଯୋଗର ଦ୍ୱାର ଉନ୍ମୁକ୍ତ ରହିଥିଲା । ଶ୍ରୀଲଙ୍କା ସ୍ୱାଧୀନତା ପାଇବା ସମୟର ପରିସ୍ଥିତି ସହ ତୁଳନା କଲେ ତାମିଲମାନଙ୍କ ସୁବିଧା କିପରି କ୍ରମେ ସଙ୍କୁଚିତ କରାଯାଉଛି, ତାହା ସ୍ପଷ୍ଟ ଜଣା ପଡେ । ୧୯୪୮ରେ ସାଧାରଣ ପ୍ରଶାସନିକ ସେବାରେ ତାମିଲଭାଷୀଙ୍କ ସଂଖ୍ୟା ୩୬% ଥିବାବେଳେ ବର୍ତ୍ତମାନ ମାତ୍ର ୫% । ସୈନ୍ୟବାହିନୀରେ ତାମିଲଭାଷୀ ପ୍ରାୟ ନାହାନ୍ତି ।

ବିଶ୍ୱବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ କ୍ରମେ କ୍ରମେ ସଂଖ୍ୟା ସଙ୍କୁଚିତ କରି ବର୍ତ୍ତମାନ ମାତ୍ର ଶତକଡା ୧୬ ଭାଗ ଏବଂ ଇଞ୍ଜିନିୟରିଂ ଶିକ୍ଷାରେ ୨୦ ପ୍ରତିଶତ ଅଟେ । ଦେଶର ସାଧାରଣ ନାଗରିକ ଭାବେ ସମାନ ପ୍ରକାରର ସୁବିଧା ପାଇଁ ହକ୍‌ଦାର ହେଲେ ମଧ୍ୟ ବିଭିନ୍ନ ସମୟରେ ଆଇନ ପ୍ରଣୟନ କରି ସୁବିଧା-ସଂକୋଚନ କରାଯାଇଅଛି ।

ବର୍ତ୍ତମାନର ଅଶାନ୍ତି ଫଳରେ ପ୍ରାୟ ଦଶଲକ୍ଷ ଲୋକ ଦୈନନ୍ଦିନ ଜୀବନଧାରଣ ପାଇଁ ଆବଶ୍ୟକ ସାମଗ୍ରୀ ହରାଇ ବାସଚ୍ୟୁତ ହୋଇଛନ୍ତି । ଶ୍ରୀଲଙ୍କାର ଅର୍ଥନୀତି ଚା, କଫି, ରବର ତଥା ମସଲା ଉପରେ ନିର୍ଭର କରେ । ବିଦେଶକୁ କୁଟୀର ଶିଳ୍ପ ସାମଗ୍ରୀ, ଚା, କଫି, ରବର ରପ୍ତାନୀ କରି ଯଥେଷ୍ଟ ବୈଦେଶିକ ମୁଦ୍ରା ଆମଦାନୀ କରିଥାଏ । ଦଶ ଲକ୍ଷ ଲୋକ ବାସ, ଗ୍ରାସ ହରାଇବା ସଙ୍ଗେ ସଙ୍ଗେ କାମ ଧନ୍ଦା ମଧ୍ୟ ହରାଇଛନ୍ତି ଏବଂ ଅନ୍ୟ ପକ୍ଷରେ ଶ୍ରୀଲଙ୍କା ସେତିକି ପରିମାଣରେ ଜନଶ୍ରମ-ଶକ୍ତି ହରାଇଛି । ସେ ଦେଶର ଅର୍ଥନୀତି ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିବ । ଏକେତ ଶିଳ୍ପଜାତ ପଦାର୍ଥରେ ଶ୍ରୀଲଙ୍କା କେବେ ଆତ୍ମନିର୍ଭରଶୀଳ ନଥିଲା । ପ୍ରାକୃତିକ ଓ କୁଟୀର-ଶିଳ୍ପ-ଜାତ ଉତ୍ପାଦନର ବିନିୟମରେ ଆବଶ୍ୟକୀୟ ବସ୍ତୁ ଅନ୍ୟଦେଶମାନଙ୍କରୁ ଯୋଗାଡ କରୁଥିଲା । ସାଂପ୍ରତିକ ଅଶାନ୍ତି ଶ୍ରୀଲଙ୍କାର ଅର୍ଥନୀତିକୁ ଦୋହଲାଇ ଦେବ; ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

୧୯୪୮ ଠାରୁ ତାମିଲଭାଷୀ ଭାରତୀୟ ବଂଶୋଦ୍ଭବଙ୍କ ଉପରେ କ୍ରମାଗତ ଅତ୍ୟାଚାର, ଶୋଷଣ ଓ ପେଷଣ ନୀତି ଫଳରେ ଜାଗ୍ରତ ତାମିଲ ସମାଜରେ ପ୍ରତିକ୍ରିୟା ସୃଷ୍ଟି ହେବା ସାଧାରଣ କଥା । ତା'ର ପରିଣାମ ସ୍ୱରୂପ ମିଳିତ ତାମିଲ ମୁକ୍ତି ସାମ୍ମୁଖ୍ୟ ଭଳି ରାଜନୈତିକ ଦଳ ଜନ୍ମ ନେଲା । ଏହି ଦଳରେ ଉଭୟ ଚରମ ପନ୍ଥୀ ଓ ନରମ ପନ୍ଥୀ ଲୋକ ରହିଛନ୍ତି । ଦ୍ୱୀପର ଉତ୍ତରରେ ଅବସ୍ଥିତ ଜାଫନା ଜିଲ୍ଲା ହିନ୍ଦୁ ତାମିଲ୍ ଅଧ୍ୟୁଷିତ ଜିଲ୍ଲା । ଏଠାରେ ମାତ୍ର ଶତକଡା ୧ ଭାଗ ସିଂହଳୀ । ତେଣୁ ତାମିଲ୍-ମୁକ୍ତି-ସଂଗ୍ରାମ ଆନ୍ଦୋଳନର କେନ୍ଦ୍ରସ୍ଥଳ ଜାଫନା ଅଟେ । ନିକଟରେ ଘଟିଯାଇଥିବା ସାଂପ୍ରଦାୟିକ ଦଙ୍ଗାରେ ଶିକାର ହୋଇଥିବା ବାସଚ୍ୟୁତ ତାମିଲ୍‌ମାନଙ୍କୁ ଭାରତୀୟ ଜାହାଜ ଯୋଗେ ଜାଫନା ପହଞ୍ଚାଇ ଦିଆଯାଇଛି । ହଜାର ହଜାର ଲୋକେ ପିଲାକବିଲା ଧରି ଭୋକ ଉପାସରେ ପ୍ରାଣଭୟରେ ଚାଲିଚାଲି ଜାଫନା ପହଞ୍ଚୁଛନ୍ତି । ଆହୁରି ଅନେକ ନିକଟବର୍ତ୍ତୀ ସ୍କୁଲ କଲେଜରେ ଶରଣାର୍ଥୀ ଶିବିରରେ ଆଶ୍ରୟ ଗ୍ରହଣ କରିଛନ୍ତି । ଆଜି ମଧ୍ୟ ସଂପୂର୍ଣ୍ଣ ଶ୍ରୀଲଙ୍କାରେ ଆତଙ୍କରାଜ ଚାଲିଛି ।

ଆକସ୍ମିକ ସାଂପ୍ରଦାୟିକ ଦଙ୍ଗାରେ ସିଂହଳୀ ସୈନ୍ୟବାହିନୀ ଶାନ୍ତିରକ୍ଷା ପରିବର୍ତ୍ତେ ନିଜେ ଦଙ୍ଗାରେ ଭାଗ ନେଲା । କୁହାଯାଏ, ପ୍ରଧାନମନ୍ତ୍ରୀ ଏବଂ ରାଷ୍ଟ୍ରପତି ଶ୍ରୀ ଜୟବର୍ଦ୍ଧନେଙ୍କ ନିୟନ୍ତ୍ରଣାଧୀନ ହୋଇ ସିଂହଳୀ ସୈନ୍ୟବାହିନୀ ରହିଲା ନାହିଁ । କୌଣସି ଗଣତାନ୍ତ୍ରିକ ସରକାର ପକ୍ଷେ ଏହା ଶୁଭ ଲକ୍ଷଣ ନୁହେଁ ।

ତାମିଲ ମିଳିତ ମୁକ୍ତି ସାମ୍ମୁଖ୍ୟର ନେତା ଶ୍ରୀ ଅମୃତଲିଙ୍ଗମ୍ ସିଂହଳ ଅଧ୍ୟୁଷିତ ଭାରତୀୟ ବଂଶୋଦ୍ଭବମାନଙ୍କ ଦୁଃଖ ଦୁର୍ଦ୍ଦଶାର ବିବରଣୀ ଭାରତ ସରକାରଙ୍କୁ ଜଣାଇବା ପରେ ଭାରତୀୟ ତାମିଲଭାଷୀଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଏବଂ ମନରେ ଗଭୀର ଆତଙ୍କ ଦେଖାଦେଇଥିଲା । ତାମିଲ୍‌ନାଡୁର ଅନେକ ନେତା ହଠାତ୍ ଲଙ୍କା ଯାତ୍ରା କରି ଗିରଫଦାର ହେବା ଭୟରେ ଅଧବାଟରୁ ଫେରି ଆସିଥିଲେ । ଏଭଳି ଉତ୍ତେଜନା ଏବଂ ପଦକ୍ଷେପ କଦାପି ସ୍ପୃହଣୀୟ ନୁହେଁ । ଭାରତ ସରକାର ସ୍ପଷ୍ଟ ଘୋଷଣା କରିଦେଲେ ଯେ, ଶ୍ରୀଲଙ୍କାର ଆଭ୍ୟନ୍ତରୀଣ ବ୍ୟାପାରରେ ଆମ ଦେଶ କଦାପି ହସ୍ତକ୍ଷେପ କରିବ ନାହିଁ । ଦଙ୍ଗାଗ୍ରସ୍ତ ନିରୀହ ଭାରତୀୟ ବଂଶୋଦ୍ଭବମାନଙ୍କୁ ରିଲିଫ ଯୋଗାଇବା ପାଇଁ ଶ୍ରୀ ଜୟବର୍ଦ୍ଧନେଙ୍କ ଠାରୁ ଅନୁମତି ନିଆଗଲା ଏବଂ ରିଲିଫ ଜାହାଜ ପଠାଗଲା ।

କୌଣସି ଜାତୀୟ ସଙ୍କଟ ବେଳେ ରାଷ୍ଟ୍ରମୁଖ୍ୟ ବିଚଳିତ ହେ ଉପସ୍ଥିତିର ମୁକାବିଲା କରିବା ଅସମର୍ଥ ହୋଇପଡେ । ଭାର ସଂପର୍କରେ ଶ୍ରୀ ଜୟବର୍ଦ୍ଧନେଙ୍କ ଉକ୍ତି ଖେଦୋକ୍ତି ହୋଇଥି ଚିନ୍ତାକରିବାର ନଥିଲା । କିନ୍ତୁ ସେ ବିଚଳିତ ହୋଇ ଭାରତ ସହାନୁଭୂତିଶୀଳ ମନୋଭାବର କଦର୍ଥ କରି କଟୁକ୍ତି ପ୍ରକାଶ କଲେ ତାମିଲ ଆନ୍ଦୋଳନ ପଛରେ ବୈଦେଶିକ ଶକ୍ତିର ଅଦୃଶ୍ୟ ହାତ ଥିବା ସତ୍ୟ ହୋଇପାରେ, କିନ୍ତୁ ଭାରତ ବୈଦେଶିକ ବୁଝାମଣା କ୍ଷେତ୍ରରେ ପଞ୍ଚଶୀଳ ନୀତି ଅନୁସରଣ ପୂର୍ବକ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିର ପର୍ଯ୍ୟନ୍ତ କେବେ ଖିଲାପ କରି ନାହିଁ—ଏହା ବୁଝିବା ଉଚିତ୍ ।

ଭାରତ ମହାସାଗର ଉପରେ ପାଶ୍ଚାତ୍ୟ ବୃହତ୍‌ଶକ୍ତି ଗୁଡ଼ିକର ଦୃ ଅନେକ ଦିନରୁ ପଡ଼ିଲାଣି । ଡିଆଗୋ-ଗ୍ରାସିଆ ଦ୍ୱୀପରେ ଆମେରିକା ନୌ-ସେନା ଘାଟୀସ୍ଥାପନ, ମରିସସ୍ ରାଷ୍ଟ୍ରପତି ଏକ ଅନ୍ୟାୟ ଏ ଆନ୍ତର୍ଜାତିକ କ୍ଷେତ୍ରରେ ଏକ ଆଲୋଡନ ସୃଷ୍ଟି କରିଛି । ଶ୍ରୀଲଙ୍କା ପ ସମୁନ୍ନତ ଦ୍ୱୀପରେ ପ୍ରବେଶ କରିବା ପାଇଁ ଅନେକ ଶକ୍ତି ସୁଯୋ ଅପେକ୍ଷାରେ ଚାହିଁ ବସିଛନ୍ତି ଏକଥା ବୁଝିବା ଉଚିତ୍ । ବହୁ ରାଷ୍ଟ୍ର ଶ୍ରୀଲଙ୍କା ଅସ୍ତ୍ରଶସ୍ତ୍ର ଯୋଗାଇବା ପାଇଁ ଆଗଭର । ବୋଧହୁ ଶ୍ରୀ ଜୟବର୍ଦ୍ଧନେ ସେ ଭୁଲ କରିବେ ନାହିଁ ଏବଂ ବାହ୍ୟ ଶକ୍ତି ଗୁଡ଼ିକୁ ଅ ପ୍ରବେଶ ପାଇଁ ସୁଯୋଗ ଦେବେ ନାହିଁ ।

ଶ୍ରୀଲଙ୍କାର ଆଭ୍ୟନ୍ତରୀଣ ବିବାଦ ଶୀଘ୍ର ସମାଧାନର ଆଶା ନିତା କ୍ଷୀଣ । ଏହାର ସ୍ଥାୟୀ ସମାଧାନ ପାଇଁ ଅନେକ ସମୟ ଲାଗିବ । ଏହ ପାଇଁ ଶ୍ରୀ ଜୟବର୍ଦ୍ଧନେଙ୍କୁ କୋହଳ ନୀତି ଅନୁସରଣ କରିବାର ଆବଶ୍ୟ ପଡ଼ିପାରେ ଅଥବା ମିଳିତ-ତାମିଲ୍-ମୁକ୍ତି-ସାମ୍ମୁଖ୍ୟ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ ଦାବୀରୁ ଓହରିଯିବା ଦରକାର ପଡ଼ିପାରେ । ସଂଖ୍ୟାନ୍ୟୂନ ତାମିଲମାନଙ୍କ ପାଇଁ ଶ୍ରୀଲଙ୍କା ପରି କ୍ଷୁଦ୍ର ଦ୍ୱୀପରେ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ ଦାବୀ ହାସ୍ୟାସ୍ପଦ ନୁହେଁ କି ? ସାତ ଆଠ ଲକ୍ଷ ଜନସଂଖ୍ୟାରେ ମରିସସ୍ ପରି ରାଷ୍ଟ୍ର ଯଦି ସମ୍ଭବ ହୋଇପାରେ ପଚିଶଲକ୍ଷ ତାମିଲ୍‌ଙ୍କୁ ନେଇ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ କରିବା ଅଯୁକ୍ତି ହେବ କି ?

ମୌଳିକ ଦୃଷ୍ଟି କୋଣରୁ ବିଚାର କଲେ ତାମିଲ୍ ହିନ୍ଦୁ ହୁଅନ୍ତୁ ବା ସିଂହଳ ବୌଦ୍ଧ ହୁଅନ୍ତୁ; ସମସ୍ତେ ଅଳ୍ପେ ବହୁତେ ହିନ୍ଦୁ ମତବାଦୀ । ନାଗରିକତ ପାଇବା ପରେ କୌଣସି ରାଷ୍ଟ୍ରରେ ଧର୍ମ-ଜାତି-ବର୍ଣ୍ଣର ଦୁହାଇ ଦେ ପକ୍ଷପାତିତା ଦେଖାଇବା ଅନୁଚିତ । ତାମିଲ୍‌ମାନଙ୍କ ପାଇଁ ଶ୍ରୀଲଙ୍କାରେ ବିଭିନ୍ନ ସୁବିଧା ସୁଯୋଗ ପାଇଁ କୋଟା ନିଶ୍ଚିତ କରିବା ବାସ୍ତବରେ ଅନ୍ୟାୟ । ଯେ କୌଣସି ରାଷ୍ଟ୍ର ହେଉନା କାହିଁକି, ସଦାବେଳେ ସଂଖ୍ୟ ଗରିଷ୍ଠ ସମାଜ ଉପରେ ସଂଖ୍ୟା ଲଘୁ ସଂପ୍ରଦାୟର ସୁରକ୍ଷା ନ୍ୟସ୍ତ ରହେ ସାଂପ୍ରଦାୟିକ ଜାତିଗତ, ବର୍ଣ୍ଣଗତ, ଭାଷାଗତ ସଂଘର୍ଷ ଏ ଯୁଗରେ ସାଧାରଣ ଘଟଣା । ଆମ ଦେଶରେ ଆସାମ ଓ ପଂଜାବ ଏହାର ନଜିର ଉଗ୍ରପନ୍ଥୀମାନଙ୍କ ଖଲିସ୍ଥାନ ଦାବୀ ସହିତ ଶ୍ରୀଲଙ୍କାରେ ତାମିଲ ସ୍ଥାନ ଦାବୀ ତୁଳନୀୟ ।

୧୯୭୭ ରେ ରାଷ୍ଟ୍ରପତି ଶ୍ରୀ ଜୟବର୍ଦ୍ଧନେ ଶ୍ରୀଲଙ୍କାରେ ମାନବିକ ଅଧିକାର ପ୍ରତିଷ୍ଠା ସ୍ଲୋଗାନ ବଳରେ ନିର୍ବାଚିତ ହୋଇଥିଲେ ଓ ତାଙ୍କ ସରକାର ଗଢ଼ିଥିଲେ । ତାଙ୍କର ଦ୍ୱିତୀୟ ସ୍ଲୋଗାନ ଥିଲା, ଦେଶର ବିଭିନ୍ନ ସଂପ୍ରଦାୟ ଗୋଷ୍ଠୀ ମଧ୍ୟରେ ଶାନ୍ତି ଫେରାଇ ଆଣିବା ଏବଂ ଆଇନ ସମ୍ମତ ଶାସନ ପ୍ରତିଷ୍ଠା କରିବା, କିନ୍ତୁ ଫଳ ହେଲା ବିପରୀତ । ୧୯୮୪ର ସ୍ୱାଧୀନତା ପରଠାରୁ ଶ୍ରୀଲଙ୍କାରେ କେବେ ସୁଶାସନ ପ୍ରତିଷ୍ଠା ହୋଇନାହିଁ । ଶ୍ରୀ ଜୟବର୍ଦ୍ଧନେ ସରକାର ସାଧାରଣ ନିରାପତ୍ତା ସୁରକ୍ଷା ନିୟମ ଓ ସଂତ୍ରାସବାଦ ନିରୋଧ ଆଇନ ପ୍ରଣୟନ କରି ପୁଲିସ ଓ ସୈନ୍ୟ ବାହିନୀକୁ ସର୍ବେସର୍ବା କରିଦେଲେ । ଫଳରେ ପୋଲିସ ଓ ସୈନ୍ୟବାହିନୀ ଅମାପ କ୍ଷମତା ପାଇ ତାମିଲମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରିଦେଲେ । ଶ୍ରୀ ଜୟବର୍ଦ୍ଧନେ ସରକାରଙ୍କ ପରମାୟୁ ୧୯୮୬ରେ ଶେଷହେବା କଥା, କିନ୍ତୁ ପୁଣି ୬ ବର୍ଷ ପାଇଁ ବିନା ନିର୍ବାଚନରେ ତାଙ୍କ ସରକାରକୁ କ୍ଷମତାଶୀଳ ରଖିବା ଉଦ୍ଦେଶ୍ୟରେ ଲୋକ ଦେଖାଣିଆ

ଜନମତ ତତ୍‌ପୂର୍ବରୁ ନେଇଗଲେ ଏବଂ ଜନମତ ପାଇବା ପରେ ପରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ଆଳରେ ନିର୍ବାଚନ ପରେ ପରେ ଦେଶରେ 'ଏମରଜେନ୍‌ସି' ଘୋଷଣା କରିଦେଲେ । କ୍ଷମତା ପାଇଁ, ନିଜ ଶାସନର ଦୁର୍ବଳତାକୁ ଏବଂ ନିଜ କୁତ୍ସିତ ରାଜନୀତିକୁ ଘଣ୍ଟ ଘୋଡ଼ାଇବା ପାଇଁ ଦେଶରେ ଦ୍ୱିତୀୟ ଶ୍ରେଣୀ ନାଗରୀକରୂପେ ରହୁଥିବା ସଂଖ୍ୟା ଲଘୁ ତାମିଲମାନଙ୍କ ଉପରେ ଅତ୍ୟାଚାରର ସମସ୍ତ ଦ୍ୱାର ଖୋଲିଦେଲେ । ସାଂପ୍ରତିକ ଦଙ୍ଗା କ୍ଷମତାସୀନ ୟୁନାଇଟେଡ୍‌ ନେସନାଲ୍‌ ପାର୍ଟିର ତାମିଲ ଭାଷୀଙ୍କର ମୌଳିକ ଅଧିକାର ସଂକୋଚନ ନୀତି ଏବଂ ନିଜ ଅଧିକାର ପାଇଁ ସଂଘର୍ଷ ରତ "ଟୁଲଫୋ" ମଧ୍ୟରେ ସମ୍ମୁଖରଣ କହିଲେ ଠିକ୍‌ ହେବ ।

ଇତି ମଧ୍ୟରେ "ଏମ୍‌ନେଷ୍ଟି ଇଣ୍ଟରନେଶନାଲ" ସଂସ୍ଥା ଯେ କି ବିଶ୍ୱରେ ମାନବିକ ଅଧିକାର ସୁରକ୍ଷା ପାଇଁ ସତତ ପ୍ରଯତ୍ନଶୀଳ ଅଟେ, ନିଜ ପ୍ରତିନିଧି ଶ୍ରୀଲଙ୍କା ପଠାଇ ତାମିଲଭାଷୀମାନଙ୍କ ଉପରେ ହେଉଥିବା ଅତ୍ୟାଚାରର ସଠିକ୍‌ ବିବରଣୀ ସଂଗ୍ରହ କରିବାକୁ ଚେଷ୍ଟା କରିଛି । ଶ୍ରୀ ଜୟବର୍ଦ୍ଧନେ ସରକାର 'ଏମ୍‌ନେଷ୍ଟି' ସହିତ ଯୋଗାଯୋଗ, ସମନ୍ୱୟ ଓ ସହଯୋଗ କରୁ ନଥିବାର ଜଣାଯାଏ ।

ଭାରତ ତା'ର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି ଅନୁସରଣ କରି ସର୍ବଦା ସାହାଯ୍ୟ ସହଯୋଗ କରିବା ପାଇଁ ଆଗ୍ରହୀ । ଶ୍ରୀମତୀ ଗାନ୍ଧୀଙ୍କ ସ୍ୱତନ୍ତ୍ର ଦୂତ ଏକାଧିକ ବାର ସିଂହଳ ଯାତ୍ରା କରିଥିଲେ ମଧ୍ୟ କୌଣସି ସୁଫଳ ହେଉନାହିଁ । ଓଲଟା ଆଇନ ବଳରେ ପୋଲିସ୍‌ ଓ ସୈନ୍ୟବାହିନୀର ଦାମ୍ଭିକତାରେ ସବୁ କଥା ଚାଲିଛି । ତାମିଲ ସନ୍ତ୍ରାସବାଦୀମାନେ ପୃଥକ୍‌ ରାଷ୍ଟ୍ର ଗଠନ ଦାବୀରୁ ନ ଓହରିବା ପର୍ଯ୍ୟନ୍ତ କୌଣସି ବୁଝାମଣା ଭାରତ ସହିତ ହୋଇ ପାରିବ ନାହିଁ ବୋଲି ଶ୍ରୀ ଜୟବର୍ଦ୍ଧନେ ଦମ୍ଭୋକ୍ତି ପ୍ରକାଶ କରିଛନ୍ତି । ଏଥିରୁ ଜଣାଯାଏ ଯେ, ସିଂହଳ ସରକାର ଅନ୍ୟ କୌଣସି ରାଷ୍ଟ୍ର ଦ୍ୱାରା ପ୍ରଭାବିତ ହୋଇଛନ୍ତି ଏବଂ ତା' ଫଳରେ ତାମିଲଭାଷୀଙ୍କ ଉପରେ ଅତ୍ୟାଚାର ଚାଲୁରହିବ । ଦେଖାଯାଉ, ଏ ଅତ୍ୟାଚାର କେତେଦିନ ଚାଲୁ ରହିବ ଏବଂ ଭାରତ ମହାସାଗରରେ ଅଶାନ୍ତିର ଝଡ କେତେ ଦିନ ଲାଗିରହିବ ।

ମାର୍ଫତ୍‌—ଡଃ ଅର୍ଜୁନ ଶତପଥୀ
ଅଧ୍ୟକ୍ଷ, ହିନ୍ଦି ବିଭାଗ,
ସରକାରୀ କଲେଜ, ରାଉରକେଲା—୪ ।



ଯଦି ସମାଜରେ ଉଚ୍ଚ, ନୀଚ, ଧନୀ, ଗରିବ ଭେଦଭାବ ବଢ଼େ, ତାହାହେଲେ ବ୍ୟଗ୍ରତା ବଢିବ, ଝଗଡ଼ା ବଢ଼ିଯିବ, ଶାନ୍ତି ଓ ବୁଝାମଣା ରହି ପାରିବ ନାହିଁ । ଯେଉଁଳି ସମାଜରେ ସ୍ୱାଧୀନତା ଦୃଢ଼ୀଭୂତ ହୋଇ ପାରିବ, ଦେଶର ପ୍ରଗତି ଓ ବିକାଶରେ ଅଗ୍ରଗତି ହୋଇ ପାରିବ, ସେଥିପାଇଁ ଆମକୁ ଆତ୍ମନିର୍ଭରଶୀଳ ହେବାକୁ ପଡିବ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀ

# ସୁନିଆଁ ବତାସର ଶହେବର୍ଷ

**ଶ୍ରୀ ଗୋପୀନାଥ ଦାଶ**

ଓଡ଼ିଶା ବାତ୍ୟା, ବନ୍ୟା ଓ ଦୁର୍ଭିକ୍ଷ ତଥା ମରୁଡ଼ିର ରାଜ୍ୟ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସମ୍ରାଟ ଖାରବେଳଙ୍କ ସମୟରେ କଳିଙ୍ଗ ନଗରୀରେ ବାତ୍ୟା ହୋଇଥିବାର ହାତୀଗୁମ୍ଫା ଶିଳାଲେଖାରେ ଉଲ୍ଲେଖ ଅଛି । ମଧ୍ୟଯୁଗ ଓ ଆଧୁନିକ ଯୁଗରେ ବହୁ ବାତ୍ୟା ହୋଇଥିବା ଐତିହାସିକ ଦଲିଲମାନଙ୍କରୁ ମଧ୍ୟ ପ୍ରମାଣିତ ହୁଏ । ଶହେବର୍ଷ ତଳେ ଏକ ପ୍ରଳୟଙ୍କରୀ ସାମୁଦ୍ରିକ ଝଡ଼ ଓଡ଼ିଶାର କେତେକ ଉପକୂଳ ଅଞ୍ଚଳକୁ ଧ୍ୱସ୍ତବିଧ୍ୱସ୍ତ କରିଥିଲା । ଏହା ୧୮୮୫ ସେପ୍ଟେମ୍ବର ୨୧ ଓ ୨୨ ତାରିଖରେ ଘଟିଥିଲା । "ସୁନିଆଁ ବତାସ" ନାମରେ ଏହା ଏପର୍ଯ୍ୟନ୍ତ ମଧ୍ୟ ମାନସ ସ୍ମୃତିରେ ଜୀବନ୍ତ ହୋଇ ରହିଛି ।

ଓଡ଼ିଶା ଡିଭିଜନର କମିଶନର ଶ୍ରୀ ସି. ଟି. ମେଟକାଫ୍ ୧୮୮୫ ଅକ୍ଟୋବର ୨ ତାରିଖରେ ବଙ୍ଗଳା ସରକାରଙ୍କ ମୁଖ୍ୟ ଶାସନ ସଚିବଙ୍କୁ ଜଣାଇଥିଲେ ଯେ ଏହି ବାତ୍ୟା ଓ ସମୁଦ୍ରଜଳ ମାଡ଼ିଯିବା ଦ୍ୱାରା କଟକ ଜିଲ୍ଲାର ଦକ୍ଷିଣ ଉପକୂଳରେ ଭୟାବହ ଜୀବନହାନି ଓ ପ୍ରଭୂତ ସଂପତ୍ତି ନଷ୍ଟ ହୋଇଥିଲା । କୋଷ୍ଟ କେନାଲ ବନ୍ଧଗୁଡ଼ିକ ଯୋଗୁଁ ଓ ବହୁତ ବର୍ଷାଜଳ ଜମିଥିବାରୁ ସମୁଦ୍ର ଢେଉ ବାଲେଶ୍ୱର ଜିଲ୍ଲାରେ ଅପେକ୍ଷାକୃତ କମ୍ କ୍ଷତି କରିଥିଲା । ଓଡ଼ିଶା ଡିଭିଜନର ୧୮୮୫-୮୬ ବାର୍ଷିକ ସାଧାରଣ ପ୍ରଶାସନିକ ରିପୋର୍ଟରେ ଶ୍ରୀ ମେଟକାଫ୍ ଲେଖିଥିଲେ ଯେ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଥିବା କେନ୍ଦ୍ରାପଡ଼ା ସବଡ଼ିଭିଜନରେ ପ୍ରାୟ ୫,୦୦୦ ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ । ସରକାରଙ୍କ ତରଫରୁ ବାତ୍ୟାଞ୍ଚଳରେ ଖଜଣା ଛାଡ଼ କରାଯାଇଥିଲା । ବହୁ ମାସ ପର୍ଯ୍ୟନ୍ତ ଲୋକମାନଙ୍କୁ ଖାଦ୍ୟ ଓ ଲୁଗାପଟା ଯୋଗାଇ ଦିଆଯାଇଥିଲା, ଏବଂ ବଳଦ, ହଳ ପ୍ରଭୃତି କିଣିବା ପାଇଁ ତଗାବି ଋଣର ବ୍ୟବସ୍ଥା ହୋଇଥିଲା । କଟକ କଲେକ୍ଟର ଶ୍ରୀଯୁକ୍ତ କରି ଲୋକମାନଙ୍କ କଷ୍ଟ ଶୁଣି ନିଜ ଖର୍ଚ୍ଚରେ ୩୦୦ ମହଣ ଚାଉଳ ଓ ଅନ୍ୟାନ୍ୟ ସାମଗ୍ରୀ କିଣି କେନ୍ଦ୍ରାପଡ଼ା ଓ ତାଳଦଣ୍ଡା ଅଞ୍ଚଳକୁ ପଠାଇଥିଲେ । ଏହା ଅତ୍ୟନ୍ତ ପ୍ରଶଂସାର କାର୍ଯ୍ୟ ହୋଇଥିଲା । ସାହାଯ୍ୟ ଦାନ ବିଷୟରେ ମତବ୍ୟକ୍ତ କରି ରାଜସ୍ୱ ପର୍ଷଦର ସଚିବ ୧୮୮୫ ନଭେମ୍ବର ରେ ଓଡ଼ିଶା ଡିଭିଜନର କମିଶନରଙ୍କୁ ଲେଖିଥିଲେ : "ପ୍ରପୀଡ଼ିତ ଜନସାଧାରଣଙ୍କୁ ସାହାଯ୍ୟ ଓ ସହାନୁଭୂତି ଦେବା ପାଇଁ ରାଜସ୍ୱ ପରିଷଦ ପୂର୍ଣ୍ଣ ପ୍ରାଣରେ ଚିନ୍ତା କରୁଥିଲେ ମଧ୍ୟ ଭାବନ୍ତି ଯେ ଅନିର୍ଦ୍ଦିଷ୍ଟକାଳ ପାଇଁ ସାହାଯ୍ୟ ଲୋକମାନଙ୍କ ଉପକାର କରିବା ପରିବର୍ତ୍ତେ ସେମାନଙ୍କୁ ନୀତିବିହୀନ କରିଦେବ" ।

ବତାସର କ୍ଷୟକ୍ଷତି ସଂପର୍କରେ ସାପ୍ତାହିକ ସମ୍ବାଦପତ୍ର "ଉତ୍କଳ ଦୀପିକା" ରେ ନଭେମ୍ବର ୧୪, ୧୮୮୫ ରେ ଏହିପରି ବିବରଣୀ ପ୍ରକାଶ ପାଇଥିଲା : "କନିକାରେ ସର୍ବାପେକ୍ଷା ଅଧିକ କ୍ଷତି ହୋଇଅଛି । ଏ କିଲ୍ଲା ଅନ୍ତର୍ଗତ କେରଡ଼ାରେ ୨୪୪ ମୌଜା, କଳଦ୍ୱୀପରେ ୪୬ ମୌଜା—ଏ ରୂପ ୨୯୦ ମୌଜାରେ ସମୁଦ୍ରଜଳ ମାଡ଼ି ଆସିଥିଲା । ଏଥି ମଧ୍ୟରୁ କେରଡ଼ାର ୪ ମୌଜା, ଓ କଳଦ୍ୱୀପରେ ୭ ମୌଜା—ମୋଟ ୧୧ ମୌଜା ସଂପୂର୍ଣ୍ଣରୂପେ ଧ୍ୱଂସ ହୋଇଅଛି । ସ୍ତ୍ରୀ, ପୁରୁଷ, ବାଳ ବୃଦ୍ଧ, ପଶୁପକ୍ଷୀ ସମସ୍ତେ ନାଶ ହୋଇଅଛନ୍ତି । ଗୋଟିଏ ଜୀବସୁଦ୍ଧା ବଞ୍ଚିନାହିଁ । ଘର ଗ୍ରାମର ଚିହ୍ନ ନାହିଁ । ଘରର ଗୋଟିଏ ଖୁଣ୍ଟ ସୁଦ୍ଧା ନାହିଁ । ସବୁ ଉପୁଡ଼ି ଭାସି ଯାଇଛି । ସେ ମୌଜାମାନ କେବଳ ମରୁଭୂମି ପରି ଦିଶୁଅଛି । ଅବଶିଷ୍ଟ ମୌଜାମାନଙ୍କର ଫସଲ ସଂପୂର୍ଣ୍ଣ ନଷ୍ଟ ହୋଇଅଛି । ଘରମାନ ଭାଙ୍ଗିଯାଇଅଛି, ମାତ୍ର କେତେକ ଲୋକ ବଞ୍ଚିଅଛନ୍ତି । ଏ ୨୯୦ ମୌଜାର ଲୋକସଂଖ୍ୟା ସନ ୧୮୮୧ ସାଲରେ ୨,୬୦୦ ଜଣଥିଲା । ଏମାନଙ୍କ ମଧ୍ୟରୁ ୧,୨୮୦ ଜଣ ନାଶ ହୋଇଥିବାର ପୁଲିଶ ରିପୋର୍ଟ କରନ୍ତି, ମାତ୍ର ଏହା ବର୍ତ୍ତମାନ ସାହାଯ୍ୟ ପାଉଥିବା ବ୍ୟକ୍ତିଙ୍କ ସଙ୍ଗେ ମେଳ ଖାଉନାହିଁ । ପ୍ରତିଦିନ ଜଣକେ ଅଧସେର ଲେଖାଏଁ ଏକଶତ ମହଣ ଚାଉଳ ବିତରଣ ହେଉଥିବାରୁ ୮,୦୦୦ ଜଣ ମନୁଷ୍ୟ ସାହାଯ୍ୟ ପାଉଅଛନ୍ତି । ଯଦି ଏହିମାନଙ୍କ ବିନା ସେ ମୌଜାମାନଙ୍କରେ ଆଉ କେହି ମନୁଷ୍ୟ ନଥାନ୍ତି, ତେବେ ୨୨,୦୦୦ ମନୁଷ୍ୟ ନଷ୍ଟ ହୋଇଥିବାର ଅନୁମାନ ହେଉଅଛି ।

× × × × × ଶ୍ରୀଯୁକ୍ତ କମିଶନର ସାହେବ ସରବରାକାରମାନଙ୍କଠାରୁ ମୃତ୍ୟୁର ନକ୍ସା ତଲବ କରିଅଛନ୍ତି । ଯଦି ସେମାନେ ପରିଶ୍ରମ କରି ନକ୍ସା ଠିକ୍ ପ୍ରସ୍ତୁତ କରନ୍ତି ତେବେ ମୃତ୍ୟୁର ସଂଖ୍ୟା ଠିକ୍ ଜଣାପଡ଼ିବ" ।

କଟକ ଜିଲ୍ଲାର ବତୀଘର (False point), କିଟୋଲ ଓ ଜମ୍ବୁ ଅଞ୍ଚଳରେ ବତାସଦ୍ୱାରା ଭୀଷଣ କ୍ଷତି ହେଲା । ରାଜନଗରରେ ୨୦ ହାତ ଉଚ୍ଚରେ ସମୁଦ୍ର ପାଣି ମାଡି ଆସି ସବୁ ଲୋକ ଓ ଗୋରୁଙ୍କୁ ଭସାଇ ନେଇଥିଲା ।

ଏହି ଜିଲ୍ଲାର କ୍ଷତି ବିଷୟରେ ବିବରଣୀ ଦେଇ "ଉତ୍କଳ ଦୀପିକା" ଲେଖିଥିଲେ: "ଏ ଜିଲ୍ଲାରେ ବତାସ ଓ ସମୁଦ୍ର ଜଳ ଯୋଗେ ସର୍ବସୁଦ୍ଧା, ଲକ୍ଷେ ଦୁଇହଜାର ଗୋଟାଘର ଭାଙ୍ଗିଯାଇଅଛି । ଗୃହପାଳିତ ପଶୁ ଅର୍ଥାତ୍ ଗୋମେଷାଦି ଷୋଳହଜାର ତିନିଶହ ନଷ୍ଟ ହୋଇଥିବାର ଗଣନା ହୋଇଅଛି । ମାତ୍ର ଏ ଗଣନା ଠିକ୍ ବୋଧହେଉନାହିଁ । ଏଥିରୁ ଅଧିକ ନଷ୍ଟ ହୋଇଥିବା ଯାଜପୁର ସବ୍‌ଡିଭିଜନରେ କାନ୍ଥ ଓ ବୃକ୍ଷ ପଡିବା ଯୋଗୁ ୨୪୯ ଜଣ ମନୁଷ୍ୟ ଓ କେନ୍ଦ୍ରାପଡାରେ ଏହି ପ୍ରକାରରେ ୯ ଜଣ ମନୁଷ୍ୟ ମୃତ୍ୟୁ ପ୍ରାପ୍ତ ହୋଇଅଛନ୍ତି । ଯାଜପୁର ସବ୍‌ଡିଭିଜନରେ ଅନେକ ବୃକ୍ଷ ଉପୁଡି ଓ ଭାଙ୍ଗିପଡିଅଛି । ତହିଁର ସଂଖ୍ୟା ୧,୫୨,୫୦୦ ଗୋଟା ଅଟଇ ଓ ଏଥିର ମୂଲ୍ୟ ପ୍ରାୟେ ଚାରିଲକ୍ଷ ଟଙ୍କା ହୋଇପାରେ । ଏହି ସବ୍‌ଡିଭିଜନରେ ଭାଙ୍ଗି ପଡିଥିବା ଘରର ମୂଲ୍ୟ ୭୦ ହଜାରରୁ ଊଣାନୁହଁଇ । ଗୋଟିଏ ଘରର ମୂଲ୍ୟ ୧୦ ଟଙ୍କା କରି ଧରିଲେ ଏ ଜିଲ୍ଲାରେ ସର୍ବସୁଦ୍ଧା ୧୦ ଲକ୍ଷ ଟଙ୍କାର ନଷ୍ଟ ହୋଇଅଛି । ଅଧିକାଂଶ ଘର ପୁରୁଣାଥିବାରୁ ମୂଲ୍ୟ କିଛି ଊଣା ହୋଇପାରେ । ତଥାଚ ଉପସ୍ଥିତ କ୍ଷତିମାନ ଭୟଙ୍କର ଓ ହୃଦୟବିଦାରକ ଅଟଇ" ।

ବାତ୍ୟା ବିଭୀଷିକାର ନିଖୁଣ ଚିତ୍ର ବାଲେଶ୍ୱରର ପତ୍ରିକା "ସମ୍ବାଦ ବାହିକା" ରେ ଅକ୍ଟୋବର ୮ ତାରିଖ ୧୮୮୫ ରେ ପ୍ରକାଶିତ ହୋଇଥିଲା । ଏହି ସମ୍ବାଦପତ୍ର ଲେଖିଥିଲେ: "ଜମ୍ବୁରେ ୧୫୦ ଜଣ ଲୋକଥିଲେ । ସେମାନଙ୍କ ମଧ୍ୟରୁ କେବଳ ୧୦ ଜଣ ବଞ୍ଚିଅଛନ୍ତି । ଆମ୍ଭମାନଙ୍କ ପୂର୍ବବନ୍ଧୁ ବାବୁ ଗୌରଚରଣ ଘୋଷ ଏବଂ ତାଙ୍କ ସହଧର୍ମିଣୀଙ୍କ ଶବ ପାୟା ଯାଇଅଛି । ଆହା! ଦୁହେଁ ଯୋଡିଏ ପିଲାଙ୍କୁ କୋଳରେ ଧରିଅଛନ୍ତି । ଏଠା ଜିଲ୍ଲା ସ୍କୁଲର ଛାତ୍ର ବାବୁ ସୁଦର୍ଶନ ଦାସ ସେଠାରେ ପୋଷ୍ଟମାଷ୍ଟର ଥିଲେ । ସେ ସୁଦ୍ଧା ସପରିବାରେ ନଷ୍ଟ ହୋଇଅଛନ୍ତି । ଜମ୍ବୁରେ ୯ ହାତ ଲୁଣାପାଣି ଉଠିଥିଲା । ବତୀଘରଠାରେ ପବନ ଏବଂ ଲୁଣା ପ୍ରବଳ ହୋଇଥିଲେ ହେଁ କେହି ମନୁଷ୍ୟ ନଷ୍ଟ ହୋଇନାହାନ୍ତି, କିନ୍ତୁ ବୋଝେଇ ଜାହାଜ ମଧ୍ୟରୁ ଅନେକ ବୁଡ଼ି ଯାଇଅଛି । ଖଣ୍ଡିଏ ଫରାସୀ ଜାହାଜ ବାଲିରେ ଚଢି ସଂପୂର୍ଣ୍ଣରୂପେ ଭାଙ୍ଗି ଯାଇଅଛି । ହୁକିଟୋଲାରେ ବଡଠାରୁ ଛୋଟ ପର୍ଯ୍ୟନ୍ତ ଯେତେ କର୍ମଚାରୀ ଥିଲେ ସେମାନଙ୍କ ମଧ୍ୟରୁ କେବଳ ଛଅଜଣ ମାଝି ଭାସମାନ ଗୃହର ଆଶ୍ରୟରେ ବଞ୍ଚିଗଲେ । ପୋର୍ଟ ଅଫିସର ଡ଼ଗଲସ ସାହେବ, ତାଙ୍କ ମେମ୍‌ସାହେବ ଏବଂ ତାଙ୍କ ବାଳକ ବାଳିକାମାନେ ପ୍ରାଣ ରକ୍ଷା ନିମନ୍ତେ ଚାଳରେ ଚଢିଥିଲେ । କିନ୍ତୁ ଲୁଣାରେ ଚାଳ ଭାସିଯାଇ ଖଣ୍ଡ ଖଣ୍ଡ ହୋଇଯିବାରୁ ସମସ୍ତେ ମରିପଡ଼ିଲେ । ରାଜନଗରରେ ଯେଉଁ ସବୁ ଘର ଥିଲା, ସେମାନେ ସମୁଦ୍ରରେ ଲୀନ ହୋଇଯାଇଅଛି । ଅଳି ଥାନା ଇଲକା ମହାପଲ୍ଲିରେ ହେଡ୍‌କନଷ୍ଟେବଳ ଭାସିଯାଇଅଛନ୍ତି । ମାର୍ଶାଘାଇରେ ୧୨୩ ଗୋଟା ଲଶ୍ ମିଳିଅଛି । କଟକ ଜିଲାର ପୂର୍ବ ଅଞ୍ଚଳରେ ପ୍ରାୟ ଚାଳିଶଖଣ୍ଡ ଗ୍ରାମ ଲୁଣାରେ ଭାସି ଯାଇଅଛି ଓ ସେହି ଗ୍ରାମମାନଙ୍କରୁ କେତେ ମନୁଷ୍ୟ କେତେ ଗ୍ରାମ୍ୟ ପଶୁ ନଷ୍ଟ ହୋଇ ଅଛନ୍ତି, ସେଥିରେ କଳନା କରିବା କଠିନ । ଯାହାଙ୍କୀମାନେ କହୁଛନ୍ତି ଯେ ଦଶକୋଶ ପର୍ଯ୍ୟନ୍ତ ନଦୀରେ ମୁର୍ଦ୍ଦାର ଭାସୁଥିବାର ସେମାନେ ଦେଖିଛନ୍ତି । ପଟାମୁଣ୍ଡାଇ ଥାନା ଇଲକାରେ ଲୁଣା ଜଳ ଠେସିବାରୁ ନଦୀମାନେ ଭୟଙ୍କର ରୂପେ ବଢିଥିଲା । ଅସଂଖ୍ୟ ଘର ଭାଜିଯାଇଅଛି । ମନୁଷ୍ୟ, ପଶୁ ଅନେକ ନଷ୍ଟ ହୋଇଅଛନ୍ତି । କନିକା ଜିଲ୍ଲାର କ୍ଷତି କହିଲେ ସରିବ ନାହିଁ । ସମୁଦ୍ର ମାଡ଼ି ଆସିବାରୁ ଅନେକ ମନୁଷ୍ୟ, ଅନେକ ଗୋରୁ ଓ ମହିଷ ଭାସି ଯାଇଅଛନ୍ତି । ପୋଖରୀ ଓ କୂଅମାନଙ୍କରେ ଲୁଣିପାଣି ପଶି ଯାଇଥିବାରୁ ସେ ସବୁର ଜଳ ଅପେୟ ହୋଇଅଛି । ନିଜ ଯାଜପୁରରୁ ୬୩ ଜଣ ଲୋକ ମରିଥିବାର 'ସଂସ୍କାରକ' ସମ୍ବାଦ ପାଇଅଛନ୍ତି । ଗତ କାଲି ଯାଜପୁରରେ ଚାଉଳ ସେର ଦୁଇ ଅଣା ଓ ଦିନକୁ ଜଣପ୍ରତି ମଜୁରୀ ଟ ୦ ୧ ଲେଖାଏଁ ହୋଇଅଛି । ଏଣୁ ବାତ୍ୟା ପୀଡ଼ିତ ଲୋକଙ୍କର ବିଶେଷ କଷ୍ଟ ହେଉଅଛି ।

ଜଣେ ଜମିଦାର ସେପ୍‌ଟେମ୍ବର ୨୨, ୧୮୮୫ ରେ "ସମ୍ବାଦବାହିକା" ର ସଂପାଦକଙ୍କୁ ଗୋଟିଏ ପତ୍ରରେ ଲେଖିଲେ: "ଯଦିବ ଆମ୍ଭେମାନେ କୀଟୁ" ତଥା ଯୁଦ୍ଧରେ ମନୁଷ୍ୟମାନେ କି ରୂପେ ମରିପଡିଥାଆନ୍ତି, ଦେଖିବା ନିମନ୍ତେ କେବେ କେବେ ମନ ବଳିଥାଏ । ତେଣୁ ପବନ ଦେବ ଆମ୍ଭପରି ଲୋକଙ୍କୁ ଯୁଦ୍ଧଭୂମିର ଆଦର୍ଶ କଦଳୀବନରେ ଦେଖାଇ ଦେଲେ । ଆମ୍ବ ପଣସ, ନାରିକେଳ ପ୍ରଭୃତି ବୃକ୍ଷସେନାପତିମାନେ ଭୟାନକ ଗର୍ଜନ କରି ଭୟଙ୍କର ରୂପରେ ଧରାଶାୟୀ ହୋଇଅଛନ୍ତି । × × × ଦେଖିବାକୁ ଗଲେ କେହି ନିରାପଦ ନୋହେଁ । ମନୁଷ୍ୟ ଜୀବନରେ ପ୍ରଧାନ ଅଙ୍ଗ ଭୟ । ଆମ୍ଭ ଶାସ୍ତ୍ରକାରକମାନେ କହିଅଛନ୍ତି, ଜୀବମାନଙ୍କୁ ତ୍ରିତାପ ଘେରିଅଛି । ତ୍ରିତାପ ଅର୍ଥରେ ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ । ଆଧ୍ୟାତ୍ମିକ ପୁଣି ଦୁଇପ୍ରକାର: ଶାରୀରିକ ଓ ମାନସିକ । ଶାରୀରିକ ପୁଣି ସହସ୍ର ପ୍ରକାର ଓ ମାନସିକ ମଧ୍ୟ ତଦ୍ରୂପ । ଆଧିଦୈବିକର ଫଳ ଏ ବର୍ଷ ଦେଖାଯାଉଅଛି, ଯଥା– ଭୂମିକଂପ, ବନ୍ୟା ଓ ତୋଫାନ ପ୍ରଭୃତି । ଆଧିଭୌତିକ–ଯୁଦ୍ଧ, ସର୍ପାଘାତ ପ୍ରଭୃତିର ମଧ୍ୟ ଅଭାବ ନାହିଁ । ତେବେ କି ମନୁଷ୍ୟର ନିଶ୍ଚିନ୍ତତା ନାହିଁ ? ପୃଥିବୀରେ କି କେବଳ ଦୁଃଖର ଆବାସସ୍ଥଳ" ?

୧୮୮୫ ବାତ୍ୟାପରେ ବହୁ ସାମୁଦ୍ରିକ ଝଡ଼ ଓଡ଼ିଶା ଉପର ଦେଇ ବୋହିଯାଇଛି ଓ ପ୍ରଭୂତ କ୍ଷତି ସାଧନ କରିଅଛି । ବିଜ୍ଞାନର ଅଭୂତପୂର୍ବ ଅଗ୍ରଗତି ସତ୍ତ୍ୱେ ବାତ୍ୟାର ନିରାକରଣ ସମ୍ଭବପର ହୋଇପାରିନାହିଁ । କିନ୍ତୁ ଯଥା ସମୟରେ ସତର୍କ ବ୍ୟବସ୍ଥାଗୁଡିକ କାର୍ଯ୍ୟକାରୀ କରାଗଲେ ପ୍ରାଣ ହାନି ଓ ସମ୍ପତ୍ତିର କ୍ଷୟକ୍ଷତି କମ୍ ହୋଇପାରିବ । ବାତ୍ୟାର ସୂଚନା ଦେବା ନିମନ୍ତେ ଭାରତର ବିଭିନ୍ନ ସ୍ଥାନରେ ୧୦ ମିଲିମିଟର ତରଙ୍ଗ ଦୈର୍ଘ୍ୟ ରାଡ଼ାର ଯନ୍ତ୍ର ଏବଂ ପାଣିପାଗ ପର୍ଯ୍ୟବେକ୍ଷଣକାରୀ ଉପଗ୍ରହ ବ୍ୟବହାର କରାଯାଉଅଛି । ଭାରତୀୟ ଉପମହାଦେଶ ଓ ମହାସାଗର ପ୍ରତି ଅନବରତ ଦୃଷ୍ଟି ରଖାଯାଇଥିଲେ ମଧ୍ୟ ବାତ୍ୟାର ତାଣ୍ଡବଲୀଳା ଅବ୍ୟାହତ ରହିଛି । ୧୯୮୨ରେ ହୋଇଥିବା ଓଡିଶାରେ ବାତ୍ୟା ଓ ୧୮୮୫ ମଇ ମାସରେ ହୋଇଥିବା ବଙ୍ଗଳା ଦେଶର ମର୍ମାନ୍ତିକ ବାତ୍ୟା ଓ ସମୁଦ୍ରଜଳ ପ୍ଲାବନ ଏହାର ଜ୍ୱଳନ୍ତ ଉଦାହରଣ ।

ଭାଷାକୋଷ ଲେନ୍
କଟକ–୭୫୩୦୦୨


ଟେଲିଫୋନର ମଜା
ଖଞ୍ଜେ କୋଣରୁ ଖୋଜୁଛି ଗୀତା
"କେଉଁଠି ଅଛୁ ଅଜା ?"




ଫୁଲ ଟିଏ ଫୁଟିଛି ମୁଁ
ନାଆଁ ଟି ମୋର ଗୁଲୁନା,
ଦେଶରେ ସୁବାସ ଭରି
ଏ ମାଟିରୁ ଫଳାଇବି ସୁନା।



………… କେତେବେଳେ ଆଉ ଆସିବ ମୋ ବର
ଗୁଡିରେ ପଶୁଛି ନିଆଁ ।



ଆମେ ଦୁହେଁ ଗୁଆଁ ଗଉଁ
ମୁହିଁ ବର ତୁମ ମୋର କନିଆ ,
ଆମେ ଦୁଇ ଯୋଡି ଚାଲି
ଦେଖୁ ଏଇ ଜଣିଆର ଦୁନିଆ ।